ଗାଣୀକଣ୍ଠ

# ନିମାଇଁ ହରିଚନ୍ଦନ

# ସ୍ମାରକୀ ଗ୍ରନ୍ଥ

॥ ସଙ୍କଳନ ଓ ସମ୍ପାଦନା ॥

ମୁରାରି ମୋହନ ଜେନା

# ବାଣୀକଣ୍ଠ ନିମାଇଁ ହରିଚନ୍ଦନ ସ୍ମାରକୀ ଗ୍ରନ୍ଥ

※

॥ ସଂକଳନ ଓ ସଂପାଦନା ॥


**ଶ୍ରୀ ମୁରାରି ମୋହନ ଜେନା**

ପ୍ରତିଷ୍ଠାତା ଓ ମୁଖ୍ୟ ବ୍ୟବସ୍ଥାପକ ପ୍ରଗତି ପୂଜା ପରିଷଦ

ଭଗତପୁର, କଟକ-୯



॥ ପ୍ରକାଶକ ॥

**ଜେନା ଅମରେନ୍ଦ୍ର ପ୍ରତାପ ବାଘସିଂହ**

ସଂଗ୍ଳଳକ "ବାଣୀକଣ୍ଠ ସ୍ମାରକୀ ଗ୍ରନ୍ଥ ପ୍ରକାଶନ କମିଟି"

ଭଗତପୁର, କଟକ-୯

※

॥ ପ୍ରକାଶ କାଳ ॥

**୯ ଜୁଲାଇ ୧୯୮୪**

※

॥ ମୁଦ୍ରଣ ॥

**ପୁଷ୍ପିତା ପ୍ରିଣ୍ଟର୍ସ**

ଭଗତପୁର, କଟକ-୯

※

॥ ମୂଲ୍ୟ ॥

**ତିରିଶ ଟଙ୍କା ମାତ୍ର**

ଓଡ଼ିଶାର ସଂସ୍କୃତି ସମୃଦ୍ଧ ନିଜସ୍ୱ ସଙ୍ଗୀତ କଳା ଓ ଭକ୍ତି ସଙ୍ଗୀତର ମହାନ ସାଧକ ନିମାଇଁ ହରିଚନ୍ଦନଙ୍କ ପ୍ରତିଭା ଓଡ଼ିଆ ଜାତିର ଏକ ଅମୂଲ୍ୟ ସଂପଦ ହୋଇ ରହିବ ।

ଜାନକୀବଲ୍ଲଭ ପଟ୍ଟନାୟକ
ମୁଖ୍ୟମନ୍ତ୍ରୀ

# ଆରମ୍ଭ

## ସେ ନିଜ ଲୁଗା ପିନ୍ଧିଛନ୍ତି

### ଏହି ହେଉଛି ୩୦ ବର୍ଷ ତଳର କଥା

ମୁଁ ସେତେବେଳେ ରେଭେନ୍ସା କଲେଜରେ ଏମ୍.ଏ. ପଢୁଥାଏ । ସେତେବେଳେ ଖବର କାଗଜରେ ପ୍ରକାଶିତ ଗୋଟିଏ ସମ୍ବାଦ ଦେଖିବାକୁ ପାଇଲି ଯେ, ରାମଦାସ ବାବାଜୀଙ୍କ ସଂକୀର୍ତ୍ତନ ଉତ୍ସବ ଓ ଧର୍ମ ଆଲୋଚନା ସଭା କଟକ ବଙ୍ଗାଳି ସାହି ମଠରେ ଅନୁଷ୍ଠିତ ହେବ ।

ସେଦିନ ବଙ୍ଗାଳି ସାହି ନିତାଇ ଗୌରାଙ୍ଗ ମଠରେ ପହଞ୍ଚିଲି ବେଳକୁ ଦେଖିଲି ସଭା ଆରମ୍ଭ ହୋଇ ଗଲାଣି । ଚାରିଆଡେ଼ ଲୋକ ଭରପୂର, ଯୁଆଡ଼କୁ ଅନାଇଲେ ମୁଣ୍ଡମାଳ । ଦେଖିଦେଲେ ମନ ଲାଖିଯିବ । ଏହିଭଳି ଜଣେ ୫୦ ବର୍ଷ ପାରହେଲା ବୟସର ବ୍ୟକ୍ତି, ଧୋବ ଫର ଫର ଧୋତି ପଞ୍ଜାବୀ ପିନ୍ଧିଛନ୍ତି କାନ୍ଧରେ ମଠା ଚାଦର । ମଞ୍ଚରେ ବସି କୀର୍ତ୍ତନ/ଭଜନ ଗାନ କରୁଛନ୍ତି । ସବୁଆଡ଼େ ନୀରବ/ନିସ୍ତବ୍ଧ । ଏକ ଲକ୍ଷ୍ୟରେ ସମସ୍ତଙ୍କର ଦୃଷ୍ଟି ସେହି ସୁଠାମ ସଙ୍ଗୀତଜ୍ଞଙ୍କ ଆଡ଼କୁ । ବାସ୍ତବିକ ସଙ୍ଗୀତଜ୍ଞଙ୍କ କଣ୍ଠରେ କି ଲାଳିତ୍ୟ/କି ମଧୁମାଦକତାର ବୀଣାଝଣା ସ୍ୱର ଝଙ୍କାର ! ସ୍ୱର୍ଗର ଦେବତା ମର୍ତ୍ତ୍ୟକୁ ମାନବ ହୋଇ ଓହ୍ଲାଇ ଆସି ଏପରି ଲୀଳା ଖେଳା କରୁଛନ୍ତି କି ବୋଲି ମୋର ସାମୟିକ ମନେ ହେଲା । ମୁଁ ତାଙ୍କର ସଙ୍ଗୀତ ଗାନରେ ମଜ୍ଜି ଗଲି/ହଜିଗଲି । କିଛି କାଳ ନିସ୍ପନ୍ଦ ହୋଇ ସେଇଠି ବସିଥାଏ ଓ ତାଙ୍କ ସଙ୍ଗୀତ ଗାନର ସୁଧା ଯେପରି ଆକଣ୍ଠ ପାନ କରି ଯାଉଥାଏ ଓ ଅପଲକ ନେତ୍ରରେ ସେହି ସଙ୍ଗୀତଜ୍ଞଙ୍କୁ କେବଳ ଅନେଇ ରହିଥାଏ । ମନକୁ ମନ ପଚାରୁଥାଏ ଓ ଭାବୁଥାଏ—ଏ ଭଳି ସଙ୍ଗୀତଜ୍ଞ ପୁଣି ଏ ମାଟିରେ ଜନ୍ମ ନେଇ ପାରେ ! ଧନ୍ୟ ଏ ମାଟି/ ଧନ୍ୟ ତା'ର ଏଇ ସଙ୍ଗୀତଜ୍ଞ !!

କିଛି ସମୟ ପରେ ସଙ୍ଗୀତଜ୍ଞ କୀର୍ତ୍ତନଟି ଶେଷ କଲେ । ଉପରୁ ପୁଣି ଦର୍ଶକ ଓ ଶ୍ରୋତା ମହଲରୁ ଉଠିଲା କୋଳାହଳ ଓ ଏକ ସ୍ୱରରେ ଅନୁରୋଧ—ଆଉ ଗୋଟିଏ ଥର, ଆଉ ଗୋଟିଏ କୀର୍ତ୍ତନ / ଭଜନ ଗାଆନ୍ତୁ । ଆଉ ଗୋଟିଏ ଗୀତ ଗାଇ ସାରିଲେ ପରେ ଧର୍ମସଭା ହେବ ।

ଲୋକଙ୍କ ଅନୁରୋଧ କ୍ରମେ ପୁଣି ହରମୋନିୟମ ରେଡ଼୍ ବାଜି ଉଠିଲା । ଲୋକଙ୍କର ଆନନ୍ଦର ଉଦ୍‌ବେଳନ ଦେଖେ କିଏ ? ସଙ୍ଗୀତଜ୍ଞ ଗୀତ ଗାଇଲେ ଓ ତାଙ୍କ କଣ୍ଠରୁ ସେଇ ଗୀତ ଶେଷ ହେଲା ପରେ ତାଳି ଉପରେ ତାଳି ଗର୍ଜି ଉଠିଲା, କିଛି ସମୟ ପାଇଁ । ହଠାତ୍ ଜନ ଗହଳି ଭିତରୁ ଜଣେ ଲୋକ କହି ଉଠିଲେ—''ଅରେ ଏଇ ତ ସେ ହରଚନ୍ଦନ, ଦେଖ କଳା ବାଳ ଧୀରେ ଧୀରେ ଧଳା ହୋଇ ଆସିଲାଣି; କିନ୍ତୁ କଣ୍ଠ ସ୍ୱର କେଡ଼େ କି ଚମତ୍କାର, କେଡ଼େ କି ଅତୁଟ ଓ ଅକ୍ଷୁର୍ଣ୍ଣ ରହିଛି ? ମୁଁ ଖାଲି ଶୁଣି ହେଉଥାଏ, ଇଏ କିଏ

ସେଇ ହରିଚନ୍ଦନ ଅର୍ଥାତ୍ ବାଣୀକଣ୍ଠ ନିମାଇଁ ଚରଣ ହରିଚନ୍ଦନ, ଯାହାଙ୍କର ଢେର ଢେର ଜଣାଣ/ଭଜନ/ଛାନ୍ଦ/ଚମ୍ପୂ/ଓଡ଼ିଶୀର ରେକର୍ଡ଼ ସଙ୍ଗୀତମାନ ଆମ ଓଡ଼ିଶାରେ ଚହଲ ପକାଇଛି ।

ଆମର କଲେଜ ପଢ଼ୁଆ କଞ୍ଚା ବୟସ । ତାଙ୍କୁ ଚିହ୍ନିବାର ଅବକାଶ କାହିଁ ? ଆଉ ଜଣଙ୍କୁ ପଚାରି ବୁଝିଲି ଯେ ଇଏ ହେଉଛନ୍ତି ସେଇ, ମୋ ମନର ଆଲୋଡିତ ଓ ବହୁଶ୍ରୁତ ନିମାଇଁ ହରିଚନ୍ଦନ । ସେଦିନ ମନପ୍ରାଣରେ କି ଆନନ୍ଦ/ଉଲ୍ଲାସ ଓ ଉନ୍ମାଦନା ଅନୁଭବ କଲି, ତା' ଭାଷାରେ କହି ପାରିବି ନାହିଁ । ସେ ଦିନର ସଭା ଶେଷ ହୋଇଯାଏ ସେଇଠି ବସିଥାଏ । ସଭା ଶେଷ ପରେ ହରିଚନ୍ଦନ ମହାଶୟଙ୍କୁ ନମସ୍କାର ଜଣାଇ ମୋର ପରିଚୟ ଦିଅନ୍ତେ, ସେ ମୋତେ ପୁତ୍ର ସ୍ନେହରେ କୁଣ୍ଢାଇ ପକାଇଲେ ଓ କିଛି ସମୟ ଆଳାପ ଆଲୋଚନା ଅନ୍ତେ କହିଲେ—"ବୁଝିଲ ବାବୁ ! ତୁମେ ତ ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ସେବା କରୁଛ । ଲେଖାଲେଖି କରୁଛ । ତମେ ଜାଣି ରଖ—"ପ୍ରକୃତ ଓଡ଼ିଆର ନିଜତ୍ୱ ଓ ନିଜସ୍ୱ ରାଗ-ରାଗିଣୀରେ ରସାଣିତ ଓଡ଼ିଆଙ୍କ ପ୍ରାଣର ପ୍ରାଣ, ପ୍ରାଣଛୁଆଁ ଛାନ୍ଦ, ଚଉତିଶା, ଜଣାଣ, ଭଜନ ଓ ସର୍ବୋପରି ଓଡ଼ିଶୀ ଗୀତମାନ ସର୍ବତ୍ର ପ୍ରଚାରିତ ଓ ପ୍ରସାରିତ ନ ହେଲେ ଆମେ ଆମର ସଂସ୍କୃତି ହରାଇ ବସିବା ।" ତାଙ୍କର ଏଇ ଉକ୍ତି ଆଜି ମଧ୍ୟ ମନରେ ବାରମ୍ବାର ଧକ୍କା ମାରୁଛି/ଚିନ୍ତାରେ ଚେତାବନୀ ଆଣୁଛି । ବାସ୍ତବିକ ଓଡ଼ିଆ ଜାତି/ଓଡ଼ିଆ ସଂସ୍କୃତି ପାଇଁ ତାଙ୍କ ପ୍ରାଣର କି ଆବେଦନ, ଉଚ୍ଛ୍ୱାସ ଓ ଉଦ୍‌ବେଳନ । ତାଙ୍କର ସେ ଦିନର ଏ ଉକ୍ତି ଭୁଲିବାର ନୁହେଁ କି ଭୁଲି ହେବ ନାହିଁ ।

ଦୀର୍ଘ ଅର୍ଦ୍ଧ ଶତାବ୍ଦୀରୁ ଊର୍ଦ୍ଧ୍ୱ ହେବ ବାଣୀକଣ୍ଠ ଓଡ଼ିଶାର ମାଟି ମହାଲରେ/ପାଣି ପବନରେ, ଜନ-ଜୀବନରେ ଯେଉଁ ପ୍ରାଣବନ୍ତ ଓ ମହିମାବନ୍ତ ପ୍ରତିଷ୍ଠା ଅର୍ଜନ କରିଛନ୍ତି, ତାହା ତାଙ୍କ ସଙ୍ଗୀତଜ୍ଞ ଜୀବନରେ ଏକ ଅବିନଶ୍ୱର, ଅନନ୍ୟ ସାଧାରଣ ଓ ଅପ୍ରତିଦ୍ୱନ୍ଦ୍ୱୀ ଅଧ୍ୟାୟ କହିଲେ ଚଳେ । ସଙ୍ଗୀତର ସାଧନା ଓ ସିଦ୍ଧିରେ ତାଙ୍କର ସାର୍ବଜନୀନ ଓ ସାର୍ବଭୌମ ଲୋକପ୍ରିୟତା ଆଜି ଆମର ଗର୍ବ ଓ ଗୌରବ । ବାସ୍ତବିକ ତାଙ୍କର ସେ ଦିନର ବଙ୍ଗାଳି ସାହି ନିତାଇ ଗୌରାଙ୍ଗ ମଠର ମଠାନୁଯାୟୀ ଜୀବନର ଶେଷ ସମୟ ଯାଏ, ଓଡ଼ିଶୀ ସଙ୍ଗୀତକୁ ଠିକ୍ ଠିକଣା ଭାବେ ବଞ୍ଚାଇ ତା'ର ସଦର୍ପ ଓ ସବିଶେଷ ପ୍ରସାର ଓ ପ୍ରଚାର କରିବାରେ ତାଙ୍କର ଅଦମ୍ୟ ଉଦ୍ୟମ ସର୍ବାଗ୍ରେ ସ୍ମରଣୀୟ ଓ ବରଣୀୟ ମଧ୍ୟ । ତାଙ୍କର ସମଗ୍ର ସଙ୍ଗୀତଜ୍ଞ ଜୀବନ ଏପରି ଏକ ଜାତୀୟତା ମର୍ମରେ ମର୍ମରିତ, ଶବ୍ଦରେ ଶବ୍ଦାୟିତ, ଛନ୍ଦରେ ଛନ୍ଦାୟିତ ଓ ରଙ୍ଗରେ ରଙ୍ଗାୟିତ ଯେ ତାହା ଯୁଗ ଯୁଗ ପାଇଁ ଓଡ଼ିଶୀ ସଂଗୀତର ଆଳାପ ଆଲୋଚନା/ବିଚାର ବିବେଚନାରେ ଆମର ଉତ୍ତର ସାଧକମାନଙ୍କୁ ଯେ ପଦେ ପଦେ ପ୍ରେରଣା ପୁଷ୍ଟ କରି ଆସୁଥିବ, ଏହା ନିଶ୍ଚିତ କଥା ।

ନିମାଇଁ ଚରଣ ନିଜ ଜୀବନାଦର୍ଶ ସଂପର୍କରେ କଥା ପ୍ରସଙ୍ଗରେ ଥରେ କହିଥିଲେ—"ଫୁଲ ପରି ଜୀବନ ଯେପରି ଅଛି, ସେଇପରି ଝଡ଼ିଯାଏ । କେତେ ଫୁଲ ବଣରେ ଫୁଟି ମଉଳି ଯାଏ, କେହି ତାକୁ ଜାଣେ ନାହିଁ । ଯେଉଁ ଫୁଲଟି ଜନସମାଜରେ ଉପଭୋଗ୍ୟ ହୁଏ; କିମ୍ବା ଦେବ ଅର୍ଚ୍ଚନାରେ ବିନିଯୋଗ ହୁଏ, ତାହାର ଜୀବନ ସାର୍ଥକ ହୁଏ । ଭଗବତ୍ କୃପାରୁ ଏ ଜୀବନରେ ଯେଉଁ ସୁଯୋଗ ପାଇ ମୁଁ ନିଜକୁ ଧନ୍ୟ ମନେ କରୁଛି ।" ବାସ୍ତବିକ୍ ତାଙ୍କର ଏଇ ଉକ୍ତିର ଯୁକ୍ତି ହିଁ ତାଙ୍କ ଜୀବନରେ ଅକ୍ଷରେ ଅକ୍ଷରେ ପ୍ରତିପାଦିତ ଓ ପ୍ରତିଫଳିତ । ତା' ନ ହୋଇଥିଲେ ତାଙ୍କର ଡାକରାରେ/ତାଙ୍କର ହୁଙ୍କାରରେ ପ୍ରଭୁ ତାଙ୍କ ବାହୁଡ଼ାରେ ବାଣୀକଣ୍ଠଙ୍କୁ ବାହୁଡ଼ାଇ ନେଇ ଆଥାନ୍ତେ କିପରି ? କହିଲେ ଦେଖି, ଆମର ଗୁହାରି ଓ ଆମର ଡାକରା ପ୍ରଭୁ କାହିଁ ଏଇପରି ଭାବେ ଶୁଣୁଛନ୍ତି ?? ଏହା ହିଁ ଆମ ପାଖରେ ଏକ ବିରାଟ ପ୍ରଶ୍ନବାଚୀ ନୁହେଁ କି ? ବାଣୀକଣ୍ଠଙ୍କ

ଉତ୍କଣ୍ଠା ପ୍ରଶ୍ନର ସିନା ଉତ୍ତର ମିଳିଲା, ଆମ ପ୍ରଶ୍ନର ଉତ୍ତର ପ୍ରଭୁଙ୍କ ଠାରୁ ମିଳିବନି ?? ହଁ ହଁ ମିଳିପାରେ, ଯଦି ବାଣୀକଣ୍ଠଙ୍କ ପରି ଆମେ ନିଜକୁ ମଜେଇ ଦେଉ/ହଜେଇ ଦେଉ, ‘ସର୍ବ ଧର୍ମାନ୍ ପରିତ୍ୟଜ୍ୟ, ମାମେକଂ ଶରଣଂ ବ୍ରଜ’ରେ, ହରିଙ୍କ କୀର୍ତ୍ତନ/ଭଜନରେ, ନିରୁତା ନିଷ୍ଠାରେ । କିନ୍ତୁ ପଇସା ରୋଜଗାରର ଉଦ୍ଦେଶ୍ୟ ମାତ୍ରରେ ଶସ୍ତା ଅଶ୍ଳୀଳ ସଂଗୀତ ଓ ପପ୍ ସଙ୍ଗୀତରେ ନୁହେଁ । ସଙ୍ଗୀତକୁ ଜୀବନ କଲେ ହେବ, ଜୀବିକାରେ କଷ୍ଟିନ୍ କଲେ ନୁହେଁ ।

ସେ ଥିଲେ ବସ ଡ୍ରାଇଭର ନିମାଇଁ ହରିଚନ୍ଦନ, ଆଜି ବାଣୀକଣ୍ଠ ନାମରେ ଆମ ପାଖରେ ଜୀବନକୁ ପଦେପଦେ ପରିବର୍ତ୍ତିତ ଓ ଜଞ୍ଜାଳ/ଜାଲରୁ କାଳ କାଳ ପାଇଁ ମୁକ୍ତ କରିବାର, ଭଜନ/କୀର୍ତ୍ତନ ଗାନ ଗାଇ ଶୁଣାଇବାର ଡାଇରେକ୍ଟର ।

ଆରେ, ଯିଏ ଜୀବନକୁ ଗତି ମୁକ୍ତି ଦେବାରେ ଡାଇରେକ୍ସନ ଦେବାର ଅଛି ଓ ଧାର୍ମିକ ମାର୍ଗରେ ସମଗ୍ର ଜାତିର ଡାଇରେକ୍ଟର ହେବାର ବିଧି ନିର୍ଦ୍ଦେଶ ଅଛି, ସେ ବସର ଡ୍ରାଇଭର କିପରି ହୋଇ ରହନ୍ତା ? ଡ୍ରାଇଭରରୁ ଡାଇରେକ୍ଟର—କେବଳ ହିଁ ନିମାଇଁ ଚରଣଙ୍କ ଠାରେ ସମ୍ଭବ/ସଫଳ ଓ ସାର୍ଥକ ।

ପୁଣି ଏଇ ପରିପ୍ରେକ୍ଷୀରେ ଆଉ ଗୋଟିଏ କଥା ଏଠି ନ କହିଲେ ନ ଚଳେ । ବାଣୀକଣ୍ଠ ନିମାଇଁ ହରିଚନ୍ଦନ ‘‘ପର ଲୁଗା ପିନ୍ଧି କେବେ ସାହକୁ ଯାଇ ନାହାନ୍ତି, କି ପଗଡ଼ିରେ ମୁଣ୍ଡ ଟେକାଇ ନାହାନ୍ତି ।’’ ସେ ନିଜ ଲୁଗା ନିଜେ ପିନ୍ଧିଛନ୍ତି, ଅର୍ଥାତ୍ ଏ ଜାତିର ଯାହା ନିଜତ୍ୱ ଓ ନିଜସ୍ୱ ସେଇ ସଙ୍ଗୀତର ପ୍ରଚାର ଓ ପ୍ରସାର ପାଇଁ ନିଜକୁ ସମର୍ପି ଦେଇଛନ୍ତି ମୂଳରୁ ଚୂଳ ଯାଏ । ଧାଳନିଶ୍ୱ ଅନ୍ୟ ଜାତିର ଶସ୍ତା ସଙ୍ଗୀତକୁ ବା ପପ୍ ସଂଗୀତକୁ ସେ ଆଦର ବା ଆପଣାର କରି ନାହାନ୍ତି, କି ତତ୍କାଳୀନ ଶସ୍ତା ବାହାବାର ତାଳିମାଡ଼ ପ୍ରତି ଅନେଇ ନାହାନ୍ତି, ବରଂ ସେ ସବୁକୁ ଆଡ଼େଇ ଦେଇଛନ୍ତି ଓ ଓପାଡ଼ି ଫୋପାଡ଼ି ଦେଇଛନ୍ତି ସବୁଦିନ ପାଇଁ । ତାହା ହିଁ ହେଉଛି ତାଙ୍କର ଜାତ୍ୟାଭିମାନ । ତେଣୁ ତାଙ୍କର ପ୍ରବୃତ୍ତିର ଓ ପ୍ରକୃତିର ଉତ୍ତର ସାଧକମାନେ, ତାଙ୍କର ଏଇ ଆଦର୍ଶରେ ଯଦି ନିଜକୁ ଅନୁପ୍ରାଣିତ କରି ପାରନ୍ତେ, ତାହାହେଲେ ନିମାଇଁ ଚରଣଙ୍କ ଆତ୍ମାର ଉପଯୁକ୍ତ ସମ୍ମାନ ଓ ସଦ୍‌ଗତି ହୋଇ ପାରନ୍ତା । ଏହା ହିଁ ମୋର ଆଜିର ସେଇ ବାଣୀକଣ୍ଠଙ୍କ ପବିତ୍ର ସ୍ମୃତି ସ୍ମରଣରେ, ତାଙ୍କ ‘ସ୍ମାରକୀ ଗ୍ରନ୍ଥ’ର ପ୍ରକାଶନ ପ୍ରସଙ୍ଗରେ ଏତିକିମାତ୍ର ମାଗୁଣି ।

ମୁରାରି ମୋହନ ଜେନା



ବାହୁଡାରେ ମୋତେ ବାହୁଡାଇ ନିଅ

# ଅର୍ଘ୍ୟ ଅର୍ପିଛନ୍ତି

ପୃଷ୍ଠା

ପୃଷ୍ଠା

ପୃଷ୍ଠା

ପୃଷ୍ଠା



●



॥ ସଂକଳକ ଓ ସଂପାଦକ ॥

ମୁରାରି ମୋହନ ଜେନା

# ହରିଚନ୍ଦନ

## ଜଷ୍ଟିସ୍ ହରିହର ମହାପାତ୍ର

ନିମାଇଁ ହରିଚନ୍ଦନଙ୍କ ସହିତ ଆଳାପ ଆରମ୍ଭ ହୋଇଥିଲା, ସେ ଆଠଗଡ଼ରେ ଥିଲା ବେଳେ । ଆଳାପ ପରିଣତ ହେଲା ପରିଚୟରେ, ପରିଚୟ ବୃଦ୍ଧି ହେଲା ବନ୍ଧୁତାକୁ । ମେଳାପୀ, ମଧୁର ପ୍ରକୃତିର ଲୋକ । ହସ ଯେପରି ଝଞ୍ଜୁଲେ, କଣ୍ଠ ସେପରି ଗରଜେ । ସୁଶ୍ରୀ ତନୁ ତା' ସାଙ୍ଗକୁ ପୁରା ଖାପ ପାଏ । ଯେ ଟିକିଏ ଲେଖାଲେଖି କରେ, ତା' ପାଖକୁ ଗଲେ କହିବେ, ଗୋଟିଏ ଗୀତ କି ଭଜନ ଲେଖିଦିଅ । ଦି' ଘଣ୍ଟାର ଲେଖାଟିକୁ ପଢ଼ି, ଗୁଣୁ ଗୁଣୁ ହୋଇ ଆପେ ଗାଇ, ଲେଖକକୁ ଶୁଣାଇ ଦିଅନ୍ତି ତାଙ୍କ ସ୍ୱର ଲହରୀରେ । ଆଉ ପକେଟସ୍ଥ କରନ୍ତି ଲେଖାଟିକୁ ଅନ୍ୟତ୍ର, ଅନ୍ୟ ସମୟରେ ବୋଲିବା ପାଇଁ । ଏପରି କେତେ ଥର ଘଟିଛି । ଘରକୁ ଆସିଲେ, ଏକାବେଳକେ ଘର ମଣିଷ । ଖାଇବାରେ ସଙ୍କୋଚ ନଥାଏ, ଖାଇବାରେ ଆଗ୍ରହ ସବୁବେଳେ । ଆମ ସାଙ୍ଗେ ଏକ ଚୁକ୍ତି କରିଥିଲେ । ଆମ ଘରେ ରାମ ନବମୀ ପୂଜାକୁ ଆସିବେ, ଜଣାଣ ଗାଇବେ । ଆମକୁ କହିବାକୁ କି ଲେଖିବାକୁ ହୁଏ ନାହିଁ । ହରିଚନ୍ଦନ ଆସନ୍ତି । ରାମନବମୀ ପୂଜା ପ୍ରଥମ ଦିନ ସଂଧ୍ୟା ବେଳେ ହଲି, ଦୋହଲି । ଅନ୍ୟ ବନ୍ଧୁମାନେ, ଯେଉଁମାନେ ନିମନ୍ତ୍ରିତ ହୋଇ ଆସିଥାଆନ୍ତି ତାଙ୍କୁ ଦେଖି କହନ୍ତି, ଗୋଟେ ଭଜନ ହେଉ । ସେ ଯାଆନ୍ତି ଓପର ମହଲାକୁ ଠାକୁରଙ୍କ ପାଖେ ଆଗେ ଗାଇବାକୁ । ସେଠାରୁ କର୍ମି କର୍ମି ଆସେ ତାଙ୍କ ସ୍ୱର ତଳକୁ । ମୃତ୍ୟୁର ପୂର୍ବ ବର୍ଷ ପର୍ଯ୍ୟନ୍ତ ଏହା ଚାଲିଥିଲା । ତାଙ୍କ ଅନ୍ତେ ତାଙ୍କ ସ୍ୱର ରେକର୍ଡ଼ ତାଙ୍କୁ ଜୀବନ୍ତ ରଖିଛି ।

ଗାୟକ ହରିଚନ୍ଦନ ଏକାବେଳକେ ତନ୍ମୟ ଜଗନ୍ନାଥ ଭକ୍ତ । ଜୀବନର ଶେଷ ଅଧ୍ୟାୟରେ ସେ ଜଣାଣ ଗାଉ ଗାଉ ଚକ୍ଷୁରୁ ଅଶ୍ରୁଧାର ବୋହି ଆସୁଥିଲା ଅନେକ ସମୟରେ । ଦେଉଳରେ ଦେଖିଛି ତାଙ୍କ ଚାମର ସେବା । ହାତରେ ଚାମର, ଗଳାରେ ଜଣାଣ, ଆଖିରେ ଲୋତକ, କପାଳରେ ଚନ୍ଦନ । ହରିଚନ୍ଦନ ହଜାରେ ଲୋକଙ୍କ ଭିତରେ ବାରି ହେଉଥିଲେ ।

ତାଙ୍କର ଆଳାପର ଭାଷା ଟିକିଏ ଭିନ୍ନ ଥିଲା । ଖାନ୍‌ଦାନୀ ଭାବ ତାଙ୍କ ଚଳଣୀରେ ରହିଥାଏ । ପୂର୍ବପୁରୁଷଙ୍କ କୀର୍ତ୍ତି ଅନେକ ସମୟରେ ସ୍ମରଣ କରନ୍ତି ଏବଂ ନିଜ ଗତିବିଧି କରନ୍ତି ସେହି ଅନୁରୂପରେ । ରଥଯାତ୍ରା ବେଳେ ରଥ ଆଗରେ ହାତ ଯୋଡ଼ି ଜଣାଣ ବୋଲିଲା ବେଳେ ହଜାର ହଜାର ଜନତା ମୁଗ୍‌ଧ ହୋଇ ନିସ୍ତବ୍‌ଧ ରହନ୍ତି । ବିନା ମାଇକ୍‌ରେ ତାଙ୍କ ଗଳା ମାଇକ୍ କାମ କରେ । ଜଗନ୍ନାଥଙ୍କ ପାଖରେ ସେ ଶରଣ ପଶିଥିଲେ, ଜୀବନର ବହୁ ଅଭିଯୋଗ ପଛକୁ ପକାଇ । ଯଥାର୍ଥ ଶରଣ ସେ ପାଇଥିଲେ—ସେପରି କ୍ୱଚିତ୍ କାହା ଭାଗ୍ୟରେ ଘଟେ । ନିଜକୁ ପୁରା ସମର୍ପଣ କରି ନ ଥିଲେ, ସେପରି ହୋଇ ନ ଥା'ନ୍ତା । ଭୋଗୀ ଥିଲେ, ଯୋଗୀ ହେଲେ ।

●

ଚୁନିମାଣିକ
କଟକ

# ମଉସା !!

## ବିଦ୍ୟାବିନୋଦ ପଣ୍ଡିତ ସଦାଶିବ ରଥ ଶର୍ମା

ପରିଚୟ ଦୁଇପ୍ରକାରର ହୋଇଥାଏ । ଅନ୍ତରଙ୍ଗ ଓ ବହିଃରଙ୍ଗ । ଅନ୍ତରଙ୍ଗ ପରିଚୟର ମର୍ମ ତାହାର ଆତ୍ମା-ସାଙ୍ଗରେ ସମ୍ବନ୍ଧ ଥାଏ ଓ ବହିଃରଙ୍ଗ ପରିଚୟ ଦେହ ଓ ସ୍ୱାର୍ଥ ସହିତ ଜଡ଼ିତ । ଅନ୍ତରଙ୍ଗ ପରିଚୟରେ ଟିକେ ବ୍ୟାଘାତ ଆସିଲେ ପ୍ରାଣ ଥରି ଯାଏ, ମନ ଦ୍ରବୀଭୂତ ହୁଏ । ବହିଃରଙ୍ଗ ପରିଚୟରେ ସେ ଅବସ୍ଥା ଘଟେ ନାହିଁ । ଆଜକୁ ୩୦ (ତିରିଶି) ବର୍ଷ ହେବ ତାଙ୍କ ସାଙ୍ଗରେ ଥିଲା ମୋର ବହିଃରଙ୍ଗ ପରିଚୟ । ସନ ୧୯୬୩ ମସିହାରେ ପ୍ରଭୁ ପୁରୁଷୋତ୍ତମଙ୍କ କୃପାରୁ ହଠାତ୍ ବହିଃରଙ୍ଗ ଅନ୍ତରଙ୍ଗରେ ପରିଣତ ହେଲା । ପତିତ-ପାବନଙ୍କ ନିକଟରେ ସେ ସୌମ୍ୟପୁରୁଷଙ୍କ ସହ ମିଳନରେ ପରସ୍ପରର ଅନ୍ତର ଯେପରି ଏକ ହୋଇଗଲା । ତା'ପରେ ପରସ୍ପର ଭିନ୍ନ ଭିନ୍ନ ସ୍ଥାନରେ ଥିଲେ ସୁଦ୍ଧା ଅନ୍ତରର ସମ୍ବନ୍ଧ ରହିଥାଏ । ୧୯୬୯ ମସିହା ଦେବ ଦୀପାବଳୀ ଦିନରେ ଛଦ୍ ବୃତ୍ତ ଜୀବନ ପାଇଁ ଏକ ମହନୀୟ ସମ୍ବନ୍ଧ ପ୍ରତିଷ୍ଠିତ ହେଲା । 'ସଂକଳ୍ପ କରିଥିଲି ପ୍ରଭୁଙ୍କ କହିବି ସେ ଆପଣଙ୍କୁ ନିଶ୍ଚିତ ରୂପେ ପୁରୁଷୋତ୍ତମ କ୍ଷେତ୍ରବାସ ଦେବେ । ବନ୍ଧୁ ଶ୍ରୀଜଗନ୍ନାଥ ସିଂହାସ୍ତ ସେହି କ୍ଷେତ୍ରବାସରେ ସହାୟକ ହେଲେ । ଜଗନ୍ନାଥ ଚକ୍ର ଦିଶିଥିବା ସ୍ଥାନ ଅନାୟାସରେ ପ୍ରାପ୍ତ ହେଲା । ଏଣେ ମୁଁ ଲଗିପଡ଼ି ଗୃହର ସେବାର ଆୟୋଜନ କରି ଦେଲି । ସମ୍ମାନିତ ଗୃହର ସେବା ଦିନ ଭିତରକୁ ମଧୁସୂଦନ ମହାପାତ୍ରଙ୍କ ଆଗରେ ଗାଢ଼ ଆଲିଙ୍ଗନରେ ଦୁଇଜଣ ପ୍ରାୟ ମିଶିଗଲୁ ।

ବାକି ରହିଥିଲା ସମ୍ବନ୍ଧ କ'ଣ ହେବ ? ଦେବ ଦୀପା-ବଳୀର ଅମାନିଶି, ଯେତେବେଳେ ସ ଶ ମନ୍ଦିର ଆଲୋକିତ ହୋଇଥିଲା ସେତେବେଳେ ପରମାନନ୍ଦ ତ୍ରିପାଠୀ ପ୍ରଶାସକ ଦୁଇଜଣଙ୍କୁ ମଉସା ବସାଇ ଦେଲେ । ସେହିଦିନ ଠାରୁ ଆମେ ପରସ୍ପରକୁ ଡାକିଲୁ 'ମଉସା' ବୋଲି । ସୁଖ, ଦୁଃଖ, ଦିନ ରାତି, ଘାତ ପ୍ରତିଘାତ ମଧ୍ୟରେ କୋଟିଏ ଦିନ ଆମେ ଅଲଗା ହୋଇନାହୁଁ । ଦିନେ ଏକାଦଶ ସ୍କନ୍ଧ ଭାଗବତ ଯେ ବାଇଶି ପାହାଚରେ ପଢ଼ୁଥା'ନ୍ତି । ମୁଁ ପାଦ ଛୁଇଁ ନମସ୍କାର କଲି, ସେ ହାରିଗଲେ ।

ଏହିପରି ହାରଜିତ୍ ନିତ୍ୟ ଲାଗିଥାଏ । ସେଦିନ ପଚ୍ଚା-ରିଲେ, ହଇଓ ତୁମ ଗୁରଣମାନେ ଗୋଡ ଛୁଇଁ ନମସ୍କାର କରୁଛନ୍ତି କ'ଣ ଆୟୁଷ କ୍ଷୟ କରିବା ପାଇଁ । କେଉଁ ଶାସ୍ତ୍ରରେ ଏପରି ନିୟମ ଅଛି ଯେ, ତୁମେ ତାଙ୍କୁ ପ୍ରବର୍ତ୍ତାଇଛ । ମଙ୍ଗଳ ଆନନ୍ଦ ହେଉଥାଏ, ମୁଁ ପାଖରେ ବସି କହିଲି ଲାଜ ମାଡ଼ୁ ନାହିଁ, ଏକାଦଶ ସ୍କନ୍ଧ ପଢ଼ୁଛ ଜାଣି ନାହଁ "ଭାଗବତ ଧର୍ମ" କ'ଣ । ହସି ହସି ସେ କହିଲେ—ଦେଖାଇଲ କେଉଁଠି ଅଛି । ମୁଁ ପୃଷ୍ଠା ଫିଟାଇ ଦେଖାଇ ଦେଲି ।

ମୁହିଁ ବସଇ ସର୍ବଭୂତେ । ଏମନ୍ତ ଦେଖୁଥିବ ନିତ୍ୟେ ॥
ମଦ ମତ୍ସର ଅହଂକାର । କ୍ରମେ ସକଳ କରି ଦୂର ॥
ଶ୍ୱାନ, ଚଣ୍ଡାଳ, କୃମିଖର । ଶୃଗାଳ ବାନର ଶୂକର ॥
ଏଆଦି ପ୍ରାଣୀ ଯାନ ବଡ଼େ । ଯେ ଆସି ମିଳିବ ନିକଟେ ॥
ଦେଖିକପୋଳେ କର ଦେଇ । ଭୂମିରେ ଦଣ୍ଡ ପ୍ରାୟ ହୋଇ ॥
ଦୂରେକବେଶି ଲକ୍ଷ୍ୟମାନ । ଚରଣେ କରଇ ପ୍ରଣାମ ॥
ତାହାଙ୍କ ଗୁଣଦୋଷ ଯେତେ । ମନେ ନ ଧର କଦାଚିତେ ॥
ଈଶ୍ୱର ବସେ ସର୍ବଦେହେ । ଏ ଘେନି ନମିବ ନିର୍ଭୟେ ॥
ଏ ବାକ୍ୟ ସମ୍ମତ ମୋହର । ସେହି ସେ ସର୍ବଧର୍ମ ସାର ॥

ପଢ଼ୁ ପଢ଼ୁ ଆଖିରୁ ଲୁହ ଗଡ଼ି ପଡ଼ିଲା । ସେତିକିରେ ସେ ବୁଝିଗଲେ 'ଗୁରୁଣି' ଙ୍କାହିଁକି ପାଦ ଧରନ୍ତି । ଆଉ କେବେ ହେଲେ ଟିକିଙ୍କୁ ମନା କରି ନାହାନ୍ତି । ଶେଷକୁ

ଗୁରୁଣ ଖାତାରେ ନାମ ଲେଖାଇଲେ । ଦିନକୁ ଦିନ ଅନୁରାଗ ପରିପକ୍ୱ ହେବାକୁ ଲାଗିଲା । ଆମେ ପରସ୍ପର ମିଳିଲା ବେଳେ ଭାବୁଥିଲି—ଆମ ଭିତରେ କିଛି ଅନ୍ତର ନାହିଁ । ଭଲ ଦିନରେ ଖାଇବା ପିଇବା ମଧ୍ୟ ଏକା ପତ୍ରରେ ହେଉଥିଲା । କିନ୍ତୁ ଭିତରେ ରହିଯାଇଥିଲା ଗୋଟିଏ ଶ୍ରେଷ୍ଠ "କମ୍ମା" । ସେ ମୋତେ ମୋର ପଦ୍ମଶ୍ରୀ ଉପାଧିଟି ଲଗାଇ ଡାକିବା ବେଳେ ମୋତେ ଟିକେ ଖରାପ ଲାଗୁଥିଲା । ଜଗନ୍ନାଥଙ୍କ ମନ୍ଦିରରେ ତିନିଜଣଙ୍କର ତିନି ପ୍ରକାରେ ସେବା ସର୍ବଜନ ଆନନ୍ଦପ୍ରଦ ଥିଲା । ତାଙ୍କ ଭାଷାରେ, "ବକ୍ ବକ୍ ସେବା, ନୃତ୍ୟ ସେବା ଓ ଭୋଜନ ସେବା ।" ବକ୍ ବକ୍ ସେବାର ସେବକ ମୁଁ ଓ ସେ ନୃତ୍ୟ ସେବାର ସେବକ ଥିଲେ ବୋଲି ନିଜେ ଆନନ୍ଦରେ ସ୍ୱୀକାର କରିଥାନ୍ତି । ଭୋଜନ ସେବାର ସେବକ ଥିଲେ ସ୍ୱର୍ଗୀୟ ଦଇତା ପତି ଗଙ୍ଗାଧର ମହାପାତ୍ର । ଏ ତିନିଜଣିଆ ମୈତ୍ରୀ ମେଣ୍ଟରୁ ମୁଁ ଅଧମ କେବଳ ବଞ୍ଚି ରହି ଯାଇଛି । ଦିନେ ଗଙ୍ଗେଇ ଦାଶ ମହାପାତ୍ର କହିଲେ—ହଇଓ, ତୁମକୁ ସେ 'ପଦ୍ମଶ୍ରୀ' 'ପଦ୍ମଶ୍ରୀ' କ'ଣ ଡାକୁଛନ୍ତି, କାଳାଘାଟ ଦୁଆରେ ଟିକେ କହି ଦେଉନ ତାଙ୍କୁ ସେ ବ୍ୟାଧି ମିଳିଯାଉ । ହସର ପ୍ରାଚୁର୍ଯ୍ୟ ମଧ୍ୟରେ ବିଚ୍ଛୁରିପଡ଼ିଲା । ତିନିଜଣ ଯାକ କାଳାଘାଟ ଦୁଆରକୁ ଗଲୁ, ମୁଁ ଓ ସେ ସେଉଠି ଦର୍ଶନ କରୁଁ । ମୁଁ ସାଷ୍ଟାଙ୍ଗ ହୋଇ ମହାପ୍ରଭୁଙ୍କୁ କହିଲି । କ'ଣ କହିଲି ପ୍ରକାଶ ନକଲେ ଭଲ । ଫେରି ଆସିଲୁ ପୁଣି ଭୋଜନ ଯାଗାକୁ । ସେହିଦିନ ଠାରୁ ସେ ଆଉ 'ପଦ୍ମଶ୍ରୀ' ବୋଲି ଡାକି ନାହାନ୍ତି । ଯେଉଁଦିନ ତାଙ୍କୁ 'ପଦ୍ମଶ୍ରୀ' ମିଳିଲା ସେଇ ରାତି ଅଧରେ ଦୁଆର ବାଡ଼େଇଲେ । ସାଙ୍ଗରେ ଭୀମ ପଣ୍ଡାଙ୍କ ପୁଅ ଶ୍ୟାମ । ମୁଁ ହଠାତ୍ ରାତିରେ ଦେଖି ଆଶ୍ଚର୍ଯ୍ୟ ହୋଇଗଲି ଏବଂ ପଚାରିଲି, କୁଆଡ଼େ କ'ଣ ମାଉସୀଙ୍କ ଦେହ ଭଲ ନାହିଁ ? ତାଙ୍କର ଧର୍ମପତ୍ନୀଙ୍କ ପାଇଁ ତାଙ୍କର ଅତୀବ ସ୍ନେହ ଓ ଆସକ୍ତି ଥିଲା । ଟିକେ କ'ଣ ହେଲେ ସେ ଜଗନ୍ନାଥ ସିଂହାସନ ବା ମୋ ପାଖକୁ ଦଉଡ଼ି ଆସୁଥିଲେ । ହସି ହସି କହିଲେ, ତୁମ କଥା କାଳିଆ ଠିକ୍ ଶୁଣିଛନ୍ତି । ଟେଲିଗ୍ରାମ ପଢ଼, ଆମେ ଦୁହେଁ ଆଶ୍ଚର୍ଯ୍ୟ ହୋଇ ଠାକୁରଙ୍କ ବାରଣ୍ଡାରେ ବସିଗଲୁ ।

ବାସ୍ତବରେ ପ୍ରଭୁଙ୍କର ଅପୂର୍ବ ମହିମା । ସେ କିପରି ଶୁଣନ୍ତି ତାହା ଅନୁଭବୀ ଛଡ଼ା ଅନ୍ୟ କେହି ଜାଣି ପାରିବେ ନାହିଁ । ପୁଣି ଦୀର୍ଘ ଦିନ କଟି ଗଲା କର୍ତ୍ତବ୍ୟ ସମ୍ବନ୍ଧରେ । ଏପରି କୌଣସି ଦିନ ଯାଇନାହିଁ, ଯେଉଁ ଦିନ କି ଆମେ ପରସ୍ପର ମୁଖରେ ନିର୍ମାଲ୍ୟ ଦେଇ ନାହୁଁ । ଏପରି କୌଣସି ଦିନ ଘଟି ନାହିଁ, ଆମେ ପରସ୍ପରକୁ ଆଲିଙ୍ଗନ କରି ନାହୁଁ । ସେ ଭଳି ବନ୍ଧୁତା ଆଉ ମିଳିବ ନାହିଁ କି ଅଧିକ ଲେଖିବା ସୁନ୍ଦର ହେବ ନାହିଁ ।

ଏବେ ଶେଷ ଦିନ କଥା ଲେଖୁଛି । ସନ୍ଧ୍ୟା ଦର୍ଶନ ଦିନ ପ୍ରାୟ ନଅଟା ବେଳେ ରାମଚନ୍ଦ୍ର ସୁବୁଦ୍ଧିଙ୍କ ଜୀପ୍‌ରୁ ମଉସା ଓହ୍ଲାଇଲେ । ମୁଁ ଓ ରାମ ( ଗୁରୁଣ ) ନୃସିଂହଙ୍କ ଠାରୁ ଫେରିଥିଲୁ । ଆମେ ଏକାଠି ଭିତରକୁ ଗଲୁ । ସେ ଧୂପ-ବେଳେ ଗୁମର ସେବା କଲେ । ସେ 'ଝୁଲି' ଭଲ ପାଆନ୍ତି । ଦୁଇଜଣ ଏକାଠି ଖାଇଲୁ । ମଧ୍ୟାହ୍ନରେ ତାଙ୍କୁ ମୁଁ ରିକ୍ସାରେ ବସାଇବା ପାଇଁ ଦାଣ୍ଡକୁ ଆସିଲି । ମୋଟା ତେଲୋବଳ ବାଡ଼ିଟି ଧରିଥାନ୍ତି, ରିକ୍ସାରେ ବସାଇ ପାଦ ଛୁଇଁଲି ବେଳେ ମୋ ହାତଟି ଧରିଲେ । ପାଖରେ ଚାରି, ପାଞ୍ଚ ଜଣ ମିଳିଯାଇ-ଥିଲେ ଓ ମଜା ଦେଖିବାକୁ ସବୁବେଳେ ସନ୍ଧ୍ୟାଏ ଏପରି ମିଳନ୍ତି । ମୁଁ କହିଲି— କେତେବେଳେ ଦୋଅଡ ଭୋଗ ସରିବ କଣ ନାହିଁ । ତୁମେ କାଲି ଆସିବ ନାହିଁ ? ସୁଲଭ ସହଜ ହସର ସହିତ କହିଲେ, ତୁମେ ଦାଅଁଙ୍କୁ ନେଇଆସ ଆମେ ଚାଲିଲୁ । ସେହି ଘଟିକୁ ଏବେ ମୁଁ ଭାବୁଛି ଓ ଭାବିଲେ ମୋତେ ଦୁଃଖ ଲାଗୁଛି । ମୁଁ ସେତେବେଳେ ବୁଝି ପାରିଲି ନାହିଁ । ସେ କହିଲେ ଖେଚେଡ଼ି ଭୋଗ ଟିକିଏ ପଠାଇ ଦେବ । ଯୋଗ ଥିଲେ ଖାଇବା । ତାଙ୍କ ରିକ୍ସା ଦକ୍ଷିଣକୁ ଚାଲିଲା । ମୁଁ ଗଲି ଉତ୍ତରକୁ । କିଏ ଜାଣିଥିଲା ସେହି ସାକ୍ଷାତ ଶେଷ ସାକ୍ଷାତ ବୋଲି । ଦକ୍ଷିଣ ପଥର ରିକ୍ସାର ପଛପଟ ପରଦା ଟେକି ଚାହିଁ ଦେଉଥାନ୍ତି । ମୁଁ ମୁହଁ ବୁଲାଇ ନେଲି, ସେ ମୁହଁ ଚିରଦିନକୁ ବୁଲିଗଲା । ରାତିରେ କୌଣସି ଖବର ପାଇ ନାହିଁ । ଭାବୁଛି ଖେଚେଡ଼ି ଟିକେ ନେଇଯିବି; ଗଙ୍ଗାଧର ସୁବୁଦ୍ଧି କହିଲେ, ତୁମ ମଉସା ଚାଲିଗଲେ । ଆଗରେ ପ୍ରଭୁ ପଛରେ ତାଙ୍କର ମୁହଁ ମୁଁ ବିଶ୍ୱାସ କରି ପାରିଲେ ନାହିଁ କି ମୁଁ କାହାକୁ କହିଲି ନାହିଁ । ତାଙ୍କର ଏପରି ଅଭ୍ୟାସ ସବୁ-ବେଳେ ଚାଲେ, ମାଉସୀ ବେଳେବେଳେ ବିରକ୍ତ ହୁଅନ୍ତି ।

ଥରେ ତାଙ୍କ ଧଡ଼ିଆ ପୂଜାରୀଙ୍କୁ ଗୋପୀପତିଙ୍କ 'ବନ୍ଧୁ-ପ୍ରିୟ' ପାନ ଦୋକାନରେ କହିଥିଲି—କ'ଣ ମଉସା ତୁଳି-

ଗଲେ । ସେ ହସି ଦେଲା, କିନ୍ତୁ ପରଦିନ ମାଉସୀ କହିଲେ, ଏମିତି କେବେ କହିବେ ନାହିଁ ମୋ ଯିବାକଥା ପଚାରିବେ । ସେହି ଦିନଠାରୁ ମୁଁ ଆଉ କହେ ନାହିଁ କି ସେ ମାଉସୀ ଆଗ ଗଲେ ନାହିଁ । ଜୀବ ଯିବାର ହିସାବ କିଏ କହିପାରିବ ? ଧୂପ ସରିଲା । ସେତେବେଳକୁ ମୁଁ ଦୁଇଚାରିଜଣଙ୍କୁ କହିଲିଣି ଡାଃ ଝେରେଡ଼ି ଓ କାଙ୍କଣ ରଥ, ବନମାଳୀ ସାମନ୍ତ-ସିଂହଙ୍କଠୁଁ ନେଇ ତାଙ୍କ ଘରେ ପହଞ୍ଚିଲି ।

ଦେଖିଲି, ମହା ଶାନ୍ତିରେ ମର ଶରୀର ଅନନ୍ତ କାଳ ବକ୍ଷରେ ଶୋଇଯାଇଛି । ସାରା ପରିବାର କାନ୍ଦି ଉଠିଲେ, ପୁଅ, ଜ୍ୱାଇଁ, ଝିଅ ବେଢ଼ିଗଲେ । ମୁଁ କିନ୍ତୁ ସେହି ମର ଶରୀରର ଅଧରରେ ଝେରେଡ଼ି ଟିକେ ଲଗାଇ ଦେଲି ।

ଦୀର୍ଘ କୋଡ଼ିଏ ବର୍ଷ ସେତିକିରେ ଶେଷ ହେଲା । ସେତେ-ବେଳେ ଚିଠି ଲେଖୁନ୍ତି, କବିତାରେ ଲେଖନ୍ତି । ସେହି ଛନ୍ଦ-ମଧ୍ୟ ଚିଠିକୁ ମୁଁ ରଖିଛି । ଜାଣିଛି ପ୍ରଭୁ ତାଙ୍କୁ କେଉଁଠି ରଖିଛନ୍ତି ଓ ଆଜି ତାଙ୍କର ସ୍ମୃତିରେ ତାଙ୍କୁ ଓ ତାଙ୍କର ସେହି ପ୍ରିୟ ଗଣ୍ଡି ପୃଷ୍ଠି ଝେଣ୍ଟିକୁ ପ୍ରଣାମ କରୁଛି । ତାଙ୍କ ପରିବାର ମୋ ପ୍ରତି ମମତା ରଖିଛନ୍ତି, ଏତିକି ମୋର ପରମ ସାନ୍ତ୍ୱନା, ଦଣ୍ଡି ଟିକେ କୃପା ରଖିଥାନ୍ତୁ । ଦଣ୍ଡି ଦଣ୍ଡି ମହାଦେବୀ ନୁହନ୍ତି ଆମ ପ୍ରିୟ ମାଉସୀ, ଯେ କି ଦୁର୍ଦ୍ଦିନ ପର୍ଯ୍ୟନ୍ତ ହାସ୍ୟବସା ଦଣ୍ଡି ଟିଏ ଯିବ ଏ ଶତାବ୍ଦୀକୁ ବିଦ୍ରୂପ କରୁଥିଲେ । ଦଣ୍ଡି କହିଲେ ଦେଉଳରେ ସମସ୍ତେ ଜଣଙ୍କୁ ହିଁ ଜାଣନ୍ତି । ତାଙ୍କୁ ପ୍ରଣାମ କରି ମୋର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।



ପଥୁରିଆ ସାହି
ପୁରୀ

# ବାଣୀକଣ୍ଠ ନିମାଇଁ ହରିଚନ୍ଦନ

ଶ୍ରୀ ବୈକୁଣ୍ଠ ନାଥ ବ୍ରହ୍ମଚାରୀ

ବାଣୀକଣ୍ଠ ନିମାଇଁ ବାବୁ କେନ୍ଦ୍ରାପଡ଼ାସ୍ଥ ରାଧାଶ୍ୟାମ ନରେନ୍ଦ୍ରଙ୍କ ବଂଶରେ ଜନ୍ମଗ୍ରହଣ କରିଥିଲେ । ମୋର କେନ୍ଦ୍ରାପଡ଼ା ରହଣି ସମୟରେ ତାଙ୍କ ସହ କେତେଥର ସାକ୍ଷାତ ହୋଇଛି ଓ ଘନିଷ୍ଠତା ମଧ୍ୟ ଆସିଛି । ସେ ନରେନ୍ଦ୍ର ପରିବାର ଭଳି ଧନୀ ଉଚ୍ଚ ବଂଶରେ ଜନ୍ମଲାଭ କରି ମଧ୍ୟ ନାନା ଦୁଃଖ କଷ୍ଟରେ କାଳାତିପାତ କରୁଥିଲେ । ଏହାର କାରଣ ତାଙ୍କ ଯୌବନାବସ୍ଥା ସମୟକୁ ତାଙ୍କର ପୂର୍ବ ଐଶ୍ୱର୍ଯ୍ୟ କ୍ରମେ କ୍ରମେ ମ୍ଳାନ ହୋଇଯାଇଥିଲା । ଏପରିକି ନିମାଇଁ ବାବୁ କେତେଦିନ ମଟର ଡ୍ରାଇଭର ହୋଇ ପରିବାରର ଭରଣ ପୋଷଣ କରିଥିଲେ । କିନ୍ତୁ ତହିଁରେ ସେ କୌଣସି ଦୁଃଖ ପ୍ରକାଶ କରୁ ନ ଥିଲେ । ସର୍ବଦା ହସ ହସ ମୁଖରେ କାଳ କାଟିଥିଲେ । ଦୁଃଖକୁ ସୁଖ ମଣି ସେ ଦୈନିକ କେନ୍ଦ୍ରାପଡ଼ାସ୍ଥ ଶ୍ରୀ ଶ୍ରୀ ଗୋବିନ୍ଦଜୀଉଙ୍କ ମନ୍ଦିରର "ସନ୍ଧ୍ୟାଧୂପ" ଓ "ବଡ଼ସିଂହାର ଧୂପ"ରେ ଗୀତଗୋବିନ୍ଦ, ଭଜନ ଓ ଜଣାଣ ଗାଇ ନିଜେ ଆନନ୍ଦରେ ବିଭୋର ହୋଇ ଅନ୍ୟମାନଙ୍କୁ ଆନନ୍ଦ ସାଗରରେ ନିମଜ୍ଜିତ କରୁଥିଲେ । କ୍ରମେ ତାଙ୍କର କଣ୍ଠ ସଂଗୀତ ଗ୍ରାମୋଫୋନ୍ ରେକର୍ଡ ଦ୍ୱାରା ପ୍ରକାଶ ହୋଇ ଜନସମାଜରେ ଆଦୃତ ହେବାକୁ ଲାଗିଲା । ସେ ପରେ ପରେ ଆକାଶବାଣୀରେ କଣ୍ଠଶିଳ୍ପୀ ଭାବରେ ସୁଯୋଗ ପାଇଲେ ଏବଂ ଗୃହସ୍ଥ ଭାବରେ ସାଧାରଣ ଜୀବନ ଯାପନ କଲେ । ସେ ଅତି ଉଚ୍ଚମନା ଓ ସରଳ ଈଶ୍ୱର ବିଶ୍ୱାସୀ ଥିଲେ । ଏହି ଅକପଟ ବିଶ୍ୱାସ ଓ ଶ୍ରଦ୍ଧା ହିଁ ତାଙ୍କ ଶେଷ ଜୀବନର ପାଥେୟ ହେଲା । ସେ ହେଲେ ଏହାର ଏକ ଜ୍ୱଳନ୍ତ ପ୍ରମାଣ । ସେ ଜୀବନର ଶେଷ ସମୟରେ ପୁରୀ ଶ୍ରୀକ୍ଷେତ୍ରରେ ରହି ଶ୍ରୀ ଶ୍ରୀ ଜଗନ୍ନାଥଙ୍କର ଚାମର ସେବାରେ ନିଯୁକ୍ତ ହୋଇଥିଲେ । ଦୈନନ୍ଦିନ ସେ ଚାମର ସେବା ସହ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଭଜନ, ଜଣାଣ ଆଦି ଆନ୍ତରିକତା ସହ ଗାଉଥିଲେ । ମୋର ଲେଖାରୁ କେତେକ ଗୀତ ସେ ଆକାଶବାଣୀ ମାଧ୍ୟମରେ ପ୍ରଚାର ଉଦ୍ଦେଶ୍ୟରେ ଗାଇଥିଲେ । ଏଥି ନିମନ୍ତେ ମୁଁ ତାଙ୍କଠାରେ କୃତଜ୍ଞ ।

ଆଶ୍ଚର୍ଯ୍ୟର କଥା, ୧୯୮୩ ମସିହା ବାହୁଡ଼ା ଦଶମୀ ଦିନ ସଂଧ୍ୟାରେ ଶ୍ରୀଗୁଣ୍ଡିଚା ମନ୍ଦିରରେ ସେ ଚାମର ପକାଇ ନିଜ ରଚିତ ଗୋଟିଏ ଜଣାଣ ଗାଇଲେ । ଯାହାର ଅର୍ଥ, "ହେ ପ୍ରଭୁ ! ଆପଣ ଆସନ୍ତା କାଲି ଏଠାରୁ ଶ୍ରୀମନ୍ଦିର ଅଭିମୁଖେ ଯାତ୍ରା କରିବେ, କିନ୍ତୁ ମୋତେ ଆଉ ଏ ସଂସାର ଭଲ ଲାଗୁ ନାହିଁ, ମୋତେ କାଲି ମୋ ଗନ୍ତବ୍ୟ ସ୍ଥାନକୁ ପ୍ରେରଣ କରି ଦିଅନ୍ତୁ ।" ଫଳରେ ମହାପ୍ରଭୁ ତାହା ହିଁ କଲେ । ନିମାଇଁ ବାବୁ ଏକାଦଶୀ ଦିନ ଇହଲୀଳା ସମ୍ବରଣ କଲେ । କିନ୍ତୁ ସେ ମରି ଅମର । ତାଙ୍କର ଅକପଟ ଭକ୍ତି, ଦୃଢ଼ନିଷ୍ଠା ଓ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଉପରେ ଅତୁଟ ବିଶ୍ୱାସ ଭକ୍ତଙ୍କ ମୁଖରେ ତାଙ୍କୁ ଚିରଦିନ ବଞ୍ଚାଇ ରଖିବ । ସେ ହେବେ ଭକ୍ତି ଓ ନିଷ୍ଠାର ଆଦର୍ଶ । ଏଥିରୁ ସମସ୍ତ ଭକ୍ତମଣ୍ଡଳୀ ଓ ଜନସମାଜ ବୁଝନ୍ତୁ ଯେ, ଏବେ ମଧ୍ୟ ଅନ୍ତର ଫଟାଇ ଡାକିଲେ ଭଗବାନ କାନ ପତାଇ ଶୁଣନ୍ତି ।

●

କନୌକା ଆନନ୍ଦଧାମ ଆଶ୍ରମ
କଟକ

# ସ୍ମୃତିଚାରଣା

## ଶ୍ରୀ ଅନନ୍ତ ପ୍ରସାଦ ପଣ୍ଡା

ଓଡ଼ିଶାର ଲବ୍ଧ ପ୍ରତିଷ୍ଠ ଗୁରୁ, କଣ୍ଠଶିଳ୍ପୀ ଓ ଭକ୍ତି ସଙ୍ଗୀତର ଅଭିନବ ପରିବେଷକ ବାଣୀକଣ୍ଠ ନିମାଇଁ ହରିଚନ୍ଦନଙ୍କ ସହିତ ବହୁ ଦିନରୁ ମୋର ପରିଚୟ ଥିଲା। କାରଣ ଗୁଣଗ୍ରାହିକତା ମୋର ଗୋଟିଏ ସ୍ୱଭାବ ସୁଲଭ ପ୍ରବୃତ୍ତି। ମୋତେ ଯାହା କେବଳ ଭଲ ଲାଗେ ମୁଁ ତା ପାଇଁ ଦି'ପଦ ପ୍ରଶଂସା ସୂଚକ ଲେଖା ଲେଖି ତାଙ୍କୁ ଉତ୍ସାହ ଦେଇଥାଏ।

ବହୁ ବର୍ଷ ପୂର୍ବେ ମୁଁ ଯେତେବେଳେ କେନ୍ଦ୍ରାପଡ଼ାରେ ଜଣେ ପ୍ରଶାସନିକ ମାଜିଷ୍ଟ୍ରେଟ ଭାବରେ ଅବସ୍ଥାପିତ ଥିଲି, ସେତେବେଳେ ସେଠିକାର ସୁପ୍ରତିଷ୍ଠିତ ରାଧାଶ୍ୟାମ ନରେନ୍ଦ୍ରଙ୍କ ପରିବାରରେ ବାଣୀକଣ୍ଠ ନିମାଇଁ ହରିଚନ୍ଦନଙ୍କର ଜନ୍ମ ଯଦିଓ ସେ କିନ୍ତୁ ବହୁ ଦିନ ଧରି ଆଠଗଡ଼ ରାଜବଂଶରେ ବିବାହ କରି ସେଠାରେ ଅବସ୍ଥାନ କରୁଥିଲେ ଓ ଜୀବନର ଶେଷ କେତେବର୍ଷ ପୁରୀ ଶ୍ରୀ ଜଗନ୍ନାଥ ମନ୍ଦିରରେ କଣ୍ଠଶିଳ୍ପୀ ଓ ଭଜନ ଗାୟକ ଭାବରେ ନିଜର ନିଭୃତ ଜୀବନ ବିତାଇ ଥିଲେ। ତାଙ୍କର ସ୍ୱରରେ ଗୋଟିଏ ସ୍ୱାଭାବିକ ଲାଳିତ୍ୟ ଥିଲା, ଯାହାକି ସାଧାରଣତଃ ତାଙ୍କର ସଙ୍ଗୀତଗୁଡ଼ିକୁ ଶ୍ରୁତି ମଧୁର କରୁଥିଲା। ମୁଁ ଯେତେବେଳେ ପ୍ରଶାସନିକ ବିଭାଗର ଚାକିରିରେ କ୍ଷମତାର ମୋହ ଛାଡ଼ି ଓଡ଼ିଶାର ଗାଁ ଗହଳରେ ପଡି ରହିଥିବା ଜନସାଧାରଣଙ୍କର ସେବା କରିବା ପାଇଁ ଧର୍ମଦାୟ ବିଭାଗକୁ ମୋର ଚାକିରିର ପରିବର୍ତ୍ତନ କରି ଆସିଲି, ସେତେବେଳେ ମୋର ପ୍ରଥମ ପୋଷ୍ଟିଙ୍ଗ୍ ହେଲା ପୁରୀରେ। ମୁଁ ଯେତେବେଳେ ସେଠିକି ବଦଳି ହୋଇ ଯାଇଛି ସେତେବେଳେ ମୋ ବାପା ମା' ମୋ ସହିତ ରହୁଥିଲେ। ପୁରୀରେ ପହଞ୍ଚିଲା ପରେ ମୋ ବାପା ମୋତେ ନିଜେ କହିଲେ ତୁ ତ ଏବେ ଲେଖାଲେଖି କରୁଛୁ, ଗୋଟିଏ "ଜଗନ୍ନାଥ ଜଣାଣ" ଲେଖିଦେଲୁ। ମୁଁ କହିଲି ହେଉ। କଲମ ଧରି ବସିଲି ଜଗନ୍ନାଥଙ୍କର ପ୍ରଶଂସା ଗାଇବି କି ତାଙ୍କୁ ଗାଳି ଦେବି ତାହା ସେ ହିଁ ବିଚାର କରିବେ। ତେଣୁ ମୁଁ ଗୋଟିଏ ଜଣାଣ ଲେଖି ପକାଇଲି। ଲେଖାଟି ଥିଲା ଏହିପରି —

"ତୁମେ ପରା ଦୀନବନ୍ଧୁ ପତିତ ଅନାଥ ବନ୍ଧୁ
ତୁମରି କରୁଣା ବିନ୍ଦୁ ଜୀବେ ବିତର।
ନ ମାଗେ ମୁଁ ଧନ ମାନ ଦାସ ଦାସୀ ଅବା ଯାନ
କେବଳ କରୁଣା ଦାନ ମାଗେ ମାତର
ତୁମେ ପରା କରୁଣା ସିନ୍ଧୁ,
ସରି କି ଯିବ ହେ ଦେଲେ ଗୋଟିଏ ବିନ୍ଦୁ ? ॥ ୧ ॥

ତୁମେ ପରା 'ଚକାଆଖି' ବିଶ୍ୱ ଜଗତର ସାକ୍ଷୀ
କେତେ ଜନ ନିରିମାଖି ଅଛନ୍ତି ରହି,
ପେଟ ବିକଳେ ଅଜ୍ଞାନ
ଦେବେ ନିଶାକେ ମ୍ରିୟମାଣ
ମୁଣ୍ଡ ଟେକିବାକୁ ଥାନ ଟିକିଏ ନାହିଁ।
ନ ଦେଖ କି ତୁମେ ନୟନେ ?
କିବା ଲଭ ଚକାଆଖି ନାମ ବହନେ ? ॥ ୨ ॥

ତୁମେ ପରା ଜଗନ୍ନାଥ କର ସୃଷ୍ଟି ଆତ୍ମସାତ
ତୁମକୁ ଜଗତ ତାତ ବୋଲନ୍ତି ଲୋକେ।
ତୁମରି ନିଖିଳ ଧରା ଧନ ସଂପଦରେ ଭରା
କେଉଁ କେଉଁ ଲୋକେ ପରା ମରନ୍ତି ଭୋକେ,
ନ ବୁଝେ ମୁଁ ତୁମ ବିଚାର ?
ସରିକି ଯାଆନ୍ତା ଦେଲେ ମୁଟେ ଭଣ୍ଡାର ? ॥ ୩ ॥

ହେବାର ହେଲାଣି ଯାହା
ତୁମେ ନୋହିଲେ କି ସାହା
ବୁଡ଼ିଯିବ ସୃଷ୍ଟି ନାହିଁ ସିନା ଏଥର ।
ଜଗତେ ବଢ଼ୁ ଶାନ୍ତି ତୁଟି ଯାଉ ମୋହ ଭ୍ରାନ୍ତି
ପାହୁ ଏ ଦୁର୍ଦ୍ଦିନେ ରାଧେ କରୁଣା କର ।
କର୍ତ୍ତା ହୋଇ ହେଲେ ହରଣ,
ଲଭିବ କି ପରରୂପ ବିଶ୍ୱ ବିଧାତା ? ॥ ୪ ॥

ଏ ଜଣାଣଟିକୁ ମୁଁ ସେତେବେଳେ "ପରମାର୍ଥୀ" ନାମକ ଗୋଟିଏ ପତ୍ରିକାରେ ପ୍ରକାଶ କରି ଦେଇଥିଲି ଓ ପ୍ରତିଦିନ ନିର୍ଜନରେ ଜଣାଣ ଗାଇ ଆତ୍ମ ତୃପ୍ତି ଲାଭ କରୁଥିଲି ଓ ଏବେ ମଧ୍ୟ କରୁଛି ।

ଏବେ ଶ୍ରୀ ବାଣୀକଣ୍ଠ ନିମାଇଁ ଚରଣ ପୁରୀ ଜଗନ୍ନାଥ ମନ୍ଦିରରେ ପ୍ରତିଦିନ ଜଣାଣ ବୋଲୁ ଥିବାର ସମ୍ବାଦ ପାଇ ମୁଁ ମୋର ଏଇ ଲେଖାଟିକି ବାଣୀକଣ୍ଠଙ୍କ ପାଖକୁ ପଠାଇ ଦେଇଥିଲି ।

ତା'ର ଉତ୍ତରରେ ଶ୍ରୀ ବାଣୀକଣ୍ଠ ମୋ ପାଖକୁ ଗୋଟିଏ ଚିଠି ଲେଖି ଜଣାଇ ଥିଲେ ଏହିପରି—

"ମୋ ପାଖକୁ କେତେ ଲେଖକ କେତେ ଜଣାଣ ଲେଖି ପଠାନ୍ତି । ମୁଁ ତାକୁ ପଢ଼େ ରଖିଦିଏ । କିନ୍ତୁ ଆପଣଙ୍କର ଏ ଜଣାଣଟି ପଢ଼ି ମୁଁ ଏତେ ମୁଗ୍ଧ ହୋଇ ଯାଇଥିଲି ଯେ ଯାଙ୍ଗେ ଯାଙ୍ଗେ ସିଂହଦ୍ୱାର ପାଖକୁ ଯାଇ ମାଇକ୍ ଲଗାଇ ଜଣାଣଟି ବୋଲି ଦେଲି । ଦେଖିଲି ବହୁ ଲୋକ ଠିଆ ହୋଇ ଶୁଣୁଛନ୍ତି । ତା'ପରେ ମୁଁ ମନ୍ଦିର ମଧ୍ୟକୁ ଯାଇ ଗରୁଡ଼ ସ୍ତମ୍ଭ ନିକଟରେ ବସି ପୁଣି ଥରେ ଏ ଜଣାଣଟି ଗାଇଲି । ମୋତେ ଜଣାଗଲା ଯେତେ ଯେପରି ଚକାଡୋଳା କାନ ଡେରି ମୋର ଜଣାଣଟିକୁ ଶୁଣୁଛନ୍ତି । କାରଣ ଆପଣଙ୍କର ଏଇ ଜଣାଣରେ ବିଶ୍ୱ କଷଣର ବାର୍ତ୍ତା ଫୁଟି ଉଠିଛି ଓ ପ୍ରକାରାନ୍ତରେ ଆପଣ ଜଗନ୍ନାଥଙ୍କୁ ଦାୟୀ କରି ଗାଳି ଦେଇଛନ୍ତି । ଆପଣଙ୍କର ଲେଖନୀ ସୁଧାସ୍ରାବୀ ହେଉ ଏହା ହିଁ କାମନା । ଇତି

ଆପଣଙ୍କର ଗୁଣମୁଗ୍ଧ
ବାଣୀକଣ୍ଠ ନିମାଇଁ ହରିଚନ୍ଦନ

ମୁଁ ଏ ଚିଠିଟିକୁ ପାଇ ଏତେ ମୁଗ୍ଧ ହୋଇଗଲି ଯେ ତାହା କଥାରେ ପ୍ରକାଶ କରି ପାରୁନାହିଁ । ଏଣୁ ଉତ୍ତରରେ ତାଙ୍କୁ ମୋର ଅନ୍ତର ନିଗାଡ଼ି ଧନ୍ୟବାଦଟିଏ ଜଣେଇ ଦେଲି । ତାପରେ ଯେଉଁଦିନ 'ସମାଜ' କାଗଜରୁ ପଢ଼ିଲି ଯେ ବାଣୀକଣ୍ଠ ବାହୁଡ଼ା ବିଜୟ ଦିନ ଇନ୍ଦ୍ରଧାମରୁ ବିଦାୟ ନେଇ ବାହୁଡ଼ି ଯାଇଛନ୍ତି, ସେତେବେଳେ ମୁଁ ଅତୀବ ମର୍ମାହତ ହୋଇ ପଡ଼ିଥିଲି ଓ ପ୍ରାର୍ଥନା କରିଥିଲି ତାଙ୍କର ଅମର ଆତ୍ମାର ସଦ୍‌ଗତି ପାଇଁ ।



ଦେଉଳ ସାହି
କଟକ

# ତାଙ୍କ ସହ ମୋର ସଂପର୍କ

ଶ୍ରୀ ଅଦ୍ୱୈତ ବଲ୍ଲଭ ରାୟ

ସ୍ୱର୍ଗତ ନିମାଇଁ ହରିଚନ୍ଦନଙ୍କ ସହ ମୋର ବହୁ ଦିନର ସଂପର୍କ । ଏ ସଂପର୍କ ନିମାଇଁ ଚରଣ 'ବାଣୀକଣ୍ଠ'ରେ ଭୂଷିତ ହେବା ବହୁ ପୂର୍ବରୁ । ସ୍ୱାଧୀନତା ସଂଗ୍ରାମ ଚାଲିଥିଲା ବେଳେ କେନ୍ଦ୍ରାପଡ଼ା ସହରରେ ମୀର୍ ପାଟଣା ଗ୍ରାମର କେନାଲ କୂଳରେ ଏକ ଅସ୍ଥାୟୀ ତାଟ ଘର ପୋଲିସ ଘେରି ମୋତେ ଏବଂ ଅନ୍ୟ କେତେକ ସହକର୍ମୀଙ୍କୁ ଗିରଫ କରି ଜେଲକୁ ପଠାଇଦେଲେ । ୬ ମାସ ଜେଲ ଭୋଗି ଫେରିଲା ପରେ ରହିବା କେଉଁଠି, ତାହା ହିଁ ଚିନ୍ତାର ବିଷୟ ହେଲା । ନିମାଇଁ ବାବୁଙ୍କ ଗୋବିନ୍ଦଜୀଉ ମନ୍ଦିର ଚନ୍ଦନମଣ୍ଡପରେ ଶେଷରେ ଆଶ୍ରୟ ନେଲି । ନିମାଇଁ ବାବୁ ଓ ତାଙ୍କର ପିତା ବୃନ୍ଦାବନ ବାବୁ ଏଥିରେ ପୂର୍ଣ୍ଣ ସାହାଯ୍ୟ ସହଯୋଗ କଲେ । ପୋଲିସର ଧମକ ଚମକରେ ସେମାନେ ଭୁଲି ନ ଥିଲେ ।

ତାଙ୍କ ସହ ଅନ୍ୟ ଗୋଟିଏ ନିବିଡ଼ ସଂପର୍କ ହେଲା, ସେ ସଂକୀର୍ତ୍ତନାଚାର୍ଯ୍ୟ ବାବାଜୀ ରାମ ଦାସଙ୍କ ପଟ୍ଟ ଶିଷ୍ୟ ଥିଲେ ଓ ବାବାଜୀ ମହାଶୟ କେନ୍ଦ୍ରାପଡ଼ା ବସ୍ତିରେ ସେହି ନିମାଇଁ ବାବୁଙ୍କ ଘରେ ରହୁଥିଲେ । ମୁଁ ମଧ୍ୟ ଗୁହାବସ୍ଥାରୁ ବାବାଜୀ ରାମ ଦାସଙ୍କ ଠାରୁ ମନ୍ତ୍ର ଗ୍ରହଣ କରିଥିଲି । ତେଣୁ ଗୁରୁଭାଇ ହିସାବରେ ସଂକୀର୍ତ୍ତନ ମାଧ୍ୟମରେ ବହୁ ଦିନ ତାଙ୍କ ସହ ଯେଉଁ ସଂପର୍କ ତାହା ଭୁଲି ହେଉ ନାହିଁ । କଟକର ବିଙ୍ଗାଳି ସାହି ମଠ ବାବାଜୀ ମହାରାଜାଙ୍କ ପୀଠ ସ୍ଥଳୀ ଥିଲା । ନିମାଇଁ ବାବୁ ଅଧିକାଂଶ ସମୟରେ ସେହି ମଠରେ ରହି ସଂକୀର୍ତ୍ତନରେ ଯୋଗ ଦେଉଥିଲେ । ତାଙ୍କ କଣ୍ଠରୁ ଭକ୍ତି-ସଂଗୀତ ଜଣାଣ ଇତ୍ୟାଦି ଶୁଣିବାକୁ ନିଜେ ବାବାଜୀ ମହାରାଜ ବହୁ ସମୟରେ ବସିରହନ୍ତି । ମଠରେ ବହୁ ଭକ୍ତ ସମାବେଶରେ ନିମାଇଁ ବାବୁ ଯେଉଁଭଳି ସଙ୍ଗୀତ ପରିବେଷଣ କରନ୍ତି, ତାହା ମଧ୍ୟ ଆଜି ମନେ ପଡ଼ୁଛି । ବିଶେଷ କରି କଟକ ସହରର ପ୍ରଧାନ ରାସ୍ତା ଦେଇ ମଠରୁ ନଗର ସଂକୀର୍ତ୍ତନ ଗଲା ବେଳେ ନିମାଇଁ ବାବୁ ଖୋଲ ବାଦନ କରି ସମସ୍ତଙ୍କୁ ଚମତ୍କୃତ କରି ପାରୁଥିଲେ । ସୁଢ଼ଳ ଦେହରେ ଦୁଇ କାନରେ ମୁକ୍ତା ଭଳି କାନ ଫୁଲ ପିନ୍ଧି ଖୋଲ ବେକରେ ପକାଇ ଯେ ତାଳ ତାଳ ଯେପରି ନାଚି ନାଚି ଗାଉଥିଲେ, ତାହା ଏ ଯୁଗରେ ସ୍ୱପ୍ନ ଭଳି ଜଣା ପଡ଼ୁଛି ।

ତୃତୀୟ ସଂପର୍କ ହେଲା, ୧୯୪୮ ଜୁଲାଇରେ ଯେଉଁ କେତେକ ଗାୟକ ଗାୟିକାଙ୍କ କଣ୍ଠ ସ୍ୱରରେ କଟକ ଆକାଶବାଣୀ ପ୍ରତିଷ୍ଠିତ ହେଲା, ତାଙ୍କ ମଧ୍ୟରେ ନିମାଇଁ ବାବୁ ଥିଲେ । ସେତେବେଳେ ମୁଁ ମଧ୍ୟ ଦେଶାତ୍ମବୋଧ ସଂଗୀତ ରେଡ଼ିଓରେ ଗାନ କରୁଥିଲି । ଉଭୟଙ୍କ ଦେଖା ସାକ୍ଷାତ ବହୁଥର ହୋଇଛି । ତାଙ୍କର ମିଷ୍ଟଭାଷା, ସ୍ନେହ, ସଂପ୍ରୀତି ମୋତେ ମୁଗ୍ଧ କରିଛି । ତାଙ୍କର ସଂଗୀତରେ ଲାଳିତ୍ୟ ଓ ମୂର୍ଚ୍ଛନା ଓଡ଼ିଶାରେ ସମସ୍ତଙ୍କୁ ମଧ୍ୟ ଯେ ମୁଗ୍ଧ କରିଛି, ଏଥିରେ ସନ୍ଦେହ ନାହିଁ ।

ତାଙ୍କର ମୃତ୍ୟୁର ଅବ୍ୟବହିତ ପୂର୍ବରୁ ପୁରୀର ରଥ ଦାଣ୍ଡରେ ଦେଖାହେଲା । ମୁଣ୍ଡରେ ପଗଡ଼ି ଓ ହାତରେ ଚାମର । ବଡ଼ଠାକୁରଙ୍କର ଚାମର ସେବା ନେଇଛି ବୋଲି ମୋତେ କହିଲେ । ତାଙ୍କ ସହ ଗୁଳି ଗୁଳି ସିଂହ ଦ୍ୱାର ପର୍ଯ୍ୟନ୍ତ ଆସିଲି । ସେଠାରେ ତାଙ୍କ କଣ୍ଠରୁ ଜଣାଣ ଶୁଣି ମୁଁ ଆତ୍ମହରା ହେଲି ।

କାହିଁ, ଏବେ ତାଙ୍କ କଳା ତ କେହି ନେଲେ ନାହିଁ ? ସେ କଣ୍ଠ କମ୍ପା ମୂର୍ଚ୍ଛନା ଶୁଣିବାକୁ ମିଳୁ ନାହିଁ । ସଂଗୀତର ଧାରା କ୍ରମେ ବଦଳି ଗଲା । ଆକାଶବାଣୀର ସେ ଗାୟକ ଥିଲାବେଳେ ଯେଉଁ ସଂକୀର୍ତ୍ତନ ଶୁଣାଯାଇ ଥିଲା, ତାହା ତ ଲୋପ ପାଇଗଲା । ବଡ଼ଠାକୁରେ ତ ଆଉ ସେ ମୂର୍ଚ୍ଛନା ଶୁଣୁ ନାହାନ୍ତି ।

ତାଙ୍କର ଅନ୍ତିମ ଇଚ୍ଛା ପୂରଣ ହୋଇଛି । ବଡ଼ଦାଣ୍ଡର ଧୂଳି ନିଜ ଦେହରେ ବୋଳି ସ୍ୱର୍ଗଦ୍ୱାର ବାଟଦେଇ ସ୍ୱର୍ଗାରୋହଣ କରିଛନ୍ତି । ସ୍ୱର୍ଗ ଧାମରେ ଅପେକ୍ଷା କରିଥିବା ମହାମାନବମାନଙ୍କୁ ସେ ତାଙ୍କର ଭକ୍ତିପୂର୍ଣ୍ଣ ସଙ୍ଗୀତ ଦ୍ୱାରା ମୁଗ୍ଧ କରୁଛନ୍ତି । ଆମେ ଏଣେ ହତାଶ ହୋଇ କେବଳ ତାଙ୍କୁ ସ୍ମରଣ କରୁଛୁ ।

ମାଣିକଘୋଷ ବଜାର, କଟକ

# ଏ ଯୁଗର ସାଲବେଗ : ଭକ୍ତ ହରିଚନ୍ଦନ

ଶ୍ରୀମତୀ ପ୍ରେମଲତା ସାମଲ

ପ୍ରବାଦ ଅଛି, 'ସ୍ୱର୍ଗରେ ଇନ୍ଦ୍ର ମର୍ତ୍ତ୍ୟରେ ନରେନ୍ଦ୍ର ।' ସ୍ୱର୍ଗତ ବାଣୀକଣ୍ଠ ହେଉଛନ୍ତି କେନ୍ଦ୍ରାପଡ଼ାର ସେହି ରାଜା ନରେନ୍ଦ୍ରଙ୍କ ବଂଶଧର । କିନ୍ତୁ ବାଣୀକଣ୍ଠଙ୍କ ନିକଟରେ ସ୍ୱର୍ଗ ଓ ମର୍ତ୍ତ୍ୟ ଥିଲା ସମାନ । କାରଣ ସାରା ଜୀବନରେ ସେ ଜଗନ୍ନାଥଙ୍କ ଜଣାଣ, ଭଜନ ଗାଇ ଯେଉଁ ଖ୍ୟାତି ଅର୍ଜନ କରିଥିଲେ, ତାହା ମାନବ ସମାଜକୁ ସ୍ୱର୍ଗ ସୁଖଠାରୁ ଅଧିକ ସୁଖ ଦେଇ ପାରୁଥିଲା । ଶ୍ରୀ ହରିଚନ୍ଦନଙ୍କର ଭଜନ, ଜଣାଣ ଓ କୀର୍ତ୍ତନ ଉଚ୍ଚକୋଟୀର ହୋଇଥିବାରୁ ତାଙ୍କୁ ଯଥାର୍ଥରେ ବାଣୀକଣ୍ଠ ଉପାଧି ପ୍ରଦାନ କରାଯାଇଥିଲା । ବାଣୀକଣ୍ଠ ଶବ୍ଦ ଉଚ୍ଚାରଣ କଲେ ପ୍ରତ୍ୟେକ ଓଡ଼ିଶାବାସୀ କେବଳ ବୁଝୁଥିଲେ ନଟେ ବ୍ୟକ୍ତିଙ୍କୁ । କାରଣ ସେହି ବ୍ୟକ୍ତିଙ୍କର ସଙ୍ଗୀତ ଗାଇବା ଶୈଳୀ ଥିଲା ସ୍ୱତନ୍ତ୍ର । ପ୍ରାତଃ ଓ ସନ୍ଧ୍ୟାରେ ପ୍ରେମର ଢାଳି ତାଙ୍କ ସ୍ୱ ରଚିତ ଭଜନ, ଓ ଏହାଛଡ଼ା ଛାନ୍ଦ ଓ ଚମ୍ପୂ ଗାଇ ସେ ଶ୍ରୀଜଗନ୍ନାଥଙ୍କୁ ନିଜର ଭକ୍ତି ପ୍ରେମର ପରାକାଷ୍ଠା ଦେଖାଇ ଯାଇଅଛନ୍ତି ।

ବାଣୀକଣ୍ଠ ଏକାଧାରରେ ଥିଲେ ଜଣେ ଭକ୍ତ, ସଙ୍ଗୀତଜ୍ଞ ଓ କଳାକାର । ସ୍ୱର୍ଗତ ଗୋବିନ୍ଦ ଚନ୍ଦ୍ର ଶୂରଦେବଙ୍କ ରାଜତ୍ୱ କାଳରେ ସେ ସଙ୍ଗୀତ ପରିବେଷଣ କରି ଶ୍ରୀ ଜଗନ୍ନାଥ ଚଳଚ୍ଚିତ୍ର "କଳା ଡୋଳା କାହା ତନା" ଭଜନରେ ଭକ୍ତ ବାଉର ଯେଉଁ ସ୍ୱରଧ୍ୱନି ତୋଳିଥିଲେ, ତାହା ଏବେ ବି ପ୍ରତ୍ୟେକ ଦର୍ଶକଙ୍କ କର୍ଣ୍ଣରେ ପ୍ରତିଧ୍ୱନିତ ହେଉଛି ।

ବାଣୀକଣ୍ଠ ଭକ୍ତ ମାର୍ଗରେ ରହି ମଧ୍ୟ ନିଜର ବନ୍ଧୁ ସ୍ୱଜନଙ୍କ ପ୍ରତି ସାମାଜିକ କର୍ତ୍ତବ୍ୟରୁ ଓହରି ଯାଇ ନ ଥିଲେ ।

ଠିକ୍ ବାରବର୍ଷ ତଳର କଥା । ପୁରୀ ଦେଉଳତୋଟା ସାହିରେ ଏକ ବିବାହ ଉତ୍ସବରେ ସବୁ ବନ୍ଧୁ ବାନ୍ଧବ ଏକାଠି ହୋଇଥାଉଁ । ବିବାହ କାର୍ଯ୍ୟ ସରିଲା ପରେ, ସମସ୍ତେ ଖାଇବା ପିଇବାରେ ଲାଗିଲେ । ମନେ ମନେ ଚିନ୍ତା କରୁଥାଏ ଯେ ସମସ୍ତେ ତ ଆସିଲେ, ସମୁଦି ଗଲେ କୁଆଡ଼େ ? ଠିକ୍ ସେନ ଘୋଟାଏ ବେଳେ ସମୁଦି ହରିଚନ୍ଦନ ଆସି ପହଞ୍ଚିଗଲେ । ସମବେତ ବନ୍ଧୁବର୍ଗ ଏକ ସ୍ୱରରେ କହି ଉଠିଲେ ଦେଖ ଦେଖ ନିମାଇଁବାବୁ ଆସିଗଲେ । ହସି ହସି ନିମାଇଁ ବାବୁ କହିଲେ, ମୋର ଡେରି ହୋଇଗଲା, କ୍ଷମା କରିବେ । ତାଙ୍କୁ କୈଫିୟତ୍ ମାଗିବାକୁ ସେଠାରେ କେହି ନ ଥିଲେ । ନିଜ କୈଫିୟତ୍ ନିଜ ମୁହଁରେ । "କାଳିଆ କଙ୍କାଳରୁ ଶ୍ରୀମତୀଙ୍କ କଙ୍କାଳ ବଡ଼ ଅଡ଼ୁଆ କଲା । ଶ୍ରୀମତୀଙ୍କ ପାଇଁ ମୋର ଏତେ ଡେରି । ଦେଖ ବୁଢ଼ୀ କାଳରେ କେତେ ସଜ ହୋଇ, ପାନବଟା ଧରି ଆସିବାକୁ ଘଣ୍ଟାଏ ଲାଗିଗଲା । ପଚାରିଲି, ସମୁଦୁଣୀଙ୍କୁ ନ ଆଣିଥିଲେ କଅଣ ଚଳି ନ ଥାଆନ୍ତା ? ନିମାଇଁ ବାବୁ ମୁରୁକି ହସି ଦେଇ କହିଲେ, ଶ୍ରୀମତୀଙ୍କ ବିନା ଯାହା ଅସମ୍ଭବ । ଏଇ ଗୋଟିଏ କଥା ସ୍ପଷ୍ଟ ପ୍ରମାଣିତ କରେ ନିମାଇଁ ବାବୁଙ୍କର ରସିକତା ଓ ନିଷ୍ଠାପରତା । କାଳିଆ କଙ୍କାଳରୁ ଶ୍ରୀମତୀଙ୍କ କଙ୍କାଳ ସମତୁଲ୍ୟତା ପ୍ରତିପାଦନ କରିବା ସଙ୍ଗେ ସଙ୍ଗେ ସାମାଜିକ ଓ ପାରିବାରିକ ଜୀବନର ପରାକାଷ୍ଠା ବେଶ୍ ପ୍ରମାଣିତ ହୁଏ ।

ଜଗନ୍ନାଥଙ୍କୁ ଚିନ୍ତା କରି, ସେହି ଚିନ୍ତା ଭଣ୍ଡାରରେ ନିଜର ଝିଅ ଓ ପୁଅମାନଙ୍କର ଭବିଷ୍ୟତ ଓ ବୈବାହିକ ବନ୍ଧନକୁ ଠିକ୍ ସମୟରେ ରୂପରେଖ ଦେଇ ଗୃହ ଧର୍ମର ଭାରସାମ୍ୟ ରକ୍ଷିଥିଲେ । ଦୁନିଆକୁ ଆସିବା ପୂର୍ବରୁ ପ୍ରଥମ ଝିଅ, ବଡ଼ ଜେମାଙ୍କୁ ବାଙ୍କିଅନ୍ତା ସାମନ୍ତ ସିଂହାର ବଂଶର ଶ୍ରୀ ମୁରଲୀ ମଙ୍ଗରାଜଙ୍କ ସହିତ ବିବାହ ଦେଇଥିଲେ । ମଧ୍ୟମା ଜେମା ପୁଣି ବାଲିପାଟଣା ନିବାସୀ ଶ୍ରୀ ପ୍ରତାପ ସିଂହଙ୍କୁ ବିବାହ ଦେଇଥିଲେ । ଅଳିଅଳି ସାନ ଜେମା ବାଲିକୁଦା, ଜଗତସିଂହପୁର ନିବାସୀ ଉଦୀୟମାନ ଯୁବକ ଶ୍ରୀ ଅକ୍ଷୟ ସାମନ୍ତରାୟଙ୍କ ସହିତ ବିବାହ ଦେଇଥିଲେ । ବଡ଼ପୁଅ

ଉପେନ୍ଦ୍ର କିଶୋର ହରିଚନ୍ଦନ ବିବାହ ହେଲେ ମୋର ଭଗିନୀ ଜ୍ୟୋତ୍ସ୍ନାମୟୀ (ମନିଆ) ଙ୍କୁ। ଦ୍ୱିତୀୟ ପୁତ୍ର ଗଜେନ୍ଦ୍ର କିଶୋର ଜଣେ ସୁଦକ୍ଷ ଆଇନଜ୍ଞ ଓ ସାହିତ୍ୟିକ। ତୃତୀୟପୁତ୍ର ହେଲେ ଶୈଳେନ୍ଦ୍ର କିଶୋର।

ଆଉ ଉପରେ ଗୋଟିଏ ମିଠା କଥା ଏବେବି ସ୍ମୃତି-ପଟରୁ ଲିଭି ନାହିଁ।

ଶ୍ରୀକ୍ଷେତ୍ରରେ ସାକ୍ଷାତ କରି ମୋର ଆନ୍ତରିକତା ଜଣାଇ କହିଥିଲି "ପ୍ରଭୁ, ଥରେ ଆମ ଆଡ଼େ ପାଦ ପଡ଼ୁ।" 'ବାଣୀକଣ୍ଠ' ଭକ୍ତ ମାର୍ଗରେ ଉତ୍ତର ଦେଲେ—କାଳିଆ ମୋତେ ଛୁଟି ଦେଲେ ତ କେଉଁଆଡ଼େ ଯିବି।" ପବିତ୍ର ବାହୁଡ଼ା ଉତ୍ସବରେ ଚକାଡୋଳା ସବୁଦିନ ପାଇଁ ତାଙ୍କୁ ମରଣଶଯ୍ୟାରୁ ଛୁଟି ଦେଲେ ସତ; କିନ୍ତୁ ବାଣୀକଣ୍ଠ ଚିରଦିନ-ପାଇଁ ରହିଗଲେ କାଳିଆ କୋଳରେ।

ବାଣୀକଣ୍ଠଙ୍କର ପିତୃ-ପିତାମହ ରାଜା ନରେନ୍ଦ୍ରଙ୍କ ବିଷୟରେ ଏକ କୌତୂହଳ ଗଳ୍ପ ଅଛି। ଗଳ୍ପ ହେଲେ ମଧ୍ୟ ତାହା ସତ୍ୟ। ରାଜା ନରେନ୍ଦ୍ର ଇହଧାମ ତ୍ୟାଗର ଅବ୍ୟବହିତ ପୂର୍ବରୁ ପୁରୀ ଯାତ୍ରା କରିଥିଲେ। ତାଙ୍କ ମୃତ୍ୟୁର ପରଦିନ ସନ୍ଧ୍ୟାରେ ଏକ ଗରିବ ପ୍ରଜା ରାଜା ନରେନ୍ଦ୍ରଙ୍କ ନିଆସକୁ ଆସିଥିଲେ। ବାଟରେ ରାଜା ନରେନ୍ଦ୍ରଙ୍କୁ ଦେଖି ପ୍ରଣାମ କଲେ ଓ ନିଆସକୁ ଯିବାର ଅଭିପ୍ରାୟ ଜଣାଇଲେ। ରାଜା ନରେନ୍ଦ୍ର ହସି ହସି ଉତ୍ତର ଦେଲେ—"ମୁଁ ପୁରୀ ଯାତ୍ରା କରୁଛି, ତୁମେ ତୁମର ଋଣ ପରିଶୋଧ କରିଛ, ବର୍ତ୍ତମାନ ଯାଇ ମୋ ପୁଅ ପାଖରୁ ଗୋଳା ଖଣ୍ଡିକ ନେଇ ଆସିବ।" ଗୋଳା ଖଣ୍ଡିକ କେଉଁ ନିର୍ଦ୍ଦିଷ୍ଟ ସ୍ଥାନରେ ଥିଲା, ତାହା ମଧ୍ୟ ସେ ଜଣାଇ ଦେଇଥିଲେ। ପ୍ରଜା ଜଣକ ରାଜା ନରେନ୍ଦ୍ରଙ୍କ ପୁତ୍ରଙ୍କୁ ସାକ୍ଷାତ କରି ସମସ୍ତ କଥା କହିଲେ। ପୁତ୍ର ଓ ଅନ୍ୟାନ୍ୟ ଉପସ୍ଥିତ ନଅରବାସୀ ଲୋକଟିର କଥା ଶୁଣି ଆଶ୍ଚର୍ଯ୍ୟ ହେବା ସଙ୍ଗେ ସଙ୍ଗେ ତାକୁ ଏକ ପାଗଳ ବୋଲି ଭାବିଲେ। ନରେନ୍ଦ୍ରଙ୍କ ପୁଅ ନିଜ ପିତାଙ୍କର ପୂର୍ବଦିନ ମୃତ୍ୟୁ ହେବା କଥା ଭକ୍ତ ପ୍ରଜାକୁ କହି ଗୋଳା ଖଣ୍ଡିକ ପିତାଙ୍କ କହିବା ଅନୁସାରେ ଖୋଜି ଆଣିବାକୁ ଗଲେ। ସତକୁ ସତ ତାହା ନିର୍ଦ୍ଦିଷ୍ଟ ସ୍ଥାନରେ ମିଳିଥିଲା। ସେହି ଗରିବ ପ୍ରଜାକୁ ଗୋଳା ଖଣ୍ଡିକ ପ୍ରଦାନ କରି, ସେ କହିଲେ—"ତୁମେ ମୋର ପିତାଙ୍କୁ ସ୍ୱଚକ୍ଷୁରେ ଦେଖି ପାରିଛ, ସେଥିପାଇଁ ମୁଁ ଆଜି ଆନନ୍ଦିତ।" ଭକ୍ତ ପ୍ରଜାକୁ ସେ କିଛି ଉପଢୌକନ ଦେଇ ସସମ୍ମାନେ ବିଦାୟ ଦେଇଥିଲେ। ସେହି ବଂଶର ଦାୟାଦ ଥିଲେ ସ୍ୱର୍ଗତ ବାଣୀକଣ୍ଠ।

୧୯୮୩ ମସିହା ଶ୍ରୀକ୍ଷେତ୍ରର ବାହୁଡ଼ା ଯାତ୍ରା ସମଗ୍ର ଓଡ଼ିଆ ଜାତି ପକ୍ଷରେ ଥିଲା ଏକ ଦାରୁଣ ବର୍ଷ। ଏକ ବିରାଟ ପ୍ରତିଭାର ଶିଖା ଲିଭି ଗଲା, ଅଜ୍ଞାତ ମଳକରେ। ବାହୁଡ଼ା ଦଶମୀର ପୂର୍ବ ଦିନ ଶ୍ରୀଗୁଣ୍ଡିଚା ମନ୍ଦିରରେ ଭାବବିହ୍ୱଳ ଓ ତନ୍ମୟ ହୋଇ ଗାଇଥିଲେ—"ହେ ଜଗନ୍ନାଥ! ତମ ବାହୁ-ଡ଼ାରେ ମୋତେ ବାହୁଡ଼ାଇ ନିଅ।" ଯଥାର୍ଥରେ ବାହୁଡ଼ା ଦିନ ତାହାହିଁ ହେଲା। ଭକ୍ତର ଭଗବାନ ଶ୍ରୀଜଗନ୍ନାଥ ନିଜର ବରପୁତ୍ର ନିମାଇଁଙ୍କ ପ୍ରାର୍ଥନା ଠିକ୍ ସମୟରେ ପୂରଣ କଲେ।

ସେ ଯୁଗର ଭକ୍ତ କବି ସାଲବେଗ ଶ୍ରୀଜଗନ୍ନାଥଙ୍କ ଭଜନ ଗାଇ ଗାଇ ଶ୍ରୀଜଗନ୍ନାଥଙ୍କ ଭିତରେ ଲୀନ ହୋଇ ଯାଇଥିଲେ ବୋଲି ପ୍ରବାଦ ଅଛି। ବାଣୀକଣ୍ଠଙ୍କ ପ୍ରୟାଣ ତାହାହିଁ ପ୍ରମାଣିତ କଲା, ଏ ଯୁଗର ଦ୍ୱିତୀୟ ସାଲବେଗ ହେଉଛନ୍ତି ଭକ୍ତ ହରିଚନ୍ଦନ।



ମାର୍ଫତ୍ କେ. କେ. ସାମଲ୍, ଓ. ଏ. ଏସ୍.
ଏନ୍ଟ୍ରାଶ୍ରମ୍ ରୋଡ଼୍, ଭବାନୀପାଟ
ନଟ ଲ

# ଗୋଟିଏ ଦିନର ଅଲିଭା ସ୍ମୃତି

**ଶ୍ରୀ ବିବେକାନନ୍ଦ ପାଣିଗ୍ରାହୀ**

୧୯୮୦ ମସିହା ସେପ୍ଟେମ୍ବର ମାସ ୨ ତାରିଖ। ସେଦିନ ଥିଲା ଜନ୍ମାଷ୍ଟମୀ। ସକାଳ ସାଢ଼େ ଆଠଟାରେ ଯେତେବେଳେ ତାଙ୍କର ମାଟିମଣ୍ଡପ ବାସଭବନକୁ ଗଲି, ସେ ଜପ ଶେଷ କରି ଉଠୁଥା'ନ୍ତି। ବୃଦ୍ଧ ଶରୀର ହେଲେ ମଧ୍ୟ ବେଶ୍ ସୁସ୍ଥ ସବଳ ଏବଂ ପ୍ରଫୁଲ୍ଲ ଜଣା ପଡ଼ୁଥାନ୍ତି। ଆପାଦ-ମସ୍ତକ ହୋଇ ଲମ୍ବିଥାଏ ପ୍ରଭୁ ଶ୍ରୀ ଜଗନ୍ନାଥଙ୍କର ଶିର-କପଡ଼ା। ଗୋଟିକୁ ଗୋଟି ଗଣ୍ଠି ପଡ଼ି ଠିକ୍ ଫୁଲମାଳ ପରି କଣ୍ଠ ଦେଶରୁ ପାଦ ପର୍ଯ୍ୟନ୍ତ ଝୁଲୁଥାଏ। ନାସାଗ୍ରରୁ କପାଳ ପର୍ଯ୍ୟନ୍ତ ରାମାନନ୍ଦୀ ଚିତା। ଗଣ୍ଡ ଦେଶର ଚର୍ମ କୋଞ୍ଚିତ ହୋଇଥିଲେ ମଧ୍ୟ ମୁଖମଣ୍ଡଳ ବେଶ୍ ତେଜବାନ ଜଣା ପଡ଼ୁଥାଏ। ମୁଁ ପହଞ୍ଚିଲା ସଙ୍ଗେ ସଙ୍ଗେ ଆସି କବାଟ ଖୋଲି ଦେଲେ। ମୁଁ ମୋର ଯଥା ମାନ୍ୟ ଜଣାଇଲି। ତାଙ୍କର ଥରିଲା ଥରିଲା ହାତରେ ପ୍ରତି ନମସ୍କାର ଜଣାଇ ହାତ ଧରି ଘର ଭିତରକୁ ଆସିବା ପାଇଁ ଅନୁରୋଧ କଲେ। କାନ୍ଧ, ମୁଣ୍ଡ, ଆଉଁସି ଆଉଁସି ସ୍ନେହରେ କେତେ କ'ଣ ପଚାରି ପକାଇଲେ, ସତେ ଯେପରି ମୁଁ ତାଙ୍କର ଅତି ଜଣାଶୁଣା ନିଜର ଲୋକ। ସ୍ନେହ ମମତା ଭରା କଥା। ସତେ ତାଙ୍କର ହୃଦୟଟି କେତେ ସରଳ ନିଷ୍କପଟ। ପ୍ରତି ପଦରେ 'ବାପା'ର ସମ୍ବୋଧନ। କେତୋଟି ଘଣ୍ଟା ମାତ୍ର ରହଣିରେ ମୁଁ ତାଙ୍କ ପରିବାରର ଜଣେ ସଦସ୍ୟ ହୋଇଗଲି। ଏପରି ଉଦାର ଏବଂ ମହତ୍ତ୍ୱପୂର୍ଣ୍ଣ ହୃଦୟ ଗଢ଼ିବାକୁ କେତେ ଯୋଗ, କେତେ ତପ, କେତେ ସାଧନା ଦରକାର। ଧନ୍ୟ ସେ ମହାନ୍ ହୃଦୟ!!

ପରେ ମୁଁ ହୃଦୟଙ୍ଗମ କଲି ସେ କେବଳ [illegible] ବା ଭଜନ ବୋଲୁ ନ ଥିଲେ। ସୃଷ୍ଟି କର୍ତ୍ତା ଭଗବାନଙ୍କ ପ୍ରତି ତାଙ୍କର ଅଗାଧ ଭକ୍ତି ଥିଲା। ସେ ତାଙ୍କର ହୃଦୟ ରାଜ୍ୟକୁ ଉପଯୁକ୍ତ ଭୂମି ନିର୍ମାଣ କରି, ସେଥିରେ ନାମ ରୂପକ ବୀଜ ବପନ କରି ଭଜନ ରୂପକ ସାର ପ୍ରୟୋଗ କରୁଥିଲେ। ସେଥିପାଇଁ ତାଙ୍କର ଭକ୍ତିରୂପକ ଫସଲ ଉଧେଇ ପାରୁଥିଲା। ଭଗବାନ ତାଙ୍କର ବାଣୀରେ ଗୀତ ବୋଲୁଥିଲେ। ସେ ଥିଲେ ବାଣୀକଣ୍ଠ।

ସେ ମୋର ଆସିବାର ଅଭିପ୍ରାୟ ପଚାରିଲେ। ମୁଁ ଟିକିଏ ନୀରବ ରହିଲି। ସଙ୍ଗେ ସଙ୍ଗେ ମୋର ହାତରେ ଥିବା "ଭକ୍ତି ସଙ୍ଗୀତ" ପାଣ୍ଡୁଲିପିଟି ନେଇ ବଡ଼ ହସଟାଏ ହସିଲେ। କହିଲେ—"ଓଃ! ତାହାହେଲେ ମୋର ଏହି ଜନ୍ମାଷ୍ଟମୀ ଦିନର ଜପ ପରେ ବେଶ୍ ଜଣାଣଟିଏ ଜମିବ।" ଏହା କହି ପାଣ୍ଡୁଲିପିଟି ଏମୁଣ୍ଡ ସେମୁଣ୍ଡ ଓଲଟ ପାଲଟ କରି ଦେଖିଲେ ଏବଂ ପାଞ୍ଚଟି ଜଗନ୍ନାଥ ଜଣାଣରେ ଚିହ୍ନଟାଏ ଲେଖାଏଁ ଦେଇଦେଲେ। ହସି ହସି ପଚାରିଲେ—"ଆପଣ କ'ଣ ଗୃହୀ ଛନ୍ତି?" ମୁଁ କହିଲି—"ମୋର ଉଦ୍ଦେଶ୍ୟ ଆପଣଙ୍କୁ ବେଶ୍ ଜଣା।" ସେ ଠୋ ଠୋ ହସିଲେ। ତା'ପରେ ତାଙ୍କର ବାଣୀକଣ୍ଠରୁ ଝରି ଆସିଲା "କଳାକାହ୍ନୁ ଲୁଚିଛ କେଉଁଠି? କିଏ ଜାଣିଅଛି ଏ ରୂପ କାହିଁ? ଦେଖ ସହିରେ, ସେ'ତ ଭକତର ଭଗବାନ, ମହାଭାରତର ଯୁଦ୍ଧ ଭୂମି ଠାରେ ଇତ୍ୟାଦି ଇତ୍ୟାଦି। ଜଣା ପଡ଼ିଲା ସତେ ଗ୍ରାମ୍‌ଫୋନ୍ ରେକର୍ଡ଼ରୁ ଗୀତର ଲହରୀ ଭାସି ଆସିଲା।

ଏହି ଗୀତ ପାଞ୍ଚଟିକୁ କପି କରି ଦେବା ପାଇଁ କହିଲେ ଏବଂ ତାଙ୍କର ଥରିଲା ଥରିଲା ହାତରେ ପାନଖିଲି ତିଆରି କରି ବସିଲେ। ପାନ ପତର ଧରି ତା' ଉପରେ ଚୂଆ ଯେତେଥର ଦେଉଥାନ୍ତି ଖସି ପଡ଼ୁଥାଏ। ମୁଁ କହିଲି—"ମଉସା! ଖିଲିଟି ମୁଁ ତିଆରି କରି ଦେଉଛି।" ସଙ୍ଗେ ସଙ୍ଗେ ଉତ୍ତର କଲେ—"ନାହିଁ ବାପା! ମୋ ହାତରେ ଖିଲଟାଏ ଦେଲେ ମୋତେ ବେଶ୍ ଆନନ୍ଦ ଲାଗିବ। ଦୁଇଟି ଅତି ପରିଶ୍ରମରେ, ଅତି ଯତ୍ନରେ ପାନଖିଲି ତିଆରି କଲେ।

ପାନଖିଳ ପାଟିରେ ପକାଉ ପକାଉ ଥରିଲା ଥରିଲା କଣ୍ଠରେ କହିଲେ—"ବହୁତ ଦୁଃଖର କଥା ବାପ ! ମୁଁ ଆଉ ରେକର୍ଡରେ ଗୀତ ବୋଲିବା ଯୋଗ୍ୟତାରେ ନାହିଁ । ତେଣୁ ଏ ପାଞ୍ଚଟି ଗୀତ ନେଉଛୁ । ମନ୍ଦିର ଭିତରେ ବୋଲିବ ।"

ତା'ପରେ କଲମଟାଏ ଧରି ମୋର 'ଭକ୍ତ ସଙ୍ଗୀତ' ପାଣ୍ଡୁଲିପିରେ 'ଆଶୀର୍ବାଦ ଛଳରେ ଲେଖିବାକୁ ଆରମ୍ଭ କଲେ.... .

'ଶ୍ରୀ ଶ୍ରୀ ରାଧାଗୋବିନ୍ଦ ଦେବ ଚରଣେ ଜୟ ଶ୍ରୀ ଗୁରୁଦେବ । ଏହି ଗୀତମାନ ପଢ଼ିଲି । ଶ୍ରୀ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କର କରୁଣ ଭଜନ ଲେଖିଛନ୍ତି । ମୁଁ ପଢ଼ି ବଡ଼ ଆନନ୍ଦିତ । ଚନ୍ଦାତୋଳାଙ୍କୁ ଜଣାଉଅଛୁ ଏହିପରି ଗୀତମାନ/କବିତାମାନ ରଚନା କରିବାକୁ ଶ୍ରୀ ଶ୍ରୀ ଜଗନ୍ନାଥ ତାଙ୍କୁ ସହାୟ ହୁଅନ୍ତୁ । ଏହାର ପ୍ରଚାର ଏବଂ ପ୍ରସାର ହେଉ ।'

ଶ୍ରୀ ନିମାଇଁ ଚରଣ ହରିଚନ୍ଦନ, ତା ୨ । ୪ । ୮୦ । ଏତିକି ମାତ୍ର ଦେଖା ।

ମଣିଷ ଏହି ସଂସାରକୁ ଆସେ ଯାଏ ଅନେ । ସଂସାରର ଲୋକେ କ୍ୱଚିତ୍ । ଏହି ଦୁଃଖ ଜଞ୍ଜାଳ ଭରା ଜଗତକୁ ଆସି ଯେବେ ସତ୍ କାର୍ଯ୍ୟରେ କାଳ ଯାପନ କରେ, ସେ ହସି ହସି ବିଦାୟ ନିଏ । ମାତ୍ର ସମସ୍ତଙ୍କ ଆଖିରେ ଶ୍ରାବଣର ଝର ଝରିଯାଇ, ଆଖି ଛଳ ଛଳ କରାଇ ।

ଦେଶ୍ରୀ ବାଣୀକଣ୍ଠ ସ୍ୱର୍ଗତ ଶ୍ରୀ ନିମାଇଁ ଚରଣ-ହରିଚନ୍ଦନ ଥିଲେ ଜନ୍ମରୁ ଜଣେ । ପ୍ରଭୁ ଜଗନ୍ନାଥ ତାଙ୍କର ମନୋକାମନା ପୂର୍ଣ୍ଣ କଲେ । ତାଙ୍କର ଶେଷ ପ୍ରାର୍ଥନା—"ହେ ଜଗନ୍ନାଥ ତମ ବାହୁଡ଼ାରେ ମୋତେ ବାହୁଡ଼ାଇ ନିଅ ।" ଭଗବାନ ଭକ୍ତର ଅନ୍ତରର ଡାକ ଶୁଣିଲେ । ଠିକ୍ ବାହୁଡ଼ା ଯାତ୍ରା ଦିନ ଚନ୍ଦାତୋଳା ତାଙ୍କୁ ବାହୁଡ଼ାଇ ନେଇଗଲେ ।



ସହକାରୀ ଟେଲିଗ୍ରାଫ ମାଷ୍ଟର
ଟେଲିଗ୍ରାଫ ଅଫିସ, ସମ୍ବଲପୁର – ୭୬୮୦୦୧

# ବାଣୀକଣ୍ଠ-ପ୍ରତିଭା

**ଶ୍ରୀ ବିଚିତ୍ରାନନ୍ଦ କର**

ନିମାଇଁ ହରିଚନ୍ଦନ ନାଁଟି କହିବା ମାତ୍ରେ 'ବାଣୀକଣ୍ଠ' ଶବ୍ଦଟି ଆପେ ଆପେ ମନକୁ ଆସିଯାଏ ଓ ସେହି ନାଁ ସଙ୍ଗେ ଯୋଡ଼ି ହୋଇଯାଏ । କେବଳ 'ବାଣୀକଣ୍ଠ' କହିଲେ ବି, ନିମାଇଁ ହରିଚନ୍ଦନଙ୍କୁ ବୁଝାଏ । ଯେପରି କି 'ବ୍ୟାସକବି' କହିଲେ ଫକୀରମୋହନଙ୍କୁ, 'କବିସମ୍ରାଟ' କହିଲେ ଉପେନ୍ଦ୍ର ଭଞ୍ଜଙ୍କୁ କିମ୍ବା 'ଉତ୍କଳମଣି' କହିଲେ ଗୋପବନ୍ଧୁଙ୍କୁ ବୁଝାଏ ।

'ବାଣୀକଣ୍ଠ' ଜଣେ ପୋଖତ ଓ ପ୍ରଖ୍ୟାତ ଗାୟକ, ସଙ୍ଗୀତ-ଶିଳ୍ପୀ । ଗୀତ ଗାଇବାର ଶୈଳୀ ତାଙ୍କର ସ୍ୱତନ୍ତ୍ର ଓ ନିଜସ୍ୱ । ଭଜନ, ଜଣାଣ ତଥା ଭକ୍ତି ସଙ୍ଗୀତ ପରିବେଷଣରେ ସେ ଓସ୍ତାଦ୍ ଏବଂ ଏହା ହିଁ ତାଙ୍କର ମୁଖ୍ୟ । କେଉଁଠାରେ ସେ ଯଦି ଭଜନ ଗାଉଥାନ୍ତି କିମ୍ବା ତାଙ୍କ ଭଜନ-ରେକର୍ଡ ବାଜୁଥାଏ, ଦୂରରେ ଥାଇ ଶ୍ରୋତା କହିଦିଏ—ଏ 'ବାଣୀକଣ୍ଠ'ଙ୍କ କଣ୍ଠସ୍ୱର । ସ୍ୱର ତାଙ୍କର ବାରି ହୋଇପଡ଼େ । ସଙ୍ଗୀତ ଗାଇଲା ବେଳେ ତାଙ୍କର ଉଚ୍ଚାରଣ ଅତି ସ୍ପଷ୍ଟ ଓ ସ୍ୱର ଉଚ୍ଚ । ଅସ୍ପଷ୍ଟ ଭାବରେ ସେ ଗାଆନ୍ତି ନାହିଁ । ତ'ଦ୍ୱାରା ସଙ୍ଗୀତର ଲାଳିତ୍ୟ ଓ ମାଧୁର୍ଯ୍ୟ କ୍ଷୁଣ୍ଣ ହୋଇଥାଏ ବୋଲି ସ୍ପଷ୍ଟ ତାଙ୍କର ମତ ।

'ବାଣୀକଣ୍ଠ'ଙ୍କୁ ବାରବାର ମୁଁ ଦେଖିଛି ଓ ତାଙ୍କ ଭଜନ ଶୁଣିଛି—ନିକଟରୁ ଓ ଦୂରରୁ । ଅତି ନମ୍ର ଓ ଶାନ୍ତ ମଣିଷଟିଏ । ଧୋତି, ପଞ୍ଜାବୀ ଓ ଚଦର ପରିହିତ । ମଠା ପଞ୍ଜାବୀ ଅତି ପ୍ରିୟ । ବେଳେବେଳେ ନାମାବଳୀ ଅଙ୍କିତ ଚଦର । କପାଳରେ ଓ ନାସାରେ ତିଳକ । ସବୁବେଳେ ହସ ହସ ମୁହଁ । ସେ ମୁହଁରେ ବିରକ୍ତି କିମ୍ବା ଦୁଃଖର ଚିହ୍ନ ମୁଁ କେବେ ଦେଖି ନାହିଁ । ଦୁଃଖ କରିବା ପାଇଁ ତାଙ୍କର ଉପାଦାନ ଥିଲା କି ନ ଥିଲା, ସେ କଥା ନିଆରା ।

ଶ୍ରୀଜଗନ୍ନାଥଙ୍କ ଭଜନ ଗାଇଲା ବେଳେ ସେ ତନ୍ମୟ ଓ ଭାବବିହ୍ୱଳ ହୋଇ ଉଠନ୍ତି । ଏହି ତନ୍ମୟତା ଓ ଭାବ-ବିହ୍ୱଳତା ହିଁ ତାଙ୍କର ସଙ୍ଗୀତକୁ ଏତେ ବେଶୀ ପ୍ରାଣସ୍ପର୍ଶୀ ଓ ଲଳିତ-ମଧୁର କରିଥାଏ । ଭାବରୁ ଭକ୍ତି ଓ ଭକ୍ତିରୁ ଭାବ । 'ବାଣୀକଣ୍ଠ'ଙ୍କ ଠାରେ ଭାବ ଓ ଭକ୍ତି ଉଭୟ ଥିଲା । ସେ ଥିଲେ ଜଣେ ଶ୍ରେଷ୍ଠ ଭକ୍ତ ।

ଜଗନ୍ନାଥଙ୍କ ଭଜନ ଅନେକ ଗାନ କରନ୍ତି । କିନ୍ତୁ ବାଣୀକଣ୍ଠ ନିମାଇଁ ଚରଣ ହରିଚନ୍ଦନଙ୍କ କଣ୍ଠରେ ସେହି ଭଜନର ଭକ୍ତିନତା ଓ ବୈଶିଷ୍ଟ୍ୟ ବାରି ହୋଇପଡ଼େ । ବୟସର ଚାପ ତାଙ୍କୁ ସ୍ୱର ଭଙ୍ଗ କିମ୍ବା ବେସୁରା କରିପାରି ନ ଥିଲା । ଏହା ହିଁ ତାଙ୍କ କଣ୍ଠର ବାହାଦୂରି ଓ ବୈଶିଷ୍ଟ୍ୟ ।

ବହୁ ଅନୁଷ୍ଠାନରୁ ସେ ସମ୍ବର୍ଦ୍ଧନା, ଅଭିନନ୍ଦନ ଓ ଉପାୟନ ପାଇବାର ସୌଭାଗ୍ୟ ଲାଭ କରିଛନ୍ତି । କିନ୍ତୁ ଦେଖିବାରେ ସେ କେବେ ଅତିମାତ୍ରାରେ ଉଚ୍ଛ୍ୱସିତ କିମ୍ବା ବିହ୍ୱଳିତ ହୋଇ ପଡ଼ି ନାହାନ୍ତି ।

ସଙ୍ଗୀତ ଏକ ଚମତ୍କାର କଳା, ଯାହାକି ମଣିଷ ଓ ପଶୁପକ୍ଷୀର ପ୍ରାଣକୁ ସ୍ପର୍ଶ କରେ । ପ୍ରାଣ ହୁଏ ମୁଗ୍ଧ, ଚକିତ ଓ ଅଭିଭୂତ । ସୁନ୍ଦର ସଙ୍ଗୀତର ମୂର୍ଚ୍ଛନା ଓ ଝଙ୍କାର ମନକୁ ଆଲୋଡ଼ିତ ଓ ଆହ୍ଲାଦିତ କରେ । ପ୍ରାଣୀ ସବୁକିଛି ଭୁଲିଯାଇ

ଆକଣ୍ଠ ପାନ କରେ ସେହି ସଙ୍ଗୀତ-ସୁଧା । ସେଇଥିରେ ହିଁ ତା'ର ତୃପ୍ତି ଓ ଆନନ୍ଦ ।

ଏଇ ସଙ୍ଗୀତ-କଳାର ଶ୍ରେଷ୍ଠ ସାଧକ 'ବାଣୀକଣ୍ଠ' । ସାଧନାରେ ହିଁ ସିଦ୍ଧି । ବହୁ ବର୍ଷ ସାଧନା କରି ସେ ସିଦ୍ଧି-ଲାଭ କରିଥିଲେ ଏବଂ ସଫଳ ଓ ସାର୍ଥକ ହୋଇଥିଲେ । ଅନ୍ୟ ଜଣେ ଯଦି ତାଙ୍କର ଭଜନ ଶୁଣି ତୃପ୍ତ ହେଉଥିଲା, ତେବେ ସେଥିକରେ ହିଁ ତାଙ୍କର ତୃପ୍ତି । ସାମାଜିକ ସ୍ୱୀକୃତି ଓ ସମ୍ମାନକୁ କଳାକାର ଓ ସ୍ରଷ୍ଟା ନିଜର ଶ୍ରେଷ୍ଠ ଧନ ମନେ କରିଥାଏ ।

'ବାଣୀକଣ୍ଠ' ସମାଜରେ ସ୍ୱୀକୃତି ଓ ସମ୍ମାନ ପାଇଛନ୍ତି । ତାଙ୍କୁ ଭକ୍ତି ଓ ଶ୍ରଦ୍ଧା ମୁଁ ଜଣାଉଛି ।

ସେ ଜଗନ୍ନାଥ-ଭକ୍ତ ଥିଲେ ବୋଲି ସେଇ ଜଗନ୍ନାଥଙ୍କ ପୁଣ୍ୟ ବାହୁଡ଼ା ଯାତ୍ରା ଅବସରରେ ଦେହ ତ୍ୟାଗ କଲେ । ସେତେବେଳେ ମୁଁ ଯାଇଥିଲି ଚୀନ୍ ପରିଦର୍ଶନରେ । ଦୁର୍ଭାଗ୍ୟ ଯେ, ଶେଷ ଦର୍ଶନ ଓ ଅନ୍ତିମ ଶ୍ରଦ୍ଧାଞ୍ଜଳି ଜଣାଇବାର ସୌଭାଗ୍ୟ ପାଇପାରି ନ ଥିଲି ।

'ବାଣୀକଣ୍ଠ'ଙ୍କ ସଂପର୍କରେ କବି ମୁରାରି ଜେନାଙ୍କ ବଳିଷ୍ଠ ପ୍ରଚେଷ୍ଟାରେ ଏକ ସ୍ମାରକୀ ଗ୍ରନ୍ଥ ପ୍ରକାଶନର ଆୟୋଜନ ନିଶ୍ଚିତ ଭାବରେ ଅଭିନନ୍ଦନୀୟ । କିନ୍ତୁ ତାଙ୍କର ସେଇ କଣ୍ଠସ୍ୱର ମଝିରେ ମଝିରେ ଶୁଣାଇବାର କାର୍ଯ୍ୟକ୍ରମ କଟକ ଆକାଶବାଣୀ ପକ୍ଷରୁ ହେଉ । ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ପକ୍ଷରୁ "ବାଣୀକଣ୍ଠ ସ୍ମୃତି ପୁରସ୍କାର" ବ୍ୟବସ୍ଥା ହୋଇ ପାରିଲେ ଜଣେ ଶ୍ରେଷ୍ଠ-ସଙ୍ଗୀତ କଳାକାରଙ୍କ ପ୍ରତି ସମ୍ମାନ ପ୍ରଦର୍ଶନ ହୁଅନ୍ତା ।



ସଂପାଦକ—'ମାତୃଭୂମି'
ବାଲକୃଷ୍ଣ ରୋଡ଼, କଟକ

# ହରିଙ୍କ ଚନ୍ଦନ : ହରିଚନ୍ଦନ

ଡକ୍ଟର ବିଚିତ୍ରାନନ୍ଦ ମହାନ୍ତି

ନାଁଆଟା 'ହରି'ରେ ଆରମ୍ଭ ହିନା ମାତ୍ର ହମାଇଁ ହୋଇଥିବାରୁ ଗୌରୀଙ୍କ ସୃଷ୍ଟି ସହିତ ବିଜଡ଼ିତ । ତେଣୁ ହରିଙ୍କ ଚନ୍ଦନ ହୋଇ ହରିଙ୍କ ନାଁରେ ଜଣାଣ କରିବାରେ ବା ବିଚିତ୍ରତା କେଉଁଠି ? ଆମ ପିଲାଦିନେ ଆମ ଘରେ ଥିବା ଗ୍ରାମ୍‌ଫୋନ ରେକର୍ଡ଼ରୁ 'ବିଚଳକୁ ଆଲିଙ୍ଗନ'/'ନନ୍ଦ ରାଜାର ଟିକି ପିଲାଟି' ସଂଗୀତଗୁଡ଼ିକ ଆମକୁ ଏପରି ଆକର୍ଷଣ କରେ ଯେ, ସେଗୁଡ଼ିକ ସେଇ ରେକର୍ଡ ସାଙ୍ଗରେ ତାଳ ଧରି ଧରି ଆମେ ବି ଗାୟକ ଓ ବାଦକ ପାଲଟି ଯାଉ । ଚୌକି ଉପରେ ବସି ଟେବୁଲ୍ ଉପରେ ତାଳ ଦେଇ ମୁଣ୍ଡ ଝୁଙ୍ଗାଇବା ଏ କ'ଣ କମ୍ ସାଧନାର ବ୍ୟାପାର । ଆପଣ ଦେଖିବେ ବାଣୀ କଣ୍ଠେ ଆପଣାର କଣ୍ଠ ବାଣୀରେ ଆମ ଭଳିଆ ବହୁ ରସରସିଆ ଲୋକଙ୍କୁ ବାନ୍ଧି ପକାନ୍ତି । ସେ ଡୋରି ଏପରି ଟାଣ/ସେ ଗଣ୍ଠି ଏପରି ଶକ୍ତ ଯେ ବେଳକୁ ବେଳ ଭିତରକୁ ଭିତର ଫୁଟେ ସିନା; ମାତ୍ର କେବେ ଫାଟେ ନାହିଁ କି ତୁଟେ ନାହିଁ । ମୋର ହେତୁ ପାଇଲା ଦିନୁ ସେ ସ୍ୱର ଏ କାନରେ ଯେମିତି ବାଜୁଥିଲା ୧୯୮୩ ମସିହା ଯାଏ, ସବୁଦିନେ ସେଇପରି ଅତୁଟ ଥିଲା । ତାଙ୍କର ସେ ଅଭିମାନିଆ ଗଳାରୁ 'ଜଗା କାଳିଆକୁ କାହିଁକି ଡ଼ାକ, ସେ ସିନା ରଖିଲ ଆପଣା ଲୋକ'' ନୀଳଚକ୍ରକୁ ଛୁଇଁ ଗାଇବା ଭିତରେ ନୀଳାଚଳର ଆକାଶରେ କେବଳ ମଧୁର ମୂର୍ଚ୍ଛନା ଖେଳି ଯାଏ ନାହିଁ, ଶ୍ରୀକ୍ଷେତ୍ରର ସିଂହଦ୍ୱାର ପାର୍ଶ୍ୱବର୍ତ୍ତୀ ସୂଚନା କେନ୍ଦ୍ରରୁ ନିର୍ଗତ ହେଉଥିବା ସେଇ ପ୍ରଣବ ଝଙ୍କାର ଯେ କୌଣସି ନାସ୍ତିକର ହୃଦୟରେ ମଧ ଗଭୀର ରେଖାପାତ କରେ । ତାଙ୍କର ସେ ଗଳାରେ ସ୍ୱର ଲହରୀ ଅପୂର୍ବ ଭଙ୍ଗିମା ଉପର ନୀରସ ଭୂମିକୁ ଯେ ରସସିକ୍ତ କରେ ସେତିକି ନୁହେଁ, ବଡ଼ଦାଣ୍ଡର ପବିତ୍ର ଧୂଳିରେ ଗଡ଼ିଯାଇ ବୋଲି ହେବାକୁ ପ୍ରେରଣା ବି ଯୋଗାଏ । ସେଇ ତ ହରିଙ୍କ ଚନ୍ଦନ ।

ତାଙ୍କୁ ମୁଁ ଦେଖିଛି ଅତି ନିକଟରୁ, ଏପରିକି କୋଥଳୀ ସେବା ବେଳେ । ପିଲାଟି ଦିନରୁ ଆମ କେନ୍ଦ୍ରାପଡ଼ା ଗୁରୁଜନଙ୍କ ଠାରୁ ଶୁଣିଥିଲି ତାଙ୍କ କଥା/ତାଙ୍କ ବଂଶର କଥା / ତାଙ୍କର ପୂର୍ବପୁରୁଷ ରାଧାଶ୍ୟାମ ନରେନ୍ଦ୍ରଙ୍କ କଥା । ସକାଳୁ ତାଙ୍କ-ନାମ ଉଚ୍ଚାରଣ କଲେ ଦିନଟା ଭଲରେ ଯାଏ । କଥାରେ ଥିଲା, ସ୍ୱର୍ଗରେ ଇନ୍ଦ୍ର/ମର୍ତ୍ତ୍ୟରେ ନରେନ୍ଦ୍ର । ଆପଣଙ୍କୁ ମିଛ ହୋଇପାରେ ମାତ୍ର, ସତରେ ମୁଁ ଛୋଟବେଳୁ ଉଠିଲା ମାତ୍ରେ ରାଧାଶ୍ୟାମ ନରେନ୍ଦ୍ର ତିନିଥର ମନେ ମନେ ଆଉଡ଼ାଇ ନିଏ । ମୁଁ ଭାବୁଛି ଖାଇବା ପିଇବାରେ କିଛି ଅସୁବିଧା ହୁଏ ନାହିଁ । ଦିନଟା ସୁରୁଖୁରୁରେ କଟିଯାଏ । ଆପଣ ମଧ ଫକୀରମୋହନଙ୍କ ଆତ୍ମଚରିତରେ ଏଇ ବଂଶର ଗୁଣାବଳୀ/ଉଦାରତା/ସାଧୁ ସେବା ଆଦି ବିଷୟରେ ଅବଗତ ଥିବେ । କେତେ ସରଳ ବିଶ୍ୱାସୀ ଥିଲେ ଏଇ ଜମିଦାର ବଂଶ । ଆଉ ସାଧୁ ସେବା ନାଁଆରେ କିପରି ଉତ୍ପୀଡ଼ିତ ହେଉଥିଲେ ସେମାନେ, ଉତ୍ତର ପଶ୍ଚିମାଞ୍ଚଳରୁ ଆସୁଥିବା ନାଗା ଜମାତମାନଙ୍କ ଦ୍ୱାରା । କୌଣସି ବାବାଜୀ ମହାରାଜ ଯଦି ଶ୍ରୀକୃଷ୍ଣଙ୍କ ବୃନ୍ଦାବନର ଗୋପଲୀଳା ବିଷୟ ଉତ୍ସବ କରିବାକୁ ଚାହିଁଲେ, ତା'ହେଲେ ବିପୁଳ ଅର୍ଥବ୍ୟୟରେ ମାଟିରେ ତିଆରି ରାଧା ଠାକୁରାଣୀ/ଶ୍ରୀକୃଷ୍ଣ ଓ ସଖା ମାନଙ୍କ ମୂର୍ତ୍ତିଗୁଡ଼ିକ ତିଆରି କରାଇ ଉତ୍ସବ ଅନୁଷ୍ଠାନ କରାଉଥିଲେ, କେନ୍ଦ୍ରାପଡ଼ାର ଗୋବିନ୍ଦଜୀଉଙ୍କ ମନ୍ଦିରରେ । ଏଇ ନରେନ୍ଦ୍ରଙ୍କ ଘର ''ବଡ଼ କୋଠା'' ନାମରେ ଡାକ ଥିଲା । ସାଧୁମାନେ ଚାତୁର୍ମାସ୍ୟ ବ୍ରତ ପାଳନ କରିବା ପାଇଁ କେନ୍ଦ୍ରାପଡ଼ା ଆସୁଥିଲେ ଏବଂ ନ'ଅଙ୍କ ଦୁର୍ଭିକ୍ଷ ବେଳେ ଏଇ ବଂଶ ଅନ୍ନଛତ୍ର ଖୋଲି ଭୋକିଲା ଉପାସିଆ ଜନତା ମୁଖରେ ଆହାର ଦେଇ ବଞ୍ଚାଉ ଥିଲେ । ସାଧୁମାନେ ଦକ୍ଷିଣା ନେଇ ପୁଣି ତା' ପରବର୍ଷ ଏଇ ଜମିଦାର ବଂଶକୁ କରଜ ସୂତ୍ରରେ ଅର୍ଥଲଗାଣ କରି ପୁଞ୍ଜିପତି ହେଉଥିଲେ ଏବଂ ଗୌରବର ଅଧିକାଂଶ ପୁଣ୍ୟାତ୍ମା ନରେନ୍ଦ୍ରଙ୍କ ବଂଶ

ବେଳକୁ ବେଳ ନିଃସ୍ୱ ଓ ନିଃ ସମ୍ବଳ ହୋଇଗଲେ । ପ୍ରସିଦ୍ଧ ବୈଷ୍ଣବ କବି ଅଭିମନ୍ୟୁ ସାମନ୍ତ ସିଂହାର ଏଇ ବଂଶରେ ବିବାହ କରିଥିଲେ । ତେଣୁ ସାହିତ୍ୟ/ଧର୍ମ ଓ ସଂସ୍କୃତି ପରଂପରାର ଯୋଗ୍ୟ ଦାୟାଦ ରୂପେ ଆବିର୍ଭୂତ ହୋଇଥିଲେ ବାଣୀକଣ୍ଠ ନିମାଇଁ ଚରଣ । ତାଙ୍କର ସେହିପରି ନିରହଙ୍କାର ସ୍ୱଭାବ/ଉଦାର ପ୍ରକୃତି/ମେଳାପି ମନ ଓ ହସ ହସ କଥା । ମନେ ପଡ଼େ କେନ୍ଦ୍ରାପଡ଼ାର ନାମାଙ୍କିତ ବାସ୍ତା ବାବାଙ୍କ ନୃସିଂହ ଟିକର ମଠରେ—ସଂଧ୍ୟାର ଗାୟଣା ବାଜଣା ଆସରରେ । ପୁଣି ମହାନଦୀର ସେଇ ପୋଲ ଉପରେ ସନ୍ଧ୍ୟା-ଯାତ୍ରୀ ରୂପେ ଚାଲି ଚାଲି ଆସୁଥିଲା ବେଳେ । ରେଭେନ୍ସା କଲେଜର ଶତାବ୍ଦୀ ପୂର୍ତ୍ତି ଉପଲକ୍ଷେ ଉତ୍ସବ ଅନୁଷ୍ଠାନରେ ଗାନ କଲାବେଳେ । କଳିଙ୍ଗ ସ୍ୱରଶ୍ରୀ ପକ୍ଷରୁ ଅନୁଷ୍ଠିତ ଭକ୍ତ ଜୟନ୍ତୀର ଜୟନ୍ତୀ ମଣ୍ଡପରେ । ପୁରୀ ସିଂହଦ୍ୱାର ସୂଚନା କେନ୍ଦ୍ରରେ ।

୧୯୮୬ ମସିହାର ଗୁଣ୍ଡିଚା ଯାତ୍ରା ବେଳରେ ଲୋକ-ସଂପର୍କ ବିଭାଗ ମଣ୍ଡପ ପାଖରୁ ଠିଆ ହୋଇ ବନ୍ଧୁଙ୍କ ଜଣାଣ ଗାନ କଲାବେଳେ ଓ ଆଲଟ ଚାମର ଢାଳିଲା ବେଳେ ଏବଂ ରଥମାନଙ୍କର ବିଦାୟ ପରେ ସିଂହଦ୍ୱାର ପାଖରୁ କାଳିଆ ଦେଖି ଯାଉ ବାଟେ ଆଗ ପଛ ହୋଇ ଗଲାବେଳେ ।

ସହସ୍ର ସହସ୍ର ଚହ୍ନା ଅଚହ୍ନା ମୁହଁ ଭିତରେ ଆମେ ହୁଏତ ତାଙ୍କର ସ୍ମୃତି ପଟଳରେ ସ୍ଥାନ ପାଇ ନ ପାରୁ, ମାତ୍ର ସେ ବାଣୀ / ସେ ଠାଣି / ସେ ହସ / ସେ ଗୃହାଣୀ ଏବେ ବି ସୁଦ୍ଧା ଆମର ସ୍ମୃତିରେ ସଜୀବ/ସତେଜ/ସଜଳ । ପାରଳା-ଖେମୁଣ୍ଡି କଲେଜରେ ଯୋଗ ଦେବା ପରେ ୧୯୮୩ ଜୁଲାଇରେ ତାଙ୍କ ଏକାଦଶାହ ଉପଲକ୍ଷେ ଏକ ସଭା କରି ତାଙ୍କ ପ୍ରତି ଶ୍ରଦ୍ଧା ଜଣାଇବା ପାଇଁ ସୁଯୋଗ ତିଆରି କରି-ଥିଲି । କାଳୀଚରଣଙ୍କ ଶ୍ରାଦ୍ଧ/ନିମାଇଁ ଚରଣଙ୍କ ଶୁଦ୍ଧି ସହିତ ମଞ୍ଜୁଶ୍ରୀ ସତ୍ୟନାରାୟଣ ପଣ୍ଡାଙ୍କୁ ସଂଯୋଗ କରାଇ ସେହି ସଭାରେ ଜାଣିଲି ଯେ ପାରଳା ମହାରାଜାଙ୍କ ସହିତ ନିମାଇଁ ଚରଣଙ୍କ ସଂପର୍କ ପୁଅର ଶ୍ୱଶୁର ଗୃହକୁ ଅର୍ଥାତ ସମୁଦି ଘରକୁ ଶଙ୍ଖୋଳିବା ପାଇଁ ତାଙ୍କର ପାରଳାଖେମୁଣ୍ଡିକୁ ଆଗମନ । ସମ୍ବର୍ଦ୍ଧିତ ଜନତା ସମସ୍ତେ ନିମାଇଁ ଚରଣଙ୍କ ସ୍ମୃତିରେ ହୋଇଥିଲେ ସନ୍ତପ୍ତ । ଜାଣିଲି, ଏଇ ବାଣୀକଣ୍ଠର ଲହରୀ କେତେ ଦୂର ପରିବ୍ୟାପ୍ତ ?



ପ୍ରାଧ୍ୟାପକ, ଶ୍ରୀକୃଷ୍ଣଚନ୍ଦ୍ର ଗଜପତି କଲେଜ
ପାରଳାଖେମୁଣ୍ଡି ।

# ତାଙ୍କୁ ମୁଁ ଯେତିକି ଜାଣେ

## ଶ୍ରୀ ମୁରଲୀଧର ମଙ୍ଗରାଜ

ବାଣୀକଣ୍ଠ ନିମାଇଁ ହରିଚରଣଙ୍କ ସଙ୍ଗେ ମୋର ଦୀର୍ଘ ଦିନର ସଂପର୍କ । ପିଲା ଦିନୁ ଜ୍ଞାନ ହେବାଠାରୁ ମୁଁ ତାଙ୍କ ସୁସଂପର୍କରେ ଆସିଛି—ଏ ସୁଯୋଗ ମୋର କର୍ମଗତ । ପୁଣି ସମୟର ଗତିରେ ଅବସ୍ଥା ଚକ୍ରରେ ବୃଦ୍ଧ ବୟସରେ ମୋତେ ତାଙ୍କର ବଡ଼ ଜୋଇଁ ହେବାର ସୌଭାଗ୍ୟ ମିଳିଲା ।

ତାଙ୍କର ଯୁବକ ଅବସ୍ଥାରେ ଯାହା ତାଙ୍କୁ ଦେଖିଥିଲି ଶେଷ ଅବସ୍ଥାରେ ମଧ୍ୟ ସେଇ ଗୋଟିଏ କଥା ଦେଖିଲି । ଜଗନ୍ନାଥଙ୍କ ପ୍ରତି ଅଟଳ ଭକ୍ତି ଓ ପ୍ରତ୍ୟେକ କାର୍ଯ୍ୟରେ ନିଷ୍ଠା ବରାବର ତାଙ୍କର ଥିଲା—ସବୁ ଦିନେ ସେ ବଡ଼ ମିଷ୍ଟଭାଷୀ, ସୌଜନ୍ୟବାଦୀ ଓ ଅଭିମାନଶୂନ୍ୟ । ମୁଁ ଦେଖିଛି ଯେତେବେଳେ ଯେଉଁ ଅବସ୍ଥାରେ ସେ ଥାଆନ୍ତୁ ନା କାହିଁକି, ପିଲାଠୁଁ ବୁଢ଼ା ପର୍ଯ୍ୟନ୍ତ ତାଙ୍କ ମୁହଁରୁ ଗୀତଟିଏ ଶୁଣିବାକୁ ଇଚ୍ଛା କଲେ, ଅତି ଆଗ୍ରହର ସହ ସେ ତା'ର ଆଶାପୂର୍ଣ୍ଣ କରିଥାଆନ୍ତି । ବେଳଠୁଁ ଅତିଥି ସତ୍କାର କରିବା ତାଙ୍କର ନୀତି-ଗତ ଅଭ୍ୟାସ ଥିଲା । ତାଙ୍କ ଜୀବନ-କାଳ ମଧ୍ୟରେ ସେ ବହୁ ପ୍ରକାର ବ୍ୟବସାୟ କରିଛନ୍ତି କିନ୍ତୁ; ଅର୍ଥର ମୋହ କୌଣସିଥିରେ ତାଙ୍କୁ କବଳିତ କରିପାରିନାହିଁ । ତାଙ୍କର ଏକ-ମାତ୍ର ନିଷ୍ଠା ଥିଲା ଭକ୍ତି ସଂଗୀତ ଗାଇବା ଓ ଜଗନ୍ନାଥଙ୍କୁ ସେବା କରିବା । ବିଶେଷତଃ ମୋ ଜାଣିବାରେ ତାଙ୍କର ଭାଇ, ବନ୍ଧୁ, ଜ୍ଞାତି, ପରିବାର କାହା ସଙ୍ଗେ ଅସଦ୍ଭାବ ନଥିଲା । ସେ ସମସ୍ତଙ୍କର ପ୍ରୀତିଭାଜନ ଥିଲେ । ଆଉ ଗୋଟିଏ ବଡ଼ କଥା ଓଡ଼ିଶାର ବରିଷ୍ଠ ରାଜନୀତିଜ୍ଞମାନଙ୍କ ସହ ତାଙ୍କର ଖୁବ୍ ଘନିଷ୍ଠ ସଂପର୍କ ଥାଇ ମଧ୍ୟ, ସେ ରାଜନୀତିର ବହୁତ ଦୂରରେ ଥିଲେ । ସେ ଗୋଟିଏ ବିରାଟ ପରିବାରର ମୁଖ୍ୟଥାଇ ସାଂସାରିକ ଜଞ୍ଜାଳରେ ଛନ୍ଦି ହୋଇ ମଧ୍ୟ ତାଙ୍କର ଈଶ୍ୱର ଉପାସନା ଓ ଭଗବତ୍ ନିଷ୍ଠାରେ କେବେ ବ୍ୟତିକ୍ରମ ହୋଇ ନାହିଁ ।

ସେ ନିଜେ ଯେତିକି ଜଗନ୍ନାଥଙ୍କୁ ଭକ୍ତି କରୁଥିଲେ ଅନ୍ୟଙ୍କୁ ମଧ୍ୟ ସେହିପରି କରିବାର ପ୍ରେରଣା ଦେଉଥିଲେ । ତା'ର ଗୋଟିଏ ଉଦାହରଣ ହେଲା—ମୁଁ ପ୍ରାୟ ବର୍ଷରେ ଆଠ, ନଅଥର ପୁରୀ ଯାଏ । ପ୍ରତ୍ୟେକ ଥର—ପ୍ରଥମେ ବସରୁ ଓହ୍ଲାଇ ବଡ ଦେଉଳକୁ ଯାଏ । ଠାକୁରଙ୍କୁ ଦର୍ଶନ କରି ତାଙ୍କ ପାଖକୁ ଯାଏ । ତାଙ୍କ ପାଖେ ପହଞ୍ଚି ପ୍ରଣାମ କରୁକରୁ ତାଙ୍କର ପ୍ରଥମ ପ୍ରଶ୍ନ ହେଲା—"ଦେଉଳକୁ ଯାଇଥିଲ—ଭଲରେ ଦର୍ଶନ ହେଲା ତ ?" ତା'ପରେ ଚର୍ଚ୍ଚାର କଥା—ତାଙ୍କ ସର୍ବସ୍ୱ ସେଇ, ଚକାଡୋଳା—ଅନେକ ସମୟରେ ଖୁସି ଗପ ହେଲା ବେଳେ ତାଙ୍କ ଜୀବନର କେତେକ କାହାଣୀ ଶୁଣାନ୍ତି । ପ୍ରତ୍ୟେକ କାହାଣୀର ମର୍ମ ହେଲା—ଦୁଃଖରେ ସୁଖରେ ଜଗନ୍ନାଥ ତାଙ୍କୁ କି ଭଳି ପରୋକ୍ଷରେ ସାହାଯ୍ୟ କରନ୍ତି । ସାଧାରଣରେ ସେ ଯାହା ନିଜ ପରିବାରରେ ମଧ୍ୟ ସେଇଆ । ତାଙ୍କର ସ୍ନେହ ବଡ଼ ଅନାବିଳ ।

ଦିନକରକଥା । ଠାକୁର ବାହୁଡ଼ା ବିଜେ ହୋଇ ସିଂହଦ୍ୱାର ଠାରେ ରଥରେ ବିଜେ ହୋଇଥାନ୍ତି । ମୁଁ ପୁରୀରେ ପହଞ୍ଚିଲି । ଠାକୁରଙ୍କୁ ଦର୍ଶନ କରି ତାଙ୍କ ପାଖକୁ ଗଲି । ତାଙ୍କୁ ପ୍ରଣାମ କରି ପାଖରେ ବସିଲି । ଯଥାପୂର୍ବ ସେଇପ୍ରଶ୍ନ—"ଠାକୁରଙ୍କୁ ରଥରେ ଦର୍ଶନ କଲ ତ ?" ମୁଁ ହଁ ଭଣିଲି ଓ ପଚାରିଲି—"ଆଜି ପରା ଆପଣଙ୍କର ରଥରେ ପଣାଭୋଗ ହେବାର କଥା ।" ଜବାବ୍ ଦେଲେ ହଁ ଓ କହିଲେ—"ନାହିଁ ଏ ପର୍ଯ୍ୟନ୍ତ ତ କେଉଁ-

ଆଉ୍ କିଛୁ ଅସି ନାହିଁ, ଦେଲେ ଖାଇବେ ।" ଏଥିରୁ ତାଙ୍କ ବଳିଷ୍ଠ ଆତ୍ମବିଶ୍ୱାସ କେତେ ଥିଲା ତାହା ସହଜେ ଅନୁମେୟ । ସେଦିନ ପୁଣ୍ଟରେ ବର୍ଷା ଚାଲିଥାଏ, ମୋତେ କହିଲେ – ସନ୍ଧ୍ୟାକୁ ଅସି ପଣା ପିଇଦେଇ ଯିବ ।

ମୁଁ ଠିକ୍ ରାତି ୮ଟା ବେଳକୁ ସେଇ ବର୍ଷାରେ ତାଙ୍କ-ଘରେ ପହଞ୍ଚିଲି । ଦେଖିଲି ସେ ଫେରି ନାହାନ୍ତି । ପ୍ରାୟ ରାତି ସାଢ଼େ ନଅଟା ଯାଏ ଅପେକ୍ଷା କରି ମୁଁ ନିଜେ ରହୁ-ଥିବା ବାଗେଡ଼ିଆ ଧର୍ମଶାଳାକୁ ଫେରି ଆସିଲି । ପାଖ ରାତି ସାଢ଼େ ଦଶଟା ହେବ । ମୁଁ ଶୋଇବାକୁ ଯାଉଛି ଦେଖିଲି ସେ ନିଜେ ଗୋଟିଏ ହାତରେ ଛତା ଅନ୍ୟ ହାତରେ ପଣା ଧରି ମୋ ରହୁଥିବା କୋଠରୀରେ ହାଜର । ତାଙ୍କୁ ଦେଖି ମୁଁ ବଡ଼ ବିବ୍ରତ ଓ ବିସ୍ମିତ ହୋଇଗଲି । ସେ କିନ୍ତୁ ହସି ହସି କହୁ-ଥାନ୍ତି – "ପଣା କ'ଣ ବାସି ପିଅନ୍ତି । ମୁଁ ଜାଣେ ଧର୍ମଶାଳା ଫାଟକ ବନ୍ଦ ହୋଇଯିବ ବୋଲି ଚାଲି ଆସିଲି ।" ମୋତେ ପଣା ପିଆଇବାରେ ତାଙ୍କର ଆନନ୍ଦର ସୀମା ନାହିଁ । ତାଙ୍କ ସ୍ନେହର ନିଦର୍ଶନ ଏଇଭଳି ।

ଗୋଟେ ବଡ଼ ଅନେକ ଘଟଣା ଜୀବନରେ ଘଟିଛି । ଲେଖିଲେ ପୋଥିଟିଏ ହେବ । ତାଙ୍କର ପ୍ରତ୍ୟେକ କାର୍ଯ୍ୟ ଆମ୍ଭମାନଙ୍କର ଜୀବନରେ ଶିକ୍ଷଣୀୟ ହେବା ଉଚିତ । ବହୁ ଭକ୍ତ, ସାଧୁ ଓ ମହାପୁରୁଷମାନଙ୍କ କଥା ପୋଥିରେ ପଢ଼ିଛୁ; କିନ୍ତୁ ଏ ଯେ ଅଙ୍ଗରେ ଅନୁଭବ କରିବା କଥା— ବାଣୀକଣ୍ଠ ନିମାଇଁ ହରିଚନ୍ଦନ ଆଜି ଆମ ଆଗରେ ପ୍ରତ୍ୟକ୍ଷ ଭାବେ ପ୍ରମାଣ କରି ଦେଇଗଲେ । ପ୍ରକୃତରେ ଭକ୍ତ ଓ ଭଗବାନଙ୍କ ମଧ୍ୟରେ ସଂପର୍କ କ'ଣ ହୋଇପାରେ ?

ମୋର ପ୍ରାର୍ଥନା—ହେ ଚକାଡ଼ୋଳା ! ଏହିଭଳି ଶହ ଶହ ନିମାଇଁ ଚରଣ ସୃଷ୍ଟି କରି ଏ ଦେଶ ଓ ଜାତିକୁ ଆଶୀର୍ବାଦ କର ।

●

ବେହ୍ମପୁର/ବାଲିଅନ୍ତା
ପୁରୀ

# ଅମଳିନ ପ୍ରତିଭା ଭକ୍ତ ବାଣୀକଣ୍ଠ

ସଂଯୁକ୍ତା ତ୍ରିପାଠୀ

ଦୀର୍ଘ ଅର୍ଦ୍ଧ ଶତାବ୍ଦୀରୁ ଅଧିକ କାଳ ଧରି ବାଣୀକଣ୍ଠ ନିମାଇଁ ଚରଣ ହରିଚନ୍ଦନ ଓଡ଼ିଶାର ମାଟି, ପାଣି ଓ ପବନ ସହିତ ଓତଃପ୍ରୋତଃ ଭାବେ ଜଡ଼ିତ । ଓଡ଼ିଶାର ଦ୍ୱାରେ ଦ୍ୱାରେ, ଘରେ ଘରେ ଓ ପୁରପଲ୍ଲୀରେ ସେ ବିଶେଷ ଭାବରେ ଲୋକପ୍ରିୟ ହୋଇଥିଲେ ତାଙ୍କର ଗାୟନ ଶୈଳୀ ପାଇଁ । ତାଙ୍କ କଣ୍ଠରୁ ନିସୃତ ଓଡ଼ିଶୀ, ଛାନ୍ଦ, ଭଜନ ଓ ଚମ୍ପୂ ଇତ୍ୟାଦି ଶୁଣିବାକୁ ଯେପରି ଥିଲା ଶ୍ରବଣ ସୁଖଦାୟୀ, ସେହିପରି ମଧ୍ୟ ଥିଲା ସୁଲଳିତ । ବିଶେଷ କରି ତାଙ୍କ କଣ୍ଠରୁ ନିସୃତ ଭଜନଗୁଡ଼ିକ ଓଡ଼ିଶାରେ ଭକ୍ତି ଧର୍ମର ବନ୍ୟା ଛୁଟାଇ ଥିଲା । ସେଥିପାଇଁ ସେ ଆବାଳ-ବୃଦ୍ଧ-ବନିତା ସମସ୍ତଙ୍କ ହୃଦୟରେ ଆସନ ଗ୍ରହଣ କରିଥିଲେ ।

ମାତ୍ର ଭଗବାନଙ୍କର ନିୟମ ବିଚିତ୍ର । ଭକ୍ତ ଉପରେ ତାଙ୍କର କରୁଣା ଧାରା ସଦା ସର୍ବଦା ଦୃଶ୍ୟମାନ । ଭକ୍ତ ପାଇଁ ସେ ପାଗଳ ଓ ନିଃସ୍ୱ ହୋଇ ଯାଆନ୍ତି । ତଥାପି ଭକ୍ତ ନିକଟରେ ସେ ଭୃତ୍ୟ ସଦୃଶ ଅବସ୍ଥାନ କରିଥାନ୍ତି । ସେହି ଭକ୍ତ ହିଁ ତାଙ୍କର ଜୀବନ । ସେଇଥିପାଇଁ ସେ ବଡ଼ ଦେଉଳ ଛାଡ଼ି ବିଜେ କରନ୍ତି ବଡ଼ଦାଣ୍ଡ ଉପରକୁ । ସେହି ଦାଣ୍ଡରେ ଭକ୍ତମାନେ ଦେଖି ପାଇବେ ମୁକ୍ତି ଓ ଶାନ୍ତି । ଏହିପରି ଏକ ଭକ୍ତ ବାଣୀକଣ୍ଠ ପରମ କାରୁଣିକ ଜଗନ୍ନାଥଙ୍କର ବାହୁଡ଼ା ବିଜୟରେ ହିଁ ଲଭିଲେ ପୁଣ୍ୟ ବାହୁଡ଼ା ବିଜୟ । ଅଧିକ ଆଶ୍ଚର୍ଯ୍ୟ ଲାଗେ ତାଙ୍କ କଣ୍ଠରେ ସ୍ୱରଚିତ ଭଜନ ସେହି ପରମ କାରୁଣିକ ମହାପ୍ରଭୁ ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ—

"ହେ ଜଗନ୍ନାଥ ! ତୁମ ବାହୁଡ଼ାରେ ମୋତେ ବାହୁଡ଼ାଇ ନିଅ ।"

ବାସ୍ତବିକ୍ ସେ ଥିଲେ ଉପଯୁକ୍ତ ଭକ୍ତ ଜଗନ୍ନାଥ ସଂସ୍କୃତିର ଯୋଗ୍ୟ ଦାୟାଦ । ଯେତେ ମହାନ୍ ତାଙ୍କର ଜୀବନ । ସେ ଭକ୍ତକବି ସାଲବେଗଙ୍କ ସହ ତୁଳନୀୟ । ଜଗନ୍ନାଥଙ୍କ ନିକଟରେ ଭଜନ କୀର୍ତ୍ତନ ନ ଗାଇଲେ ସେ ଅନ୍ନ ଜଳ ସ୍ପର୍ଶ କରୁ ନ ଥିଲେ । ପ୍ରାତଃ ଓ ସନ୍ଧ୍ୟାରେ ସେ ଭଜନ ଗାଇ ନିଜ ଜୀବନକୁ ସାର୍ଥକ କରିବା ସଙ୍ଗେ ସଙ୍ଗେ ଅନ୍ୟାନ୍ୟ ବହୁ ଦର୍ଶକଙ୍କୁ ଆକୃଷ୍ଟ କରି ପାରୁଥିଲେ । ଭକ୍ତିଗୀତ ଗାଇଲା ବେଳେ ତାଙ୍କ ଚକ୍ଷୁ ଲୋତକରେ ଭରି ଯାଉଥିଲା । ମାତ୍ର ଏହି ପରିପ୍ରେକ୍ଷୀରେ ଭାବିଲେ ବହୁତ ଦୁଃଖ ଲାଗେ, ଯାହା ଠାରୁ ସଙ୍ଗୀତ ସମାଜ କିଛି ପ୍ରେରଣା ଲାଭ କରୁଥିଲା ସେ ପ୍ରେରଣାର ଉତ୍ସ ବର୍ତ୍ତମାନ ଅସ୍ତମିତ ।

ବର୍ତ୍ତମାନ ବାଣୀକଣ୍ଠଙ୍କର କଣ୍ଠରୁ ନିସୃତ ବିଭିନ୍ନ ସ୍ୱାଦର କେତୋଟି ଗୀତର ମୂଲ୍ୟାୟନ କରୁଛୁ । ଭକ୍ତି ସଙ୍ଗୀତ ଗାଇବାରେ ସେ ଥିଲେ ଓଡ଼ିଶାରେ ଅଗ୍ରଗଣ୍ୟ । ଜଗନ୍ନାଥଙ୍କୁ ସେ ନିଜ ପରିବାରର ଲୋକ ଭଳି ଅଭିମାନ ମିଶ୍ରିତ ସ୍ୱରରେ ଦାବୀ କରି ନାନା କଥା କହିଛନ୍ତି । ଯେଉଁମାନେ ବାଣୀକଣ୍ଠଙ୍କର ଗୀତ ଶୁଣିଥିବେ, ସେମାନେ ନିଶ୍ଚୟ ଉପଲବ୍ଧି କରି ପାରିବେ । ମନେ ହୁଏ ଭକ୍ତି ସଙ୍ଗୀତ ଗାଇଲା ବେଳେ ସେ ସତେ ଯେପରି ଆମ ସମସ୍ତଙ୍କ ତରଫରୁ ପ୍ରତିନିଧିତ୍ୱ କରି ଜଗନ୍ନାଥଙ୍କ ନିକଟରେ ଆମର ଦୁଃଖ ଜଣାଉ ଅଛନ୍ତି । ଉଦାହରଣ ସ୍ୱରୂପ—

ଦୁଃଖୀ କାନ୍ଦେ ସିଂହ ଦୁଆରେ ଅନା ହେ ମଣିମା
ଦୁଃଖ ଶୁଣିବ କି ନା ହେ ମଣିମା ।୦।

ଅଥବା—

ଜଗା କାଳିଆକୁ କହିକି ଡାକ
ସେ'ତ ନୁହେଁ ତୋର ଆପଣା ଲୋକ
ଆପଣା ଲୋକର ଡାକ ଯେ ଶୁଣଇ
ନ ଶୁଣିବ ସେ ତ ତୋହର ଡାକ ।

ଜଗାକାଳିଆ ଯେବେ ତାଙ୍କର ଡାକ ହିଁ ଶୁଣିଲେ । ନିଜର ଘରୋଇ ବାହୁଡ଼ା ଦିବସରେ ତାଙ୍କୁ ଅପଣାର କରି-

କେବେ ଯୁଗ ଯୁଗ ପାଇଁ । ଭକ୍ତ ଆସନରେ ସେ ସବୁଦିନ ପାଇଁ ବାନ୍ଧି ହୋଇ ରହିଗଲେ ।

ଏଥର ଦେଖିବା ତାଙ୍କ କଣ୍ଠରୁ ନିଃସୃତ ପ୍ରାଚୀନ ରଚନାରୁ ଗୋଟିଏ ଗୀତ । ଶ୍ରୀକୃଷ୍ଣ ମଥୁରାକୁ ଚାଲିଯିବା ପରେ ଗୋପାଙ୍ଗନା ମାନଙ୍କର ହୃଦୟର ବୁକୁଫଟା ଚିତ୍କାରର କରୁଣ ଧ୍ୱନି ଏହି ଗୀତଟିରେ କଳ କଳ ନାଦରେ ନିନାଦିତ ହୋଇଛି । ଗୋପାଙ୍ଗନା ମାନଙ୍କର ବେଦନାର୍ତ୍ତ ହୃଦୟର କରୁଣ ଧ୍ୱନି ବ୍ୟକ୍ତ ହୋଇଛି ଉଦ୍ଧବଙ୍କୁ ଦେଖି । ତାହା ଯଥାକ୍ରମେ ରୂପାୟିତ ହୋଇଛି ବାଣୀକଣ୍ଠଙ୍କର କଣ୍ଠରେ—

ଉଦ୍ଧବ, କହିବଟି ଗୋପୀନାହାକୁ
କର ପଲ୍ଲବର କନିଷ୍ଠ ମୁଦ୍ରିକା କଙ୍କଣ ହେଲାଣି ବାହାକୁ ।

ଏହାଛଡ଼ା ବାଣୀକଣ୍ଠଙ୍କ କଣ୍ଠରେ ଓଡ଼ିଶୀ ସଙ୍ଗୀତର ଗାୟନ ଶୈଳୀ ଉଚ୍ଚକୋଟୀର ଏବଂ ପ୍ରାଣସ୍ପର୍ଶୀ । ଉପଯୁକ୍ତ ଭାବ, ବିରାମ ଓ ଯତି ସହ ସେ ଓଡ଼ିଶୀ ସଙ୍ଗୀତକୁ ଗାନ କରୁଥିଲେ । ଆଉ ମଧ୍ୟ ସଙ୍ଗୀତର ମାନସିକ ଅବସ୍ଥାକୁ ଲକ୍ଷ୍ୟ କରି ସେ ଓଡ଼ିଶୀ ପରିବେଷଣ କରୁଥିଲେ । ଯଥା--

ବୃଷଭାନୁ ଜେମା ରାଧିକା
ଯମୁନା ପାଣିକୁ ନ ଯିବୁ ଏକା,
ନେବ ହୁରୁମତ ସାରିବ ମହତ
କାଖର କଳସୀ ଭାଙ୍ଗିଣ ଟେକା ।

ଏହାଛଡ଼ା ରାମଲୀଳା ଗାୟନରେ ସେ ଥିଲେ ଦିବ୍ୟ-ଦ୍ରଷ୍ଟା । ତାହା ହେଲା—

ସୀତାଙ୍କ ମୁଣ୍ଡକୁ ଛୁଇଁ ବୋଲଇ ରାବଣ
କେଉଁ ଦେଶୁ ଆସି ତୁମେ ରହିଲ ଏ ବନ
ଗ୍ରାମାବର ଗୋ ।୦।

ଆମର ପବିତ୍ର ଭାଗବତ ବାଣୀ କହେ—

ମର୍ତ୍ତ୍ୟ ମଣ୍ଡଳେ ଦେହ ବହି
ଦେବତା ହୋଇଲେ ମରଇ ।

ଏ କଥା ସର୍ବଦା ସ୍ୱୀକାର୍ଯ୍ୟ । ଜନ୍ମ ହେଲେ ମୃତ୍ୟୁ ଅନିବାର୍ଯ୍ୟ । ଜଣେ ଇଂରେଜୀ କବିଙ୍କ ଭାଷାରେ କହିଲେ—

Golden lads and girls all must
At chimney sweepers come to dust.

ଏହାଛଡ଼ା କବିବର ରାଧାନାଥ ରାୟଙ୍କ ଭାଷାରେ କହିଲେ—

"ଏ ଜୀବ ନୁହଇଁ ସ୍ଥିର, ସ୍ଥିର ହିଁ ମରଣ
ମାଟିର ଏ ଘଟ ଶେଷେ ମିଶିବ ମାଟିରେ ।"

ମାଟିର ଘଟ ମାଟିରେ ମିଶିବ ଏକଥା ସ୍ୱୀକାର୍ଯ୍ୟ, ମାତ୍ର ଶିଳ୍ପୀ ହରିଚନ୍ଦନଙ୍କର ଗୀତାବଳୀ ଆଜି ପ୍ରତ୍ୟେକ ଓଡ଼ିଶାବାସୀଙ୍କ ହୃଦୟରେ ଆଶାର ଆଲୋକ ବର୍ତ୍ତିକା ହୋଇ ବାଟ ଦେଖାଇବ । କାଳ ବକ୍ଷରେ ସବୁ କିଛି ଲୋପ ପାଇଯିବ । ମାତ୍ର ନୀଳଚକ୍ର ନେତ ଯେତେଦିନ ଯାଏ ଫରଫର ହୋଇ ଉଡ଼ୁଥିବ, ଭକ୍ତ ହୃଦୟରେ ବାଣୀକଣ୍ଠଙ୍କର ପ୍ରତିଭା ଯୁଗ ଯୁଗ ଧରି ଚିର ଜାଜ୍ୱଲ୍ୟମାନ ହୋଇ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିଥିବ । କାଳ କେବେ ତାଙ୍କୁ ମ୍ଳାନ କରି ପାରିବ ନାହିଁ । ସେ ବାଣୀ ମନ୍ଦିରରେ ନିତ୍ୟ ଝଙ୍କୃତ ହେବେ ।



ମାର୍ଫତ—ବାଇଧର ତ୍ରିପାଠୀ
ଯୁଗ୍ମ ସଚିବ, ରାଜ୍ୟ ରେଡକ୍ରସ ସଂସ୍ଥା
ଭୁବନେଶ୍ୱର



୧୯୫୨ ମସିହାରେ ଆକାଶବାଣୀରେ ବାଣୀକଣ୍ଠ ତାନପୁରାରେ
କଣ୍ଠଦାନ କରୁଛନ୍ତି



୧୯୪୭ ମସିହାରେ ବାଣୀକଣ୍ଠ ଜମାଣ୍ଡି ଚ୍ଚରଣ

# ନିମାଇଁ ହରିଚନ୍ଦନ

## ଯୋଗାଚାର୍ଯ୍ୟ ପଣ୍ଡିତ ରମାକାନ୍ତ କର

୧୫୧୦ ଖ୍ରୀଷ୍ଟାବ୍ଦରେ ଶ୍ରୀ ଚୈତନ୍ୟ ଶ୍ରୀକ୍ଷେତ୍ରକୁ ଆସି ଶ୍ରୀକୃଷ୍ଣଙ୍କର ମନ୍ତ୍ରପୂତ ସଂକୀର୍ତ୍ତନ ଆରମ୍ଭ କରିବା ପରେ ତାହାର ପ୍ରଭାବ ପୂର୍ବ ପ୍ରଭାବ ଅପେକ୍ଷା ମହତ୍ତର ହେଲା । ଶ୍ରୀ ଚୈତନ୍ୟଙ୍କର ପ୍ରକୃତ ନାମ ଥିଲା ନିମାଇଁ । ନିମାଇଁ ଯେପରି ଶ୍ରୀକୃଷ୍ଣଙ୍କର ନାମ କୀର୍ତ୍ତନରେ ଭାବ ବିହ୍ୱଳ ହୋଇ କୃଷ୍ଣଧର୍ମର ତତ୍ତ୍ୱ ପ୍ରଚାର ଓ ପ୍ରସାର କରିଥିଲେ, ସେହିପରି ପ୍ରଭାବ ଅନ୍ୟ କୌଣସି ବ୍ୟକ୍ତିବିଶେଷଙ୍କ ଉତ୍କଳରେ ପଡ଼ି ନ ଥିଲା । ତାଙ୍କର ତାତ୍ତ୍ୱିକ ବକ୍ତବ୍ୟରେ ଅଭିଭୂତ ହୋଇ ପଡ଼ିଥିଲେ ଉତ୍କଳୀୟବାସୀ । କ୍ରମଶଃ ଜଗନ୍ନାଥ ସଂସ୍କୃତିରେ ତଥା ଶ୍ରୀକ୍ଷେତ୍ର ମଧ୍ୟରେ ପ୍ରତିଷ୍ଠାପିତ ହେଲା କୃଷ୍ଣମୂର୍ତ୍ତି, କୃଷ୍ଣତତ୍ତ୍ୱ ଓ କୃଷ୍ଣ ଉତ୍ସବ । ସେ ଦେଇଥିଲେ ଏକ ନୂତନ ଦିଗ୍‌ଦର୍ଶନ । ସେହିପରି ଅସଂଖ୍ୟ ତାରକାମାନଙ୍କ ମଧ୍ୟରେ ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କ ଚନ୍ଦ୍ର ସମ ଆବିର୍ଭୂତ ହୋଇଥିଲେ ବାଣୀକଣ୍ଠ ନିମାଇଁ ହରିଚନ୍ଦନ ।

ହରିଚନ୍ଦନ ପୁରୀ ଶ୍ରୀକ୍ଷେତ୍ରରେ ତାଙ୍କର ସଂକୀର୍ତ୍ତନ ଏଭଳି ଭାବରେ ପ୍ରଚାର କରିଥିଲେ ଓ ଶ୍ରୀ ଜଗନ୍ନାଥ ସଂସ୍କୃତି ସହିତ ସେ ନିଜକୁ ଏତେ ସାମିଲ କରାଇ ଦେଇଥିଲେ, ଯାହା-ଫଳରେ ସେ କେବଳ ଶ୍ରୀକ୍ଷେତ୍ରରେ ସୀମିତ ନ ରହି ସାରା ଓଡ଼ିଶାରେ ନିଜର ପ୍ରଭାବ ପକାଇ ପାରିଥିଲେ । ତାହା ହିଁ ଥିଲା ତାଙ୍କ ଜୀବନର ମୌଳିକତା । ନିମାଇଁ ବା ଶ୍ରୀ ଚୈତନ୍ୟ ଯେପରି ନାମ ସଂକୀର୍ତ୍ତନରେ ବିଭୋର ହୋଇ ପଡ଼ୁଥିଲେ, ସେହିପରି ଭାବ ବିହ୍ୱଳ ହୋଇ ପଡ଼ୁଥିଲେ ଭକ୍ତ ସଙ୍ଗୀତରେ ବାଣୀକଣ୍ଠ ନିମାଇଁ । ତାଙ୍କର ସଙ୍ଗୀତରେ ଖୋଳ, ଗିନିର ଆବଶ୍ୟକତା ଥିଲା । ନ ଥିଲା କୌଣସି ପାଶ୍ଚାତ୍ୟ ସଙ୍ଗୀତ ଯାନ୍ତ୍ରିକ ଉପକରଣର ଆବଶ୍ୟକତା । ତାଙ୍କର ସଙ୍ଗୀତ କ୍ଷେତ୍ରରେ ପୂରି ରହିଥିଲା ପ୍ରୟୋଗାତ୍ମକ ଜ୍ଞାନ, ନ ଥିଲା ତାଙ୍କର ବିଶେଷ ତାତ୍ତ୍ୱିକ ଜ୍ଞାନ । ତାଙ୍କର ଭଗବତ୍ ଭକ୍ତିର ପରିପୂର୍ଣ୍ଣତା ଆଣି ଦେଇଥିଲା ମନରେ ଖୁବ୍ ଆନନ୍ଦର ସଞ୍ଚାର । ସଦାବେଳେ ମନ ଥିଲା ହସ ହସ । ଯେତେବେଳେ ଗରୁଡ଼ ସ୍ତମ୍ଭ ପଛରେ ଥାଇ "ଚକା ଡୋଳା କର୍ମା ଡ଼କା" ଗୀତଟିକୁ ଅଭିମାନ ସହିତ ଗଦ୍ ଗଦ୍ କଣ୍ଠରେ ଗାନ କରୁଥାନ୍ତି, ତାଙ୍କ ଶରୀରରୁ ଟପ୍ ଟପ୍ ଝାଳ ବହି ଯାଉଥିବା ସଙ୍ଗେ ସଙ୍ଗେ ଚକ୍ଷୁରୁ ଝରି ଯାଉଥାଏ ଲୋତକର ଧାର । ଆହା ! କି ଅପୂର୍ବ ଶୋଭା ତାଙ୍କର ମୁଖ ମଣ୍ଡଳର । କି ଭାବ ! କି ବିହ୍ୱଳତା ଥିଲା ତାଙ୍କର ।

ଶ୍ରୀ ଜଗନ୍ନାଥଙ୍କର ପ୍ରତ୍ୟେକ ଯାତ୍ରାରେ ଥିଲା ତାଙ୍କର ଉପସ୍ଥିତି । ଚନ୍ଦନ ଯାତ୍ରାରେ ଚାପ ଉପରେ ପ୍ରଭୁଙ୍କର ଚାମର ସେବା, ଝୁଲଣରେ ପ୍ରଭୁଙ୍କ ସମ୍ମୁଖରେ ଭଜନ ଗାନ । ଗୁଣ୍ଡିଚାରେ ଶ୍ରୀ ପ୍ରଭୁଙ୍କର ରତ୍ନସିଂହାସନରେ ଦର୍ଶନ । ସଦା-ସର୍ବଦା ଶ୍ରୀ ଜଗନ୍ନାଥଙ୍କର ପଦାରବିନ୍ଦରେ ସେବା କରି କରି ତାଙ୍କର ସାରା ଜୀବନ କଟି ଯାଇଥିଲା ।

ସେ ସାଧାରଣ ଭଜନ କୀର୍ତ୍ତନକୁ ଗାଁ ଗହଳରୁ ମୁକ୍ତ କରି ସମଗ୍ର ଉତ୍କଳ ଦରବାରରେ ପରିବେଷିତ, ପ୍ରଶଂସିତ ଓ ଆଦୃତ କରାଇବା ସଙ୍ଗୀତଜ୍ଞମାନଙ୍କ ମଧ୍ୟରେ ସେ ଥିଲେ ଅଗ୍ରଗଣ୍ୟ । ବିଂଶ ଶତାବ୍ଦୀର ସେ ଥିଲେ ଏକ ବରେଣ୍ୟ ପ୍ରତିଭାବାନ ବ୍ୟକ୍ତି, ଯେ କି ତାଙ୍କର ସ୍ୱୀୟ ପ୍ରତିଭା ମାଧ୍ୟମରେ ଆଣି ପାରିଥିଲେ ନିଜ ଜୀବନର ସାର୍ଥକତା ।

ନିମାଇଁ ହରିଚନ୍ଦନ ଥିଲେ ଜଣେ ଲବ୍ଧ ପ୍ରତିଷ୍ଠ ସଙ୍ଗୀତଜ୍ଞ । ସେ ତାଙ୍କର ଓଡ଼ିଆ ସଙ୍ଗୀତ ମାଧ୍ୟମରେ ଓଡ଼ିଆ ସାହିତ୍ୟର ଅଭିବୃଦ୍ଧି ସାଧନ କରି ପାରିଥିଲେ । ସେ ଥିଲେ ଶ୍ରୀ ଜଗନ୍ନାଥଙ୍କର ପରମ ଭକ୍ତ । ସମଗ୍ର ଓଡ଼ିଶାର ପୁରପଲ୍ଲୀରେ ତାଙ୍କର ଭକ୍ତି ଭଜନ ପରିବେଷଣ କରାଇ ସେ ଥିଲେ ଘରେ ଘରେ ସୁପରିଚିତ ।

ଯେତେବେଳେ କଟକରେ ଆକାଶବାଣୀ କେନ୍ଦ୍ର ନ ଥିଲା, ସେତେବେଳେ ତାଙ୍କର ଗୀତର ମଧୁର ମୂର୍ଚ୍ଛନା ଭାସି ଆସୁଥିଲା ସୁଦୂର କଲିକତାରୁ ।

କଟକରେ ଆକାଶବାଣୀ କେନ୍ଦ୍ର ଅବସ୍ଥାପିତ ହେବାରେ ନିମାଇଁ ହରିଚନ୍ଦନ ହେଲେ ଉକ୍ତ କେନ୍ଦ୍ରର ଆଦ୍ୟ ଓ ପୁରାତନ ଶିଳ୍ପୀ । ସେ ନ ଥିଲେ ଜଣେ ସଙ୍ଗୀତ ବ୍ୟବସାୟୀ, ଥିଲେ ଜଣେ ସଙ୍ଗୀତ ରସିକ ଓ ପ୍ରଚାରକ । ସଙ୍ଗୀତ ମାଧ୍ୟମରେ ସେ କରି ନ ଥିଲେ ଅର୍ଥର ଆୟ, ବରଂ ସଙ୍ଗୀତ ପାଇଁ ସ୍ୱ ହସ୍ତରେ କରିଥିଲେ ସର୍ବସ୍ୱ ଉତ୍ସର୍ଗ । ପରିଶେଷରେ ଭଗବତ୍ ଭକ୍ତି ହିଁ ଥିଲା ତାଙ୍କର କାମ୍ୟ । ସେ ତାଙ୍କର ସଙ୍ଗୀତରେ ଅପୂର୍ବ ମୂର୍ଚ୍ଛନାର ପରିବେଷଣ ମାଧ୍ୟମରେ ଶ୍ରୋତା ମହଲରେ ବିଶେଷ ଆଦୃତ ହେବା ସଙ୍ଗେ ସଙ୍ଗେ, ଆବାଳ-ବୃଦ୍ଧ-ବନିତା ସମସ୍ତଙ୍କ ନିକଟରେ ସେ ଥିଲେ ସୁପରିଚିତ ।

ଶ୍ରୀ ଜଗନ୍ନାଥଙ୍କ ନିକଟରେ ତାଙ୍କର ସ୍ୱରର ସେବା ଓ ଶ୍ରୀ ଜଗନ୍ନାଥଙ୍କର ରୂପ ଦେଖି ଭକ୍ତି ଭଜନରେ ତନ୍ମୟ ହେବା ହିଁ ଥିଲା ତାଙ୍କ ଜୀବନର ଶାଶ୍ୱତ ଚର୍ଯ୍ୟା । ସେ ତାଙ୍କର ଜୀବନରେ ପଦ୍ମଶ୍ରୀ, ବାଣୀକଣ୍ଠ ଇତ୍ୟାଦି ପଦବୀରେ ବିଭୂଷିତ ହୋଇଥିଲେ ମଧ୍ୟ, ସେହି ପଦବୀ ପ୍ରାପ୍ତି ତାଙ୍କର ଜୀବନର ଚରମ ଲକ୍ଷ୍ୟ ନ ଥିଲା, ଥିଲା କେବଳ ସଙ୍ଗୀତ ମାଧ୍ୟମରେ କୈବଲ୍ୟ ପ୍ରାପ୍ତି ।

ବାସ୍ତବିକ ତାଙ୍କର ସ୍ୱପ୍ନ ହିଁ ବାସ୍ତବରେ ପରିଣତ ହେଲା । ସମଗ୍ର ଜୀବନ କାଳିଆ ଠାକୁରଙ୍କ ସଙ୍ଗୀତ ଗାୟନ କରି କରି ପରିଶେଷରେ ତାଙ୍କର କ୍ଷେତ୍ରରେ ଶ୍ରୀ ଜଗନ୍ନାଥଙ୍କର ବାହୁଡ଼ାବସରରେ ଓଡ଼ିଶାର ଏହି ମହାନ୍ ପ୍ରତିଭାକୁ ସ୍ୱୟଂ ଜଗନ୍ନାଥ ହିଁ ବାହୁଡ଼ାଇ ନେଲେ । ଏହି ନଶ୍ୱର ଶରୀରର ଅବସାନ ଘଟିଲା ସତ, କିନ୍ତୁ ଶାଶ୍ୱତ କୀର୍ତ୍ତି ସମ୍ବର୍ଦ୍ଧନ ପାଇଁ ତାଙ୍କୁ ରଖିଲା ଜୀବନ୍ତ ।

ସେ ଆଜି ଇହ ଜଗତରେ ନାହାନ୍ତି ସତ, କିନ୍ତୁ ତାଙ୍କର ସେହି ଅପୌରୁଷେୟ ଯଶ, କୀର୍ତ୍ତି, ସଙ୍ଗୀତ ଓ ନିଜର ବ୍ୟକ୍ତିତ୍ୱ ପାଇଁ ସେ ଯୁଗେ ଯୁଗେ ଅମର ହୋଇ ରହିଥିବେ ।

●

ସଂସ୍କୃତ ଶିକ୍ଷକ,
ସରକାରୀ ଦାଶରଥି ହାଇସ୍କୁଲ
ଗ୍ରାମ ଓ ପୋଷ୍ଟ—ଓଲସିଂହ
ଜିଲ୍ଲା—ଜଂକିଆ, ପୁରୀ

# ଅପୂର୍ଣ୍ଣ ରହିଗଲା

## ଶ୍ରୀ ପର୍ଶୁରାମ ବେହେରା

ନିମାଇଁ ଚରଣ ହରିଚନ୍ଦନ ତାଙ୍କ ଜୀବନ କାଳ ମଧ୍ୟରେ ଓଡ଼ିଶାର ବହୁ ପୁର ପଲ୍ଲୀରେ ସଙ୍ଗୀତ ଚର୍ଚ୍ଚା କରି ଯାଇଅଛନ୍ତି । ଏକ ସମୟରେ ସମ୍ଭବତଃ ୧୯୩୨ ମସିହା ପ୍ରାରମ୍ଭରେ ଏହି ସୁକୁମାର ସଙ୍ଗୀତଜ୍ଞ କଳକଳା ଗଡ଼ର ରାଜା ଭାଗୀରଥି ବିଦ୍ୟାଧର ମହାପାତ୍ରଙ୍କ ଆମନ୍ତ୍ରଣ କ୍ରମେ ସଙ୍ଗୀତ ସମାରୋହରେ ଯୋଗ ଦେଇଥିଲେ । ସେହି ସମୟରେ କଳକଳାରେ ସଙ୍ଗୀତ ଓ ରାସଦଳ ପ୍ରତିଷ୍ଠା ଲାଭ କରିଥିଲା । ତତ୍କାଳୀନ ରାଜା ଜଣେ ସଙ୍ଗୀତାନୁରାଗୀ ଯେ କେବଳ ଥିଲେ ତାହା ନୁହେଁ; ସେ ରାସଦଳର ପ୍ରଧାନ ପୃଷ୍ଠପୋଷକ ଥିଲେ । ସେହି ଅବସରରେ ଯେତେବେଳେ ବାଣୀକଣ୍ଠ ନିମାଇଁ ଚରଣ କଳକଳା ଗଡ଼ରୁ ଡାଳିଯୋଡ଼ା ଅଭିମୁଖେ ଯାତ୍ରା କରିଥିଲେ, ସେତେବେଳେ ଏହି ଗଡ଼ର ଶେଷ ରାଜା ଜୟଦେବ ନରେନ୍ଦ୍ର ମହାପାତ୍ର ଇହଲୀଳା ସମ୍ବରଣ କରିଥିଲେ । ଡାଳିଯୋଡା ଗଡଭୂଇଁର ଦ୍ୱାର ଦେଶରେ ଅବସ୍ଥିତ ସପନପୁର କଳା ଓ ସଂସ୍କୃତିର ପ୍ରାଣକେନ୍ଦ୍ର ସ୍ୱରୂପ ଥିଲା । ଏଠାରେ ମାସାଧିକ କାଳ ରାମଲୀଳା ଅଭିନୀତ ହେଉଥିଲା । ଏହି ରାମଲୀଳା ସାଂସ୍କୃତିକ କେନ୍ଦ୍ରର ପ୍ରଧାନ ପୃଷ୍ଠପୋଷକ ଆନନ୍ଦ ଜେନା ଏବଂ ରାଜକିଶୋର ସାହୁ ପ୍ରମୁଖ ଥିଲେ । ତେଣୁ ଯୁବକ ଅବସ୍ଥାରେ ନିମାଇଁ ଚରଣ ଏଥିପ୍ରତି ଆକୃଷ୍ଟ ହୋଇଥିବା ବିଚିତ୍ର ନୁହେଁ । ତେଣୁ ସେ ଏକାଧିକବାର ସପନପୁରରେ ଅବସ୍ଥାନ କରିଥିଲେ । ତାଙ୍କ ସଂସ୍ପର୍ଶରେ ଆସିଥିବା ବନ୍ଧୁମାନଙ୍କ ମଧ୍ୟରେ ପଦ୍ମଚରଣ ପ୍ରଧାନ ଅନ୍ୟତମ । ତାଙ୍କ ଭାଗ୍ୟରେ ଏହି ମହାପୁରୁଷଙ୍କ ସାନ୍ନିଧ ଲାଭ କରିବା ପ୍ରକୃତରେ ଏକ ଗୌରବର ବିଷୟ । ଏଥିପାଇଁ ଭାଗବତରେ ଲେଖାଅଛି—

"ପ୍ରାଣୀର ଭଲମନ୍ଦ ବାଣୀ
ମରଣ କାଳେ ତାହା ଜାଣି ।"

ନିମାଇଁ ଚରଣ ବାହୁଡ଼ା ଦଶମୀ ଦିନ ଶେଷ ନିଃଶ୍ୱାସ ତ୍ୟାଗକଲେ ମଧ୍ୟ ତାଙ୍କର ଏ ଘଟଣାବଳୀ ଜୀବନର ଆଲୋକପାତ କରିବା ଦୁଷ୍କର ବୋଲି ପ୍ରତୀୟମାନ ହେଉଥିଲା । କିନ୍ତୁ ତାଙ୍କର ଏକ ସ୍ମରଣିକା ପ୍ରକାଶ ନିମନ୍ତେ ପ୍ରକାଶିତ ସମ୍ବାଦରେ ମନ ବ୍ୟାକୁଳ ହେଉଥିଲା ବେଳେ ସପନପୁର ଉ· ପ୍ରା· ସ୍କୁଲର ଚେୟାରମ୍ୟାନଙ୍କ ଠାରୁ ଜାଣିବାକୁ ପାଇଲି ସେ ସପନପୁର ବରାବର ଆସୁଥିଲେ । ତାଙ୍କ ସହ ଏକତ୍ର ପଂକ୍ତି ଭୋଜନରେ ବସିବା କମ୍ ସୌଭାଗ୍ୟର ବିଷୟ ନୁହେଁ । ସେ ଯେ ଡାଳିଯୋଡ଼ା ସହିତ ଆଗରୁ ପରିଚିତ ଥିଲେ ଏ କଥା ମନରେ ସ୍ୱତଃ ଆନନ୍ଦ ଜାତ କରୁଅଛି ।

ନିମାଇଁ ଚରଣ ଜଣେ ଜଗନ୍ନାଥଙ୍କର ପରମଭକ୍ତ ଥିଲେ । ସେ ଯେ ଖାଲି ଜଗନ୍ନାଥ ଜଣାଣ ଗାଉଥିଲେ ତା' ନୁହେଁ, ସେ ବହୁ ଛାନ୍ଦ ଗାନ କରୁଥିଲେ । ଏପରିକି ଯେ ସାମାନ୍ୟ ଚିଠିଟିଏ ଲେଖୁଥିଲା ବେଳେ ଶ୍ରୀ ଜଗନ୍ନାଥ ନିବାସ, ଶ୍ରୀ ଶ୍ରୀ ଜଗନ୍ନାଥ ମହାପ୍ରଭୁ ବୋଲି ସମ୍ବୋଧନ କରି ଚିଠି ସମାପ୍ତ କରୁଥିଲେ ।

ଏହି ମହାନ କଣ୍ଠଶିଳ୍ପୀଙ୍କର ବାହୁଡ଼ା ଦଶମୀ ଦିନ ଛାନ୍ଦ ଓ ଜଣାଣ ଆଦି ସଙ୍ଗୀତ ଚିରଦିନ ପାଇଁ ପୂର୍ଣ୍ଣଚ୍ଛେଦ ପଡ଼ିଗଲା । ସେହି ସମୟ ରଥଯାତ୍ରା ଓ ବାହୁଡ଼ା ଯାତ୍ରାର ପ୍ରକୃଷ୍ଟ ସମୟ ହୋଇଥିବାରୁ ପୃଷ୍ଠରେ ତାଙ୍କର ଉପସ୍ଥିତି ଅଭାବ ସମସ୍ତେ ଅନୁଭବ କରିଥିଲେ ।

ଏହି ସଙ୍ଗୀତ ଶିଳ୍ପୀଙ୍କ ଜନ୍ମକାଳ ୧୯୦୧ ମସିହା ଜୁଲାଇ ମା ୯ ତାରିଖରେ । ତାଙ୍କ ବଂଶର ଉତ୍କଳର ପ୍ରଖ୍ୟାତ ଦାନଶୀଳ ଜମିଦାର ଓ ପୁଣ୍ୟବନ୍ତ ବ୍ୟକ୍ତି ରାଧାଶ୍ୟାମ ନରେନ୍ଦ୍ର । ସେ ଡାଳିଯୋଡାର ରାଜା ଲୋକନାଥ ନରେନ୍ଦ୍ର ମହାପାତ୍ରଙ୍କ ପିଉସା ହେତୁ ନାବାଳକ କୁମାର ସାବାଳକ ହେବା ପର୍ଯ୍ୟନ୍ତ ୧୬ ବର୍ଷ କାଳ ଡାଳିଯୋଡ଼ା ରାଜଗାଦିରେ ବସି ନିଜକୁ ନରେନ୍ଦ୍ର ଉପାଧିରେ ମଣ୍ଡିତ କରିଥିଲେ । କାରଣ ଡାଳିଯୋଡା ରାଜାମାନଙ୍କର ଉପାଧି ନରେନ୍ଦ୍ର ଥିଲା । ତେଣୁ ଲୋକେ ରାଧାଶ୍ୟାମ ଜେନାଙ୍କୁ ନରେନ୍ଦ୍ର ନରେନ୍ଦ୍ର ଡାକୁ ଡାକୁ ସେ ନରେନ୍ଦ୍ର ନାମରେ ପରିଚିତ ହେଲେ । ସେ କେନ୍ଦ୍ରାପଡ଼ାର ବିଖ୍ୟାତ ଜମିଦାର ବଂଶରେ ଜନ୍ମିଥିଲେ । ହରିଚନ୍ଦନଙ୍କ ସହ ପତ୍ରାଳାପ କଲା ପରେ ସେ ଯେଉଁ ଉତ୍ତର ଲେଖିଥିଲେ ତାହା ଏଠାରେ ପ୍ରଦତ୍ତ ହେଲା ।

ତା ୪ । ୬ । ୮୯

ଶ୍ରୀ ଶ୍ରୀ ରାଧାଗୋବିନ୍ଦ ଶରଣ

ଶ୍ରୀ ଜଗନ୍ନାଥ ମନ୍ଦିର
ମାଟିମଣ୍ଡପ ସାହି, ପୁରୀ

ପ୍ରିୟ ମହାଶୟ,

ଶ୍ରୀ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ମନ୍ଦିର ଠିକଣାରେ ଯେଉଁ ପତ୍ର ପଠାଇଥିଲେ ତାହା ଯଥା ସମୟରେ ପାଇ ପଢ଼ିଲି । ଡାଳିଯୋଡ଼ା ନରେନ୍ଦ୍ରଙ୍କ ବିଷୟରେ କିଛି ଜଣା ନାହିଁ ।

ଶ୍ରୀ ଶ୍ରୀ ରାଧାଶ୍ୟାମ ନରେନ୍ଦ୍ରଙ୍କ ଜୀବନୀ ଓ ମୋ ଜୀବନୀ ରେକର୍ଡ଼ ସଙ୍ଗୀତ ବହି ଆଣି ପଢ଼ିଲେ ସବୁ ଜାଣି ପାରିବେ । ସେ ବହି କଟକ ଥଲସା ବଜାର ଧର୍ମଗ୍ରନ୍ଥ ଷ୍ଟୋର ବିଦ୍ୟାଧର ସାହୁଙ୍କ ଛାପାଖାନାରେ ପାଇବେ । ଆଉ ମୋ ଠାରୁ କିଛି ଖବର ପ ଇ ପାରିବେ ନାହିଁ । ରେକର୍ଡ଼ ବହିରୁ ସବୁ ଜାଣିବେ । ମୋର ପ୍ରଣାମ ଗ୍ରହଣ କରନ୍ତୁ । ଚକାଡୋଳାଙ୍କ ଦୟାରୁ କୁଶଳରେ ଥିବେ ।

ଆପଣଙ୍କର

ଶ୍ରୀ ନିମାଇଁ ଚରଣ ହରିଚନ୍ଦନ

ନିମାଇଁ ଚରଣ ହରିଚନ୍ଦନଙ୍କ ସହ ଅନ୍ତବର୍ତ୍ତୀ ଜଗନ୍ନାଥ ଦାସଙ୍କ ପ୍ରଧାନ ଶିଷ୍ୟ ଡାଳିଯୋଡ଼ା ତେଲିଆ ପଡ଼ା ମଠର ମଠାଧୀଶ ଶ୍ରୀ ବିଜୟ ଚନ୍ଦ୍ର ଦାସ ବେଶି ପରିଚିତ ଥିଲେ । ହରିଚନ୍ଦନଙ୍କ ସହ ଗୁରୁଙ୍କ ସାହଚର୍ଯ୍ୟ ଲାଭ କରିବା ଏ ଜୀବନରେ ମୋର ଅପୂର୍ଣ୍ଣ ରହିଗଲା ।



ଡାଳିଯୋଡା, ଗରୁଡ଼ଗାଁ
କଟକ

# ସେ ଚାହିଁଥିଲେ ଯାହା ପାଇଲେ ତାହା

ଆଡଭୋକେଟ୍ ରାଜେନ୍ଦ୍ର କିଶୋର ହରିଚନ୍ଦନ

"ଉଦ୍ଧବେ ଶୁଣି ହୃଷିକେଶ
କହନ୍ତି ନାନା ଉପଦେଶ
ଅନେକ ଜନ୍ମ ତପ ଫଳେ
ମନୁଷ୍ୟ ଜନ୍ମ ମହୀ ତଳେ
ଯାହାର ଦିବ୍ୟ ଜ୍ଞାନ ସ୍ଫୁରେ
ମୋର ମହିମା ସେ ସୁମରେ ।"

ଶ୍ରୀମଦ୍ ଭାଗବତରେ ଏକାଦଶ ସ୍କନ୍ଧର ସପ୍ତବିଂଶ ଅଧ୍ୟାୟରେ ଲେଖାଥିବା ଭଗବାନ ଶ୍ରୀକୃଷ୍ଣଙ୍କର ଶ୍ରୀମୁଖ ନିସୃତ ଏହି ବାଣୀ ଯେ କିପରି ସତ୍ୟ ତା' ନୁହେଁ, ଏହାର ପ୍ରତ୍ୟେକ ପଂକ୍ତିର ଯଥାର୍ଥତା ପ୍ରତିଫଳିତ ହୋଇଥିଲା ମୋର ସ୍ୱର୍ଗୀୟ ପିତା ନିମାଇଁ ଚରଣ ହରିଚନ୍ଦନଙ୍କ ନିତ୍ୟ ନୈମିତ୍ୟିକ ଜୀବନରେ । ମଣିଷ ଏହି ଧରାଧାମକୁ ବହୁ ଜନ୍ମ ତପ ଫଳରେ ଆସେ ଓ ଯାଏ, କିନ୍ତୁ ଯେଉଁ କେତେଜଣ ମଣିଷଙ୍କୁ ଏହି ମଣିଷ ସମାଜ ଚିରଦିନ ପାଇଁ ମନେ ରଖେ, ସେହି ଭିତରୁ ମୋର ପିତା ଥିଲେ ଅନ୍ୟତମ । ସେହି ପରମାତ୍ମା ପରମେଶ୍ୱରଙ୍କ ନିର୍ଦ୍ଦେଶରେ ବହୁ ତପ ଫଳରେ ଏହି ଧରା ଧାମରେ ମନୁଷ୍ୟ ଜନ୍ମ ନେଇଥିଲେ ଓ ଶେଷ ଜୀବନରେ ଶ୍ରୀକ୍ଷେତ୍ରରେ ବାସ କରି ଜଗତର ନାଥ ଶ୍ରୀ ଜଗନ୍ନାଥଙ୍କର ସେବା ପୂଜା କରି, ନିଷ୍ଠା ଓ ତପସ୍ୟା ବଳରେ, ସମସ୍ତ ପଦ ପଦବୀକୁ ପଛରେ ପକାଇ, ଶିରଧା ବାଲିରୁ ହାତେ ନେଇ, ସେଇ କାଳିଆର ମହିମା ଗାଇ ଗାଇ "ତୁମ ନାମ ଭଜି ଭଜି ଏ ଜୀବ ଯାଉ," "ବାହୁଡ଼ାରେ ମୋତେ ବାହୁଡ଼ାଇ ନିଅ" କହି ପୋଛି ତାଙ୍କର ଆତ୍ମା ପରମାତ୍ମାରେ ଲୀନ ହୋଇଗଲା ।

ପରମ ଭକ୍ତ ହୋଇ ନ ଥିଲେ ତାଙ୍କ ଭାଗ୍ୟରେ ଏହା ଘଟି ନ ଥାନ୍ତା । ଯେ ଏହି ଧରାରେ ମନୁଷ୍ୟ ରୂପେ ଜନ୍ମଲାଭ କରି ଯେଉଁ ସେବା, ନିଷ୍ଠା ଓ ତପସ୍ୟା ବଳରେ ଜଗନ୍ନାଥଙ୍କର ଗୁଣ ଗାନ କରି ଚାଲିଗଲେ । ଭଗବାନ ଶ୍ରୀକୃଷ୍ଣଙ୍କର ଉକ୍ତ ବାଣୀ ଅନୁସାରେ ସେ ପୁନର୍ବାର ଏହି ଧରା ଧାମରେ ମନୁଷ୍ୟ ରୂପେ ଜନ୍ମଗ୍ରହଣ କରି ସାରିବେଣି, ପୁଣି ଶ୍ରୀ ଜଗନ୍ନାଥଙ୍କର ଗୁଣ କୀର୍ତ୍ତନ କଣ୍ଠରୁ ଝରାଇ ଗରୁଡ ସ୍ତମ୍ଭ ପାଖରେ ଚାମର ସେବା କରିବାକୁ ।

ଜଗନ୍ନାଥ ଥିଲେ ତାଙ୍କର ପ୍ରାଣ । ଜଗନ୍ନାଥଙ୍କୁ ବିନା ଅର୍ପଣରେ ସେ କୌଣସି ପଦାର୍ଥ ଗ୍ରହଣ କରୁ ନ ଥିଲେ । ସେ ୧୯୭୦ ମସିହାରୁ ଶ୍ରୀକ୍ଷେତ୍ରରେ ବାସ କରୁଥିଲେ । ପ୍ରତିଦିନ ଶ୍ରୀ ଜଗନ୍ନାଥଙ୍କୁ ଦର୍ଶନ ନ କଲେ, ସେ ଅନ୍ନ ବା ଜଳ ସ୍ପର୍ଶ କରୁ ନ ଥିଲେ । ଯେ କୌଣସି ବ୍ୟକ୍ତି ତାଙ୍କୁ ଦେଖା କରିବାକୁ ଆସିଲେ, ତାଙ୍କର ପ୍ରଥମ ପ୍ରଶ୍ନ ହୁଏ— "ଆପଣ ଜଗନ୍ନାଥଙ୍କୁ ଦର୍ଶନ କଲେଣି ।" ସେ ମହାଶୟ ଯଦି କୁହନ୍ତି, "ହଁ ଦର୍ଶନ କରି ଆସିଛି"—ତେବେ ଏହା ଶୁଣି ସେ ବହୁତ ଖୁସି ହୁଅନ୍ତି । ଯଦି ସେ ମହାଶୟ କୁହନ୍ତି "ନାଁ ଦର୍ଶନ କରି ଆସିନାହିଁ ।" ତାହା ଶୁଣି ସେ କୁହନ୍ତି . "ଶୀଘ୍ର ଯାଆନ୍ତୁ ଜଗନ୍ନାଥଙ୍କୁ ଦର୍ଶନ କରି ଆସିବେ, ଏତେ ବାଟରୁ ଆସିଛନ୍ତି, କାଳେ କିଛି ହୋଇଯିବ, ଯଦି ଦର୍ଶନ କରି ନ ପାରନ୍ତି ।" ଯାଆନ୍ତୁ ଦର୍ଶନ କରି ଆସିବେ, ତା' ପରେ କଥା ହେବା । ଆମେ ପିଲାମାନେ ଯେତେବେଳେ ତାଙ୍କ ପାଖକୁ ଯାଉଁ, ଆମକୁ ମଧ୍ୟ ସେହିପରି କହି ଶ୍ରୀ ଜଗନ୍ନାଥଙ୍କ ଦର୍ଶନ କରିବାକୁ ଉପଦେଶ ଦିଅନ୍ତି ।

କି ବର୍ଷା, କି ଶୀତ, କି ଖରା, ସବୁଦିନ ଭୋର ଘ ୪ ଟା ହେଲେ ନିତ୍ୟକର୍ମ ସାରି ବଡ଼ ଦେଉଳର ସିଂହଦ୍ୱାର ପାଖରେ ହାଜର । ସେଠାରେ ଦୁଇଟି ଭଜନ ଗାଇ, ଦେଉଳ ଭିତରେ ପ୍ରବେଶ କରି ମଙ୍ଗଳ ଆଳତି ଦର୍ଶନ, ତା'ପରେ ବେଢ଼ା ପରିକ୍ରମା, ଗରୁଡ ସ୍ତମ୍ଭ ପାଖରେ ଚାମର ସେବା କରି ସେଠାରେ ଚାରୋଟି ଭଜନ ଗାଇ, ଅବକାଶ ଜଳ ଦେଇ ଘରକୁ ଫେରୁ ଫେରୁ ଘ ୧୦ ଟା ବାଜିଯାଏ ।

ତା'ପରେ ପୂଜାରାମ ଦାସ ସାମାନ୍ୟ ଜଳଖିଆ ଖାଆନ୍ତି । ଜଳଖିଆ ଖାଇ ଦାସ ମା'ଙ୍କୁ ପଚାରନ୍ତି—"ଆଜି ଦର୍ଶନକୁ ଯାଇଥିଲ ।" ମା' ଯଦି କହନ୍ତି ଯାଇଥିଲି ବୋଲି, ସେ ଭାରି ଖୁସି ହୁଅନ୍ତି । ଯଦି କହନ୍ତି 'ନା ଆଜି ଯାଇପାରି ନାହିଁ'—ଏହାଶୁଣି କହନ୍ତି-ତେବେ ତୁମେ ଏଠାକୁ କାହିଁକି ଆସିଛ, ଜଗନ୍ନାଥଙ୍କୁ ଦର୍ଶନ କରିବ ନାହିଁତ ଆଉ କ'ଣ କରିବ ? ମା' ହସି ଦେଇ କହନ୍ତି "ଗୋସେଇଁ ଆସିବା ହୋଇଛି ଜଗନ୍ନାଥଙ୍କୁ ସେବା କରିବାକୁ ; କିନ୍ତୁ ମୁଁ ଆସିଛି ଗୋସେଇଁଙ୍କ ସେବା କରିବାକୁ ।" ଏହା ଶୁଣି ସେ ସାମାନ୍ୟ ହସି ଦେଇ ତୁନି ହୁଅନ୍ତି । ପ୍ରକୃତରେ ଜଗନ୍ନାଥଙ୍କ ସେବା ତ ବହୁତ ଲୋକ କରୁଛନ୍ତି, ତାଙ୍କ ଭକ୍ତର ସେବା କରିବା ବହୁ କମ୍ ଲୋକଙ୍କ ଭାଗ୍ୟରେ ମିଳେ ।

ଘୋର ଘଣ୍ଟା—ସେତେବେଳକୁ ସିଂହଦ୍ୱାର ଖୋଲି ନ ଥାଏ । ଲୋକେ ପଚାରନ୍ତି, ସିଂହ ଦ୍ୱାର ତ ଖୋଲି ନାହିଁ, ଏତେ ସକାଳୁ କାହିଁକି ଆସୁଛନ୍ତି ? ସେ କହନ୍ତି—"ଚାକରିଆମାନେ ଯେପରି ଅଫିସରେ ଠିକ୍ ସମୟରେ ପହଞ୍ଚି ହାଜରି ଖାତାରେ ଦସ୍ତଖତ୍ ନ କଲେ ନାଲି ଛକ ପଡ଼ିଯାଏ, ସେହିପରି ମୁଁ ଯଦି ଠିକ୍ ସମୟରେ ନ ଆସି ଭଜନ ନ ଗାଇ ମଙ୍ଗଳ ଆଳତି ଦର୍ଶନ ନ କରି ଚାମର ସେବା ନ କରେ, ତେବେ କାଳିଆ ମୋ ହାଜରି ଖାତାରେ ନାଲି ଛକ ପକାଇ ଦେବ ।"

ଏଥିରୁ ଜାଣିବେ ସେ ଜଗନ୍ନାଥଙ୍କୁ କିପରି ଉପରସ୍ଥ କର୍ମଚାରୀ ରୂପେ ମଣି ସେ ଯେପରି ତାଙ୍କ କର୍ତ୍ତବ୍ୟରେ ଅସନ୍ତୋଷ ନ ହୁଅନ୍ତି, ସେପରି ନିତ୍ୟାର ଦେହିତ ମନ୍ଦିରକୁ ଆସି ଭଜନ ଗାଇ, ମଙ୍ଗଳ ଆଳତି ଦର୍ଶନ ଓ ଚାମର ସେବାରେ ଆଦୌ ଅବହେଳା ପ୍ରଦର୍ଶନ କରୁ ନ ଥିଲେ । ଯେଉଁଦିନ କୌଣସି ଅସୁବିଧା ବଶତଃ ମଙ୍ଗଳ ଆଳତି ଦର୍ଶନ ହୋଇ ନ ପାରେ, ସେ ଦିନଟିରେ ତାଙ୍କ ମନରେ ସୁଖ ରହେ ନାହିଁ । ଯାହାକୁ ଦେଖିଲେ କହନ୍ତି "ଆଜି ମଙ୍ଗଳ ଆଳତି ଦର୍ଶନ ଠାକୁର ଦେଲେ ନାହିଁ ।" ଥରେ ଭିତରଛୁ ମହାପାତ୍ରଙ୍କୁ କହିଲେ—"ଆଉ ପାରୁନାହିଁ, ମଙ୍ଗଳ ଆଳତି ଦର୍ଶନକୁ ଠିକ୍ ସମୟରେ ଆସିପାରୁ ନାହିଁ—ଯଦି ମଙ୍ଗଳ ଆଳତି ଦର୍ଶନ ନ ଦେଉଛନ୍ତି, ସେ କାଳିଆକୁ କୁହ ଆଉ କାହିଁକି ମୋତେ ରଖିଛନ୍ତି । ଶୀଘ୍ର ନେଇ ଯାଉ ନାହାନ୍ତି କାହିଁକି ?"

ଏହା ଶୁଣି ଭିତରଛୁ ମହାପାତ୍ରେ କହିଲେ - କାହିଁକି ଏତେ ବ୍ୟସ୍ତ ହେଉଛନ୍ତି, ଯଦି ଦର୍ଶନକୁ ଆସି ପାରୁ ନାହାନ୍ତି ତେବେ ଘରେ ଥାଇ ନୀଳଚକ୍ରକୁ ଦର୍ଶନ କଲେ ଚଳିବ ।" ସେ କଥାରେ ତାଙ୍କ ମନ ବୁଝିଲା ନାହିଁ । ତାଙ୍କର ଦେହର ଅସୁସ୍ଥତା ସତ୍ତ୍ୱେ ସେ ଦକ୍ଷିଣ ଦ୍ୱାର ବାଟ ଦେଇ ଆସି କାଳିଆକୁ ଦର୍ଶନ କରି ଯାଆନ୍ତି । ତାଙ୍କର ମହାପ୍ରୟାଣର କିଛି ଦିନ ଆଗରୁ ମୋ ନିକଟକୁ ଚିଠିରେ ଲେଖିଥିଲେ—"ମୋ ଡାକ ଆଉ ଜଗନ୍ନାଥ ଶୁଣୁ ନାହାନ୍ତି ।" ଏହି ଉକ୍ତିର ପ୍ରକୃତ ମର୍ମ୍ମ ମୁଁ ଯଦିଓ ସେତେବେଳେ ଠିକ୍ ଭାବେ ହୃଦୟଙ୍ଗମ କରି ପାରି ନ ଥିଲି, ଯେତେବେଳେ ୧୯୮୩ ମସିହା ଜୁଲାଇ ତା ୨୦ ରିଖ ଭୋର ଘ ୪ ଣ୍ଟାରେ ବାହୁଡ଼ା ଯାତ୍ରାଦିନ ଜଗନ୍ନାଥଙ୍କୁ କହିପୋଛି ତାଙ୍କର ଯେ ଘର ବାହୁଡ଼ା ହେଲା, ସେତେବେଳେ ଜାଣିଲି ବୋଧେ ତାଙ୍କର ଏହି ଡାକ ଜଗନ୍ନାଥ ଶୁଣୁ ନ ଥିବାରୁ, ସେ ଅଭିମାନ କରି ମୋ ପାଖକୁ ଏପରି ଚିଠି ଲେଖିଥିଲେ ।

ସେ ପ୍ରତିଦିନ ଶ୍ରୀମଦ୍ ଭାଗବତର ଏକାଦଶ ସ୍କନ୍ଧ ବହିରୁ ଗୋଟିଏ ଅଧ୍ୟାୟ ପୂଜା କଲା ବେଳେ ପଢ଼ୁଥିଲେ ଏବଂ ସବୁ ବନ୍ଧୁ-ବାନ୍ଧବ, ପ୍ରିୟ ବ୍ୟକ୍ତି ଓ ଆପଣା ଲୋକମାନଙ୍କୁ ଏହି ଏକାଦଶ ସ୍କନ୍ଧ ପଢ଼ିବାକୁ ଉପଦେଶ ମଧ୍ୟ ଦେଉଥିଲେ । ସେ ବହିଟିର ପଢ଼ା ଥରେ ସରି ଗଲେ ପୁନର୍ବାର ପଢ଼ୁଥିଲେ । ସେ କହନ୍ତି—"ଏକାଦଶ ସ୍କନ୍ଧର ଶେଷ ଅଧ୍ୟାୟଟି ଯେଉଁଦିନ ପଢ଼ାସରେ ସେଦିନ ନିଶ୍ଚୟ ତାଙ୍କର ଗୋଟିଏ ଭଲ କାର୍ଯ୍ୟ ହୁଏ ବା ଶୁଭ ଫଳ ମିଳେ । ତାଙ୍କର ୪୦ବର୍ଷ ଧରି ପଢ଼ୁଥିବା ଏକାଦଶ ସ୍କନ୍ଧ ବହିଟି ପୁରୁଣା ହୋଇ ଯିବାରୁ ମୋତେ ଚିଠି ଲେଖିଲେ—"ମୋ ପାଇଁ ଗୋଟିଏ ନୂଆବହି କିଣିଆଣି ଦେବ, ତା'ହେଲେ ଏହି ପୁରୁଣା ବହିଟିକୁ ନାତି ପ୍ରଶାନ୍ତ କଟୋରଙ୍କୁ ( ମୋର ଜ୍ୟେଷ୍ଠ ପୁତ୍ର ) ଦାନ କରିବ । ମୁଁ ଗତ ତା ୨୭ । ୨ । ୧୯୮୩ ମାଘ ପୂର୍ଣ୍ଣିମା ଦିନ ନୂଆ ବହି କିଣି ତାଙ୍କୁ ନେଇ ପୁରୀରେ ଦେଲାବେଳେ ସେ ଅତ୍ୟନ୍ତ ଖୁସି ହୋଇ ଗଲେ ଓ ସେ ବହିଟି ଗ୍ରହଣ କରି ସେହି ବହି ଉପରେ ଲେଖିଲେ—କଟକର ଏକାଦଶ ସ୍କନ୍ଧ ବହିଟି ବହୁ ଦିନରୁ ଛିଣ୍ଡି ଯାଇଥିଲେ । ଶ୍ରୀମାନ୍ ରାଜେନ୍ଦ୍ରଙ୍କୁ ଲେଖିବାରୁ ସେ କଟକରୁ ନୂଆ ବହି କିଣି ତାଙ୍କୁ ବନ୍ଧାଇ ଆଜ ସକାଳ ମାଘ ପୂର୍ଣ୍ଣିମୀ ଦିନ ଆଣି ଦେବାରୁ ଆଜ ଦିନ ଏଗାରଟାରେ

ପଢ଼ିବା ଆରମ୍ଭ କରାଗଲା । ପୁରୁଣା ଭାଗବତଟି ଶ୍ରୀମାନ ପ୍ରଣୟ କିଶୋର (ବାବଲା) ନେଇ ପ୍ରତିଦିନ ଭାଗବତ ପଢ଼ିବେ ।

ଶ୍ରୀ ନିମାଇଁ ଚରଣ ହରିଚନ୍ଦନ
ତା ୨୭ । ୨ । ୮୩

ସେଇଠି ବହିଟି ପ୍ରଣୟ କିଶୋରଙ୍କୁ ଦେଲେ ତା'ଉପରେ ଲେଖିଲେ –

"ଶ୍ରୀ ଶ୍ରୀ ରାଧାଗୋବିନ୍ଦ ଦେବ ଶରଣ
ଜୟ ଶ୍ରୀ ଗୁରୁଦେବ ।"

କଲ୍ୟାଣୀୟ ଶ୍ରୀ ପ୍ରଣୟ କିଶୋର ହରିଚନ୍ଦନ
ପ୍ରିୟ ବାବଲା,

ଆଠଗଡ଼ରେ ତମକୁ କହିଥିଲି ଏକାଦଶ ସ୍କନ୍ଧ ଭାଗବତ ପଢ଼ିବ । ତମର ବି. ଏ. ପାଶ୍ ହୋଇଯିବ । ମୋର ବହିଟି ସରିଲେ ତମେ ନେବ, ତାହା ତ ଶ୍ରୀ ଜଗନ୍ନାଥ କରାଇ ଦେଇ ନାହାନ୍ତି । ଏବେ ହିଁ ଭାଗବତ ପଠାଇଲି । ଏକ ଅଧ୍ୟାୟ କରି ପ୍ରତିଦିନ ପଢ଼ିବ । ଶେଷଦିନ ସ୍ନାନକରି ଜଗନ୍ନାଥଙ୍କ ଦର୍ଶନକୁ ଆସିବ । ଭାଗବତ ଏକ ଅଧ୍ୟାୟ ପ୍ରତିଦିନ ପଢ଼ିବ । ଗାଧୋଇ ସାରି ପଢ଼ିବ । ।। ଇତି ।।

ଶୁଭାକାଂକ୍ଷୀ
ଜେଜେ ବାବା
ଶ୍ରୀ ନିମାଇଁ ଚରଣ ହରିଚନ୍ଦନ
ତା ୬ । ୨ । ୮୩

ସେହିଦିନ ଠାରୁ ମୋର ଜ୍ୟେଷ୍ଠ ପୁତ୍ର ଶ୍ରୀମାନ୍ ପ୍ରଣୟ କିଶୋର ଗାଧୋଇ ସାରି ପ୍ରତିଦିନ ସେହି ଭାଗବତ ବହିଟି ଏକ ଅଧ୍ୟାୟ କରି ପଢ଼ିବାକୁ ଆରମ୍ଭ କଲେ । ସେ ବହିଟି ଶ୍ରୀ ଗୁଣ୍ଡିଚା ଦିନ ଶେଷ ହେଲା, କିନ୍ତୁ ଅନିବାର୍ଯ୍ୟ କାରଣ ବଶତଃ ସେଦିନ ସେ ପୁରୀ ଯାଇ ଶ୍ରୀ ଜଗନ୍ନାଥଙ୍କ ଦର୍ଶନ କରି ନ ପାରିବାରୁ, ବାହୁଡ଼ା ପୂର୍ବ ଦିନ ଅର୍ଥାତ୍ ତା ୧୯ । ୭ । ୮୩ ରିଖ ମଙ୍ଗଳବାର ସଂଧ୍ୟା ଦର୍ଶନ ଦିନ ସଂଧ୍ୟା ଘ ୬-୩୦ରେ ସେ ପୁରୀ ଯାଇ ତା'ର ଜେଜେବାବାଙ୍କ ପାଖରେ ପହଞ୍ଚିଲା । ତା' ସଙ୍ଗେ ମୁଁ, ମୋର ସ୍ତ୍ରୀ ଓ ମୋର ସାନ ପୁଅ ମଧ୍ୟ ଯାଇଥିଲୁ । ପ୍ରଣୟକୁ ଦେଖି ଭକ୍ତ ଖୁସିହୋଇଲେ ଓ ପଚାରିଲେ ଭାଗବତ ଅଧେ ଶେଷ ହୋଇଗଲା । ସେ ହଁ କଲାରୁ ଅତ୍ୟନ୍ତ ଆନନ୍ଦିତ ହେଲେ । ମୋତେ ପଚାରିଲେ, ଏତେ ଡେରିରେ କାହିଁକି ଆସିଲ ? ଶୀଘ୍ର ଆସିଲ ନାହିଁ । ମୁଁ କହିଲି, କଟେଜ୍ଜ କାମ ସାରି ତ ଆସିଲି । ତା'ପରେ କହିଲେ, ଶୀଘ୍ର ଯାଇ 'ଅଡ଼ପମଣ୍ଡପେ ଜଗନ୍ନାଥଙ୍କ ସନ୍ଧ୍ୟା ଦର୍ଶନ କରି ଆସ । ସୁଆରମାନେ ପଶିଯିବେ, ଗୃହ ବନ୍ଧା ହେବ ଓ କବାଟ ବନ୍ଦ ହୋଇଗଲେ ଆଉ ଦର୍ଶନ ମିଳିବ ନାହିଁ । ଏହା ଶୁଣି ମୁଁ ଓ ମୋର ସ୍ତ୍ରୀ ଦୁହେଁ ଗୁଣ୍ଡିଚା ମନ୍ଦିର ଅଭିମୁଖେ ଚାଲିଲୁ । ଗଲାବେଳେ କହିଥିଲେ, କିଛି ଖଇପଦ ଆଣିବାକୁ ମହାପ୍ରସାଦ ଖାଇବା ପାଇଁ । ସେ ଦିନ ମୋର ମଝିଆ ଭଉଣୀ ଓ ମଝିଆ ଭିଣୋଇ ଅସି ଆମ ପୁରୀ ଘରେ ଆମେ ପହଞ୍ଚିବା ଆଗରୁ ପହଞ୍ଚିଥିଲେ । ଯଦିଓ ତାଙ୍କର ପୁରୀରେ କ୍ଲେର୍ଭେଇ ବେଣ୍ଟ ସାହିରେ ଘର ଅଛି । ସେ ଦିନ ସେମାନେ କହିଲେ, ଆମେ ଏଠାରେ ରହିବୁ ।

ଶ୍ରୀ ଜଗନ୍ନାଥଙ୍କ ଦର୍ଶନ ସାରି ଗୋଟିଏ ଖଇପତ୍ର ବଡ଼ା କିଣି ଘରକୁ ଫେରିଲୁ ବେଳକୁ ରାତି ଘ ୧୦ ଟା । କିଲଖସ ବଡ଼ାଟି ଦେଖି ପଚାରିଲେ, ଏତେ ପତ୍ର କାହିଁକି ଆଣିଲ । ମୁଁ କହିଲି, "ଆଜି ସମସ୍ତେ ସେଥିରେ ଖାଇବେ, କାଲି ପୁଣି ଖାଇବା କାମରେ ଲାଗିବ ଯେ ।" ସେ ଏହାଶୁଣି ସାମାନ୍ୟ ହସିଦେଇ ତୁନି ହେଲେ ।

ସେ ଦିନ ସ୍ୱାଭାବିକ ଭାବେ ରୁଟି, କ୍ଷୀର ଖାଇ ରାତି ଘ ୧୧ ଟାରେ ଶୋଇବାକୁ ଗଲେ । ସଙ୍ଗରେ ମୁଁ, ମୋର ମଝିଆ ଭିଣୋଇ ପ୍ରତାପ ବାବୁ ଓ ନାତିମାନେ ବସି ଖାଇଲୁ । ଶୋଇବାକୁ ଯିବା ଆଗରୁ ମୋର ସ୍ତ୍ରୀ ତାଙ୍କ ଆଣ୍ଠୁରେ ତେଲ ମାଲିସ କରି ଦେଲେ । ମୋତେ ପଚାରିଲେ, "ତମର ପ୍ରୋଗ୍ରାମ କ'ଣ ? ମୁଁ କହିଲି କାଲି ବୁଧବାର ବାହୁଡ଼ା ଦେଖି ଗୁରୁବାର ଦିନ କଟକ ଫେରିଯିବି । ତା' ପରେ ପଚାରିଲେ—ଗୁରୁବାର ଦିନ କ'ଣ କଲେଜରେ କାମ ଅଛି ? ମୁଁ କହିଲି ହଁ କାମ ଅଛି । ଏହାଶୁଣି ଟିକିଏ ହସି ଦେଇ ତୁନି ହେଲେ । ପାଖରେ ଶୋଇଲା ମୋର ବଡ଼ପୁଅ ବାବୁଲି ଓ ସେହି ଘରେ ମୁଁ, ମୋର ମଝିଆ ଭିଣୋଇ, ଭଉଣୀ ଝିଅ ଓ ସାନପୁଅ ଚିକୁ ଶୋଇଲୁ ଥିଲେ । ରାତି ପ୍ରାୟ ଘ ୨-୨୫ ମିନିଟରେ ମୋର ପୁଅ ବାବୁଲି ମୋତେ କହିଲା ଜେଜେବାପା ଡାକୁଛନ୍ତି । ମୁଁ ଯାଇ ଦେଖେ ତ ତାଙ୍କର ଦୀର୍ଘ ନିଶ୍ୱାସ ଯାଉଛି ଓ କିଛି କହି ପାରୁନାହାନ୍ତି । ମୁଁ ଦୁଇ ହାତରେ ଧରିବାରୁ, ତିଠ ଟେକି ଉପରେ ବସିଲେ

ଓ ଗ୍ଲାସକୁ ହାତ ଦେଖାଇଲେ, ପାଣି ପିଇବାକୁ ଦେବାରୁ ହାତ ଠାରି ମନା କଲେ । ତା' ପରେ ମୁଣ୍ଡକୁ ହାତ ଦେଖାଇଲେ । ମୁଣ୍ଡରେ ଅଳ୍ପ କିଛି ପାଣି ମାରିବା ପରେ, ଶ୍ରୀ ଜଗନ୍ନାଥଙ୍କ ଫଟୋକୁ ଅନାଇ ଆଖି ଦୁଇଟି ବୁଜିଦେଲେ ଓ ମୁଣ୍ଡକୁ ଆଗକୁ ନୁଆଁଇ ଦେଲେ । ଶୋଇବାକୁ ମନେ କରୁଥିବା ଖ୍ଟ, ତାଙ୍କୁ ଖଟ ଉପରେ ଶୁଆଇ ଦେଲି । ସେହି ହେଲା ତାଙ୍କର ଶେଷ ନିଦ୍ରା । ଆଉ ଉଠି ନାହାନ୍ତି । ମୋର ପୁତୁରା ଗୌରିକିଶୋର (ଗମ୍ଭେଇ)କୁ ପଠାଇ ଡାକ୍ତର ଗୀରକିଶୋର ମହାନ୍ତିଙ୍କୁ ଡକାଇ ଦେଖାଇଲି । ସେ ଆସି ଦେଖିଲା ବେଳକୁ ୨୧୦ ଡିଗ୍ରୀ ବ୍ଲଡ଼ ପ୍ରେସର୍ ଓ ଡାହାଣ ପଟ ପୁରା ପାରାଲିସିସ୍ ହୋଇ ଯାଇଛି । ତାଙ୍କ ପରାମର୍ଶ କ୍ରମେ ଆମ୍ବୁଲାନ୍ସ ମଗାଇ ଡାକ୍ତରଖାନାକୁ ସ୍ଥାନାନ୍ତରିତ କରାଇଲି ଓ ସଙ୍ଗରେ ମଧ୍ୟ ଗଲି । ଡାକ୍ତରଖାନାରେ ପହଞ୍ଚିଲା ବେଳକୁ ଭୋର ଘ ୪ଟା ପ୍ରାୟ । ସେଠାରେ ଡାକ୍ତରମାନେ ପରୀକ୍ଷା କରି କହିଲେ, ଆଉ ନମାଈ ବାବୁ ଏ ଜଗତରେ ନାହାନ୍ତି । ଏହା ଶୁଣି ମୁଁ ନିଜକୁ ବିଶ୍ୱାସ କରି ପାରିଲି ନାହିଁ । ଯାହାଙ୍କୁ ଆଣିଥିଲି ଚିକିତ୍ସା କରାଇ ଘରକୁ ଫେରାଇ ନେବି ସେ ଆଉ ନାହାନ୍ତି । ତେବେ ଚିକିତ୍ସା କାହାକୁ କରାଇବି ? ଘରେ ଯାଇ ମା'ଙ୍କୁ କ'ଣ କହିବି ? ହେ ଜଗନ୍ନାଥ ! ଏ ଦୁଃଖ କ'ଣ ମୋତେ ପ୍ରଥମେ ସହିବାକୁ ଥିଲା । ଏହା କହି, ଶ୍ରୀ ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ଗୋଟିଏ ପ୍ରଣାମ କରି କହିଲି—ହେ ଜଗନ୍ନାଥ ! ତୁମ ପରମ ଭକ୍ତ ନମାଈଙ୍କର ମୁଁ କୌଣସି ସେବା କରିପାରିଲି ନାହିଁ । ମୁଁ ତାଙ୍କୁ ଆଣିଥିଲି ଚିକିତ୍ସିତ କରାଇ ଘରକୁ ଫେରାଇ ନେଇ ତୁମ ଚାମର ସେବାରେ ପୁଣି ନିୟୋଜିତ କରାଇ ଥା'ନ୍ତି । ତାହା ତୁମେ କରାଇ ଦେଲ ନାହିଁ । ତୁମେ ତ କାହାର ଗର୍ବ ରଖି ନାହଁ, ମୋର ବା କାହିଁକି ରଖିଥା'ନ୍ତ ?

ସେ କଷ୍ଟ ପାଇ ନାହାନ୍ତି କି କାହାରିକୁ କଷ୍ଟ ଦେଇ ନାହାନ୍ତି । ସେ'ତ ଜଗନ୍ନାଥଙ୍କର ପରମ ସେବକ । କାହିଁକି ଅନ୍ୟ କାହାର ସେବା ଗ୍ରହଣ କରିବେ ? ଜଗତ୍ ପ୍ରାଣ ଶ୍ରୀ ଜଗନ୍ନାଥଙ୍କ କୃପାରୁ ବାହୁଡା ବିଜୟ ଦିନରେ, ବଡ଼ଦାଣ୍ଡରେ ଯାଉ ଯାଉ ଶେଷ ନିଃଶ୍ୱାସ ତ୍ୟାଗ କଲେ ଓ ସେହି ପ୍ରଭୁ ତାଙ୍କ ବଡ଼ ଦେଉଳକୁ ବାହୁଡ଼ିବା ଆଗରୁ ତାଙ୍କ ଭକ୍ତ ନମାଈଙ୍କୁ ବାହୁଡ଼ାରେ ବାହୁଡ଼େଇ ନିତ୍ୟ ଧାମକୁ ନେଇଗଲେ; ସେହିଠାରେ ରଖି ତାଙ୍କର ଚାମର ସେବା ଗ୍ରହଣ କରି ଭଜନ ଶୁଣିବାକୁ । ସେ ଦୃଢ଼ ସଂକଳ୍ପ କରିଥିଲେ ଯେ, ଶ୍ରୀକ୍ଷେତ୍ରରେ ରହିବି ଓ ସେହିଠାରେ ଶେଷ ନିଃଶ୍ୱାସ ତ୍ୟାଗ କରିବି । ସେ ଚାହିଁଥିଲେ ଯାହା, ପାଇଲେ ତାହା । ସେ ପୁଣି ଡାକ୍ତରଖାନାରେ ପହଞ୍ଚିବା ପୂର୍ବରୁ ଶରଧା ବାଲିରୁ ହାତେ ମାଗି ନେଇ ସେହି ଚକାଡୋଳାଙ୍କର ପାଦ-ପଦ୍ମରେ ଆଶ୍ରୟ ନେଇ ସାରିଥିଲେ ।

ଜଗତର ନାଥ ଜଗନ୍ନାଥଙ୍କ ପାଦ ପଦ୍ମରେ ଆଶ୍ରୟ ନେବା ପୂର୍ବରୁ ଗୁଣ୍ଡିଚା ମନ୍ଦିର ଶରଧା ବାଲିରେ ଠିଆ ହୋଇ ସେଇ କାଳିଆ ଉଦ୍ଦେଶ୍ୟରେ ସେଇ ବାଣୀକଣ୍ଠରୁ ଝରି ଆସିଥିଲା ଶେଷ ସଙ୍ଗୀତ—

ଚକା ନୟନ ହେ ପ୍ରଭୁ ଜଗଜୀବନ
ଥରେ ଚାହିଁ ଦେଲେ ମନ ନ ଇଚ୍ଛେ ଆନ ॥ ୦ ॥
ଲୋଡ଼ା ନାହିଁ ଦୁଇ ନେତ୍ର, ଗୋଟିଏ ନେତ୍ର
ସେ ନେତ୍ରକୁ ଚାହିଁ ଥାଉ, ଏ ଦୀନ ଜନ ॥ ୧ ॥
ଲୋଡ଼ା ନାହିଁ ଦୁଇ କାନ, ଗୋଟିଏ କାନ
ସେ କାନରେ ଶୁଣ ବାରେ, ଚକାନୟନ ॥ ୨ ॥
ଲୋଡ଼ା ନାହିଁ ଦୁଇ ଭୁଜ, ଗୋଟିଏ ଭୁଜ
ସେ ଭୁଜରେ ତଳେ ରଖ ଏ ପାପୀ ଜନ ॥ ୩ ॥
ଲୋଡ଼ା ନାହିଁ ଦୁଇ ପାଦ, ଗୋଟିଏ ପାଦ
ସେ ପାଦର ତଳେ ରହୁ ଏ ଥକା ମନ ॥ ୪ ॥
ଜୀବ ଯିବା ବେଳେ ପ୍ରଭୁ ସେ ପଦ ରଜ
ଲଗିଲାଏ ମୁଖେ ଦେବ କଳା ବଦନ ॥ ୫ ॥
ତୁମ ନାମ ଭଜି ଭଜି ଏ ଜୀବ ଯାଉ
ଏତିକି ମାଗୁଣି ପ୍ରଭୁ ଚକାବଦନ ॥ ୬ ॥

ହଜାରି ଟେଲନ୍
କଟକ

# ଭକ୍ତ ନନ୍ଦା ସାମନ୍ତ

## ଶ୍ରୀ ରାଜକିଶୋର ମହାନ୍ତି

ପୁଣ୍ୟଶ୍ଳୋକ ବାଞ୍ଛାନିଧି ନମାଙ୍କ ତୃତୀୟ ଦ୍ୱିଜଚନ୍ଦ୍ରଙ୍କ ସହିତ ମୋର ଏହି କିଶୋର ବୟସରୁ କଟକରେ ଆରମ୍ଭ ହୋଇ ତାଙ୍କ ପ୍ରୟାଣର କିଛିଦିନ ପୂର୍ବ ପର୍ଯ୍ୟନ୍ତ ଅବିଚ୍ଛିନ୍ନ ଭାବରେ ଚାଲି ଆସିଥିଲା । ବୟସରେ ସେ ମୋଠୁଁ କିଛି ମାସ ବଡ଼ ଥିଲେ । ପହିଲା ଦିନରୁ ସେ ମୋତେ ରାଜୁ ଭାଇ ଓ ମୁଁ ତାଙ୍କୁ 'ନନ୍ଦା ସାମନ୍ତ' ବୋଲି ସମ୍ବୋଧନ କରୁଥିଲୁ । ତାଙ୍କ ଭଳି ନିର୍ମଳ, ସରଳ ପ୍ରସନ୍ନ ଓ ଅନ୍ତର୍ବିଶ୍ୱାସୀ ଲୋକ ମୁଁ ଅତି କମ୍ ଦେଖିଥିବି ।

ଉତ୍କଳର ଲକ୍ଷ ଲକ୍ଷ ଆବାଳ-ବୃଦ୍ଧ-ବନିତାଙ୍କୁ ଯେ ତାଙ୍କ ସୁଧା କଣ୍ଠର ଝଙ୍କାରରେ ଅସଂଖ୍ୟ ଛାନ୍ଦ, ଚଉପଦୀ, ଜଣାଣ, ଭଜନାଦି ଶୁଣାଇ ଆସିଛନ୍ତି, ଗତ ଷାଠିଏ ବର୍ଷ ଧରି । ଗ୍ରାମ୍‌ଫୋନ ରେକର୍ଡ ଓ ରେଡ଼ିଓ ମାଧ୍ୟମରେ ତାଙ୍କ ସୁଲଳିତ ପ୍ରାଣସ୍ପର୍ଶୀ କଣ୍ଠ ନ ଶୁଣିଥିବା ଲୋକେ ଉତ୍କଳରେ ବୋଧେ ନ ଥାଇ ପାରନ୍ତି । ଖୋଳ, କରତାଳ, ହାରମୋନିଅମ ବାଦନ ଆଦିରେ ସେ ସିଦ୍ଧହସ୍ତ ଥିଲେ । ତାଙ୍କ ପଡ଼ିଶାରେ ମୋର ବସାବାସ ହେବା ଓ ତା' ପରେ ତାଙ୍କ ବଡ଼ପୁଅ ଉପେନ୍ଦ୍ର କିଶୋରଙ୍କ ସହ ମୋର ବାଲ୍ୟବନ୍ଧୁ ନିକୁଞ୍ଜ ମହାପାତ୍ରଙ୍କ କନ୍ୟାର ବିବାହ ପରେ ଆମର ସଂପର୍କ କ୍ରମେ ମଧୁର ଭାବରେ ଗଢ଼ା ହେଲା । କଟକରେ ମୁଁ ସରକାରୀ କାର୍ଯ୍ୟରେ ଥିବା ବେଳେ ସେ କଟକ ଆସିବା ମାତ୍ରେ ଅଫିସରେ ମୋତେ ଦେଖା ଦେଉଥିଲେ ଓ ମୁଁ ଚାକିରୀରୁ ଅବସର ନେଇ ପଣ୍ଡିଚେରୀ ଅରବିନ୍ଦ ଆଶ୍ରମରେ ସପରିବାର ରହିବା ପରେ ମଧ୍ୟ ସେ ମୋ ସହ ଦେଖା କରୁଥିଲେ । ୧୯୭୬ ମସିହାରେ ସେ ଦୋବର୍ଷାରେ ରହି ଆଶ୍ରମରେ ଶ୍ରୀମାଙ୍କୁ ତାଙ୍କ ଜନ୍ମଦିନ (୯।୭।୭୬) ଆଶୀର୍ବାଦ ପାଇଁ ସାକ୍ଷାତ କରି ମା'ଙ୍କ ପୂର୍ଣ୍ଣ ଓ କଲ୍ୟାଣ ଲଭିଥିଲେ । ସେ ଦିନଟି ଥିଲା ଶ୍ରୀଗୁଣ୍ଡିଚା । ତା' ପରଠାରୁ ସେ ମୋ ପାଖକୁ ନିୟମିତ ଭାବରେ ଶ୍ରୀଜଗନ୍ନାଥଙ୍କ ତୁଳସୀ, ନିର୍ମାଲ୍ୟ, ଶ୍ରୀକପଡ଼ା ଆଦି ପଠାଇ ଥା'ନ୍ତି ।

୯।୭।୮୩ ତାଙ୍କ ଜନ୍ମଦିନ ଆଶୀର୍ବାଦ ପ୍ରସାଦ ଡାକରେ ପାଇସାରି ଶ୍ରୀଗୁଣ୍ଡିଚା ବାହୁଡ଼ା (୧୯।୭।୮୩) ମଧ୍ୟରେ ଠାକୁରଙ୍କ ପ୍ରସାଦମୟ ପତ୍ର ଲେଖିଥିଲେ ଓ ଶାରୀରିକ ଦୁର୍ବଳତା ବିଷୟ ସୂଚାଇ ଥିଲେ ।

ସେ ଓ ମୁଁ ନବଦ୍ୱୀପ ଶ୍ରୀ ରାମଦାସ ବାବାଜୀଙ୍କ ଶିଷ୍ୟ ଓ ଗୁରୁଭାଇ ଥିଲୁ । ପରମ ବୈଷ୍ଣବ ଭାବରେ ନିରାମିଷ ଭୋଜନ ଓ ତାମସିକ ଜିନିଷ ତ୍ୟାଗ ବର୍ଜନରେ ଦୀର୍ଘ ଷାଠିଏ ବର୍ଷର ନିରାଡ଼ମ୍ବର ଜୀବନ ପାଳନ କରି ଆସିଥିଲେ । ୧୯୫୮ ମସିହାରେ ଥରେ କୌଣସି ଅଡୁଆ ପରିସ୍ଥିତିରେ ପଡ଼ି ସେ ମୋର ପରାମର୍ଶ ଲୋଡ଼ିଥିଲେ । ମୁଁ ତାଙ୍କୁ ଭାଗବତ ଏକାଦଶ ସ୍କନ୍ଧ ପଢ଼ିବାକୁ କହିଥିଲି ଓ ଯଥାର୍ଥରେ ଏକାଦଶ ସ୍କନ୍ଧର ଶେଷ ପାଠ ବେଳକୁ ସେ ଦୁଶ୍ଚିନ୍ତାରୁ ମୁକ୍ତି ଲାଭ କଲେ ଓ ତା' ପରଠାରୁ ଜୀବନର ଶେଷ ଦିନ ପର୍ଯ୍ୟନ୍ତ ସେ ଏକାଦଶ ସ୍କନ୍ଧ ନିତ୍ୟ ପଢ଼ୁଥିଲେ । ନାନା ସ୍ଥାନରେ ତାଙ୍କ ସୁଧା କଣ୍ଠ ସ୍ୱର୍ଣ୍ଣ ଲାଭର ସୌଭାଗ୍ୟ ପାଇଛୁ । ଆଶ୍ରମରେ ସେ ଏକ ସପ୍ତାହ ଯାଏ ଅରବିନ୍ଦଙ୍କ ଭାବେ ଓଡ଼ିଶୀ ସଙ୍ଗୀତ ସମସ୍ତଙ୍କୁ ଶୁଣାଇ ଥିଲେ । ଓଡ଼ିଶୀ ସଙ୍ଗୀତ ବ୍ୟତୀତ ସେ ଅନ୍ୟ ସଙ୍ଗୀତ ରେକର୍ଡ଼ କରୁ ନ ଥିଲେ, ଯଦିଓ ସେ ହିନ୍ଦୀ ଆଦି ଭଜନ ଗାଇ ପାରୁଥିଲେ । ଉତ୍କଳ ବାସୀ ସେଭଳି ପୁଣ୍ୟାତ୍ମା ଆଉ ଦେଖିବା ଆଶା କରି ପାରନ୍ତି ।

ଶ୍ରୀ ଅରବିନ୍ଦ ଆଶ୍ରମ
ପଣ୍ଡିଚେରୀ ।

# ଓଡ଼ିଆ ସଙ୍ଗୀତ ଜଗତରେ ନିମାଇଁ ଚରଣ

ଶ୍ରୀ ଧୀରେନ୍ କୁମାର ରଣା

ଓଡ଼ିଆ ସଙ୍ଗୀତ ଜଗତରେ ବାଣୀକଣ୍ଠ ପଦ୍ମଶ୍ରୀ ନିମାଇଁ ଚରଣ ହରିଚନ୍ଦନ ଏକ ଅବିସ୍ମରଣୀୟ ନାମ । ଯେତେ ଦିନ ପର୍ଯ୍ୟନ୍ତ ଏ ଜାତି ସଙ୍ଗୀତ ରସିକ ହୋଇ ରହିଥିବ, ସେତେ-ଦିନ ପର୍ଯ୍ୟନ୍ତ ଏହି ନାମ ସ୍ମରଣୀୟ ହୋଇ ରହିଥିବ ।

ଉତ୍କଳର ଏକ ନାମଜାଦା ସମ୍ଭ୍ରାନ୍ତ ତଥା ଧାର୍ମିକ ପରି-ବାରରେ ବାଣୀକଣ୍ଠଙ୍କ ଜନ୍ମ ହୋଇଥିଲେ ହେଁ, ଦିନ-ପୂର୍ଣ୍ୟରେ ଭ୍ରଷ୍ଟ ହେଇ ପରିବାରଟି ରାଜା ହରିଶ୍ଚନ୍ଦ୍ରଙ୍କ ଭଳି ସେତେବେଳକୁ କପର୍ଦ୍ଦକ ଶୂନ୍ୟ ହୋଇ ପଡ଼ିଥିଲା । ଏହା ଉପରେ ପୁଣି ନିମାଇଁ ଚରଣଙ୍କ ମୁଣ୍ଡରେ କିଶୋର ବୟସରୁ ଗୋଟିଏ ପରେ ଗୋଟିଏ ବିପତ୍ତି ଈଶ୍ୱର ଲଦି ଦେଇଥିଲେ । ମାତ୍ର କବି କହିଛନ୍ତି—

'ବିପଦ ପ୍ରଭୁଙ୍କ କଷଟି ପାଷାଣ
ପରଖନ୍ତି ତହିଁ ନର ହୃଦ ଟାଣ ।"

ପିତାଙ୍କର ମସ୍ତିଷ୍କ ବିକୃତ ହେବାଠୁଁ ଆରମ୍ଭ କରି ସେ ସମୟର ନାନା ପ୍ରତିକୂଳ ପରିସ୍ଥିତି ବୋଧହୁଏ ନିମାଇଁ ଚରଣଙ୍କ ହୃଦୟର ଟାଣ ପଣ ପରଖିବା ପାଇଁ ଉଦ୍ଦିଷ୍ଟ ଥିଲା । ବିପଦ ମଧ୍ୟରେ ଅବିଚଳିତ ରହି ପାରିଲେ ଈଶ୍ୱର ଦତ୍ତ ଶକ୍ତି ଓ ପ୍ରତିଭା କେବେ ହେଲେ ଅବଲୁପ୍ତ ହୋଇଯାଏ ନାହିଁ । ବରଂ ବିପଦ ରୂପକ ଅଗ୍ନି ଦାହ ମଧ୍ୟରେ ତାହା ଶୁଦ୍ଧ ସୁବର୍ଣ୍ଣ ପରି ଶୁଦ୍ଧ ଜ୍ୟୋତି ବିଛୁରଣ କରେ । ନିମାଇଁ ଚରଣଙ୍କ ଜୀବନ ଏହାର ଜ୍ୱଳନ୍ତ ଦୃଷ୍ଟାନ୍ତ ।

ଗାୟକ ପ୍ରବରଙ୍କ ଠାରେ ଲୁକ୍କାୟିତ ଥିବା ଐଶ୍ୱରୀ ଶକ୍ତିର ପରିଚୟ ତାଙ୍କର ଅତି ବାଲ୍ୟକାଳରୁ ହିଁ ମିଳିଥିଲା । ସେହି ଦିନରୁ ସେ ସଙ୍ଗୀତ ପ୍ରତି ଗଭୀର ଆଗ୍ରହ ପ୍ରକାଶ କରୁଥିଲେ । ତାଙ୍କ ବଂଶର ଇଷ୍ଟ ଦେବତା ଶ୍ରୀ ରାଧା-ଗୋବିନ୍ଦଙ୍କ ସମ୍ମୁଖରେ ପ୍ରତିଦିନ ଯେଉଁ ସାନ୍ଧ୍ୟ କୀର୍ତ୍ତନ ହେଉଥିଲା, ସେଥିରେ ବାଳକ ନିମାଇଁ ଚରଣ ପ୍ରତିଦିନ ଯୋଗ ଦେଉଥିଲେ ।

ଅବଶ୍ୟ ସେ ସଙ୍ଗୀତର ପ୍ରାରମ୍ଭିକ ଶିକ୍ଷା ତାଙ୍କର ପରମ ପୂଜ୍ୟ ପିତୃବ୍ୟ ଗୋକୁଳ ଚନ୍ଦ୍ର ହରିଚନ୍ଦନଙ୍କ ଠାରୁ ଗ୍ରହଣ କରି ପରେ ଘଟଣା ଚକ୍ରରେ ବହୁ ପ୍ରଖ୍ୟାତନାମା ସଙ୍ଗୀତ ଗୁରୁଙ୍କ ଠାରୁ ସେ ସଙ୍ଗୀତ ଶିକ୍ଷା କରିବାର ସୁଯୋଗ ପାଇ-ଥିଲେ । ମାତ୍ର ସେହି ସୁଯୋଗ ମଧ୍ୟରେ ତେଲ, ଲୁଣ ଲୁଆଁର ଗୁରୁବୋଝ ତାଙ୍କୁ ବଡ଼ ବ୍ୟସ୍ତ ବିବ୍ରତ କରି ପକାଇ ଥିଲା । ସଂସାରର ଅଭାବ ଅନାଟନ ମେଣ୍ଟାଇବା ତଥା ଉଦର ପୂର୍ତ୍ତି ପାଇଁ ନିମାଇଁ ଚରଣଙ୍କୁ ଯେ ଦିନେ ମୋଟର ଡ୍ରାଇଭର୍ ହେବାକୁ ପଡ଼ିଥିଲା, ଏହା କେହି କଳ୍ପନା କରି ପାରିବେ ନାହିଁ । ଏହାପରେ ସେ ଅନ୍ୟ କେତୋଟି ବ୍ୟବ-ସାୟରେ ମଧ୍ୟ ହାତ ଦେଇଥିଲେ । ମାତ୍ର ସଙ୍ଗୀତ ସାଧନାକୁ ସେ କଦାପି ଛାଡ଼ି ପାରି ନ ଥିଲେ, କି ଭୁଲି ଯାଇ ନ ଥିଲେ । ସତେ ଅବା ସଙ୍ଗୀତ ଥିଲା ତାଙ୍କର ଜୀବନ । ସଙ୍ଗୀତକୁ ସେ ଅନ୍ତର ଦେଇ ଭଲ ପାଉଥିଲେ । ଏହି କଳା ପ୍ରତି ତାଙ୍କର ଏକାଧାରରେ ଶ୍ରଦ୍ଧା, ଭକ୍ତି ଓ ପ୍ରେମ ରହିଥିଲା ।

ଯୁଗେ ଯୁଗେ ଏ କଥା ପ୍ରମାଣିତ ହୋଇ ଆସିଛି ଯେ ଦୃଢ଼ପ୍ରତିଜ୍ଞ ମନ ଓ ନିରବଚ୍ଛିନ୍ନ ସାଧନା କେବେହେଲେ ବ୍ୟର୍ଥ ହୁଏ ନାହିଁ, ଦିନେ ନା ଦିନେ ତାହା ସୁଫଳ ପ୍ରଦାନ କରି-ଥାଏ । ୧୯୩୮ ମସିହା ପର୍ଯ୍ୟନ୍ତ ଯେଉଁ ନିମାଇଁ ଚରଣ କଟକର କେତୋଟି ଆଭିଜାତ୍ୟ ପରିବାରର ଝିଅ ମାନଙ୍କର କେବଳ ସଙ୍ଗୀତ ଶିକ୍ଷକ ଭାବେ ସ୍ୱଳ୍ପ ପରିଚିତ ଥିଲେ, ସେହି ବ୍ୟକ୍ତିଙ୍କୁ ପ୍ରତିଷ୍ଠିତ ହେବା ପାଇଁ ଭାଗ୍ୟ ଆକସ୍ମିକ ଭାବେ ଏକ ମହାନ୍ ସୁଯୋଗ ଆଣି ଦେଲା । ସେହି ବର୍ଷ ତାଙ୍କ କଣ୍ଠରେ ଉପେନ୍ଦ୍ର ଭଞ୍ଜଙ୍କ ରଚିତ ଛାନ୍ଦ 'କି ତଳକୁ ଆଲିଙ୍ଗନ' ହିଜ୍ ମାଷ୍ଟରସ୍ ଭଏସ୍' ଗ୍ରାମୋଫୋନ୍ ରେକର୍ଡ କମ୍ପାନୀ ଦ୍ୱାରା ରେକର୍ଡିଂ

ହୋଇ ବଜାରକୁ ଆସିଲା । ରେକର୍ଡ ବିପୁଳ ଜନପ୍ରିୟତା ହାସଲ କରି ବହୁ ସଂଖ୍ୟାରେ ବିକ୍ରୀ ହୋଇଗଲା । ଏହାଦ୍ୱାରା କେବଳ ନିମାଇଁ ଚରଣ ନିଜେ ସୁପରିଚିତ ହେଲେ ନାହିଁ, ଗ୍ରାମୋଫୋନ୍ ରେକର୍ଡ ଯୋଗେ ଓଡ଼ିଆ ଗୀତ ଗୃହୀତ କଲେ କମ୍ପାନୀ ଯେ ଆର୍ଥିକ କ୍ଷତି ସହିବ ନାହିଁ ; ଏହା ପ୍ରମାଣିତ ହୋଇଗଲା ଓ ଅଧିକ ଭାବେ ଓଡ଼ିଆ ଗୀତ ରେକର୍ଡିଂ ହେବାର ଭିତ୍ତିଭୂମି ସ୍ଥାପନ କଲା । ଏହା ପୂର୍ବରୁ ଗଠିତ ଗ୍ରାମୋଫୋନ୍ ରେକର୍ଡ କମ୍ପାନୀ ଓଡ଼ିଆ ଗୀତ ରେକର୍ଡ କରିବାକୁ କୁଣ୍ଠିତ ହେଉଥିଲେ । ସେମାନେ ପ୍ରାଥମିକ ଅବସ୍ଥାରେ ଯେଉଁ କେତୋଟି କାର୍ଯ୍ୟ ଓଡ଼ିଆ ଗୀତ ରେକର୍ଡିଂ କରିଥିଲେ, ଯେଉଁଗୁଡ଼ିକରେ କଣ୍ଠ ଶିଳ୍ପୀମାନେ ବଙ୍ଗଳା ଗୀତର ସ୍ୱର ଓ ଶୈଳୀକୁ ଅନୁସରଣ କରି ଏଭଳି ବିକୃତ କରି ଗାଇଥିଲେ ଯେ ଓଡ଼ିଶାରେ ସେଗୁଡ଼ିକ ଆଦୃତ ନ ହେବା ସ୍ୱାଭାବିକ ଥିଲା । ତେଣୁ କମ୍ପାନୀ ଉପରୋକ୍ତ ଧାରଣା ପୋଷଣ କରିବାର ଅବସର ପାଇଥିଲେ । ମାତ୍ର ଖାଣ୍ଟି ଓଡ଼ିଆ ସ୍ୱର ଓ ଶୈଳୀରେ ଯେତେବେଳେ ନିମାଇଁ ଚରଣଙ୍କ କଣ୍ଠ ନିଃସୃତ ରେକର୍ଡ ପ୍ରକାଶିତ ହେଲା, ସେତେବେଳେ ବହୁ ସଙ୍ଗୀତ ପ୍ରେମୀ ଓଡ଼ିଆ ତାଙ୍କୁ ଅଭିନନ୍ଦନ ଜଣାଇଲେ ।

ସେହିଦିନ ଠାରୁ ଓଡ଼ିଆ ସଙ୍ଗୀତ ଆକାଶରେ ନିମାଇଁ ଚରଣ ଧ୍ରୁବ ତାରା ଭଳି ପ୍ରତିଷ୍ଠିତ ହୋଇଥିଲେ । ଗ୍ରାମୋଫୋନ୍ ରେକର୍ଡରେ ଓଡ଼ିଆ ଗୀତ ଗୃହୀତ କରାଇବାକୁ କମ୍ପାନୀ ଦ୍ୱାରା ବାରମ୍ବାର ନିମନ୍ତ୍ରଣ ପାଇବା ସଙ୍ଗେ ସଙ୍ଗେ ୧୯୩୪ ମସିହାରୁ ସେତେବେଳେ ଆକାଶବାଣୀ କଲିକତାରୁ ପ୍ରସାରିତ ଓଡ଼ିଆ କାର୍ଯ୍ୟକ୍ରମରେ ଗୀତ ଗାଇବାକୁ ମଧ୍ୟ ସେ କର୍ତ୍ତୃପକ୍ଷ ଠାରୁ ଆହ୍ୱାନ ପାଇଥିଲେ ; ସେହିଦିନ ଠାରୁ ସେ ଆକାଶବାଣୀରେ ନିୟମିତ ଗାୟକ ଭାବେ ଅନେକ ଗୀତ ପରିବେଷଣ କରି ଯାଇଛନ୍ତି । ୧୯୪୮ ରେ 'ରୂପଭାରତୀ' ଫିଲ୍ମ ପ୍ରଯୋଜନା ସଂସ୍ଥା ଦ୍ୱାରା ନିର୍ମିତ ଶ୍ରୀ ଜଗନ୍ନାଥ ବାଣୀଚିତ୍ରରେ ମଧ୍ୟ ସେ କଣ୍ଠ ଦାନ କରିଥିଲେ ।

ସଙ୍ଗୀତ ଶିଳ୍ପୀ ଭାବେ ପ୍ରତିଷ୍ଠିତ ହେବା ପରେ ସେହି ସଙ୍ଗୀତ ସାଧନାରେ ସେ ସାରା ଜୀବନ ଉତ୍ସର୍ଗ କରିଥିଲେ । ତାଙ୍କ କଣ୍ଠରେ ଅପୂର୍ବ ଲାଳିତ୍ୟ ଓ ମାଧୁର୍ଯ୍ୟ ଭରି ରହିଥିଲା । ସ୍ୱୀୟ ସାଧନା ବଳରେ ନିମାଇଁ ଚରଣ ତାହାକୁ ଆହୁରି ବିକାଶିତ କରି ତୋଳିଥିଲେ । ଓଡ଼ିଆ ଗୀତର ସର୍ବଦା ମୌଳିକ ରକ୍ଷା ପାଇଁ ସେ ଉଦ୍ୟମ କରୁଥିଲେ ।

ବିଗତ ଅର୍ଦ୍ଧ ଶତାବ୍ଦୀରୁ ଊର୍ଦ୍ଧ୍ୱ ସମସ୍ତ ବାଣୀକଣ୍ଠ ନିମାଇଁ ଚରଣଙ୍କ କଣ୍ଠଗୀତ ବିବାହ-ବେଦୀ, ଭୋଜିଭାତ ସ୍ଥଳ ଠାରୁ ଆରମ୍ଭ କରି ପୂଜାପାର୍ବଣ ବା ପ୍ରଭୃତି ଆଦି ସବୁ କ୍ଷେତ୍ରରେ ଜନମନୋହରଣ କରୁଥିଲା ।

ନିମାଇଁ ଚରଣଙ୍କ କଣ୍ଠରେ ଲାଳିତ୍ୟ ଓ ମାଧୁର୍ଯ୍ୟ ସାଙ୍ଗକୁ ଭକ୍ତି ରସର ମଧୁର ସମନ୍ୱୟ ହୋଇଥିଲା । ବିଶେଷ କରି ସେ ଏ ଜାତିର ପରମାରାଧ୍ୟ ଦେବ ଜଗତର ନାଥ ଜଗନ୍ନାଥଙ୍କର ଜଣେ ପରମ ଭକ୍ତ ଥିଲେ । ଶେଷ ଜୀବନରେ ଶ୍ରୀକ୍ଷେତ୍ରରେ ରହଣି କରି ସେ ପ୍ରତ୍ୟହ ଗରୁଡ଼ ସ୍ତମ୍ଭ ପଛରେ ମହାପ୍ରଭୁଙ୍କ ସମ୍ମୁଖରେ ଭକ୍ତିଗୀତ ଗାୟନ କରୁଥିଲେ ଓ ଶ୍ରଦ୍ଧାର ପୁରସ୍କାର ସ୍ୱରୂପ ଶ୍ରୀଛାମୁରୁ ତାଙ୍କୁ ଚାମର ସେବା ଓ ବୈଷ୍ଣବାଗ୍ର ସନନ୍ଦ ମିଳିଥିଲା । ତାଙ୍କ ଭକ୍ତିରେ ବନ୍ଧା କରୁଣାମୟ ଶ୍ରୀ ଜଗନ୍ନାଥ ତାଙ୍କର ଏହି ପରମ ଭକ୍ତଙ୍କୁ ତାଙ୍କର ପବିତ୍ର ବାହୁଡ଼ା ଯାତ୍ରା ଦିନ ଏ ସଂସାର କାନନରୁ ଚୟନ କରି ନେଇଥିଲେ । ସଙ୍ଗୀତ ନବରସ ପରିବେଷଣର ବିଳାସରୁ ମଧ୍ୟ ସକ୍ଷମ ହୋଇଥିଲେ ହେଁ, ନିମାଇଁ ଚରଣ ସେହି ନବରସ ମଧ୍ୟରେ ଭକ୍ତିରସକୁ ଏଭଳି ପୁଟ ଦେଇ ପରିବେଷଣ କରୁଥିଲେ ଯେ ତାହା ସତ୍ୟ, ଶିବ, ସୁନ୍ଦର ଭାବେ ଶ୍ରୋତାମାନଙ୍କ ନିକଟରେ ପ୍ରକଟିତ ହେଉଥିଲା । ପଲ୍ଲୀଗୀତ ଭାବେ, 'ଆସ ଆସ ମୋ ସରଗ ତରା ଲୋ' 'ବୋହୂ କଥା ନ ଜାଣଇ ଗୋ' 'ଶୁଣ ହେ ସୁଜନେ ଚନ୍ଦାର କାହାଣୀ' 'କି ହେବ ଶୁଆ ପୋଷିଲେ' ଠାରୁ ଆରମ୍ଭ କରି ଆକାଶବାଣୀରେ ଗାୟନ କରିଥିବା ଦେଶାତ୍ମବୋଧ ଗୀତ 'ମୁନିଜନ ବନ୍ଦିତ' କିମ୍ବା ସୁଗମ ସଙ୍ଗୀତ 'ସୁଖ ଦୁଃଖ ଦୁଇ ଭାଇ' ଏ ସବୁଥିରେ ଭକ୍ତି ରସର ସେ ଏକ ଅପୂର୍ବ ପୁଟ ଦେଇଥିଲେ । ଅବଶ୍ୟ ଏଗୁଡ଼ିକ ବିଭିନ୍ନ ଗୀତିକାରଙ୍କର ରଚନା । କିନ୍ତୁ ତାଙ୍କର ବିଶେଷତ୍ୱ ଥିଲା ଯେ ସଙ୍ଗୀତ ନାମରେ ଅସଂଯତ, ବିଶୃଙ୍ଖଳିତ ତଥା ସଂକୀର୍ଣ୍ଣ କାମୋଦ୍ଦୀପକ ରଚନା ଗାୟନ ପାଇଁ କେବେହେଲେ ସେ ଚିନ୍ତା କରି ନାହାନ୍ତି ।

ସଙ୍ଗୀତକୁ ପେଶା ନୁହେଁ, ଜୀବନ ଭାବେ ସେ ବିବେଚନା କରୁଥିଲେ । ଏଭଳି କ୍ୱଚିତ୍ ନିଷ୍ଠାପର ସଙ୍ଗୀତ ସାଧକ ସ୍ୱାର୍ଥ-

ପର ଦୁନିଆଁରେ ପରିଦୃଷ୍ଟ ହୁଅନ୍ତି । ସଙ୍ଗୀତ ସାଧନା ପାଇଁ ପୁରସ୍କୃତ ବା ସମ୍ମାନିତ ହେବାକୁ ସେ କେବେ-ହେଲେ ଲାଳାୟିତ ନ ଥିଲେ । କିନ୍ତୁ ପୁରସ୍କାର ଓ ସମ୍ମାନ ତାଙ୍କୁ ଅନୁଧାବନ କରିବାକୁ ବିରତ ନ ଥିଲା । ତାଙ୍କର ଉଚ୍ଚକୋଟୀର ସଙ୍ଗୀତ ସାଧନା ପାଇଁ ୧୯୪୩ ରେ 'ହିଜ ମାଷ୍ଟରସ୍ ଭଏସ୍' ଗ୍ରାମୋଫୋନ୍ ରେକର୍ଡ଼ କମ୍ପାନୀ ତାଙ୍କୁ ବାଣୀକଣ୍ଠ ଉପାଧିରେ ଭୂଷିତ କରିଥିଲେ । ତା' ପରେ ୧୯୩୪ ରେ ଉତ୍କଳ ସାହିତ୍ୟ ସମାଜ ଓ ୧୯୩୮ ରେ ଉତ୍କଳ ସଙ୍ଗୀତ ସମାଜ ତାଙ୍କୁ ସ୍ୱର୍ଣ୍ଣପଦକ ପ୍ରଦାନ କରିଥିଲେ । ୧୯୪୩ ରେ ଆଠଗଡ଼ର ତତ୍କାଳୀନ ରାଜା ତାଙ୍କୁ 'ରାଜ ସଙ୍ଗୀତଜ୍ଞ' ଭାବେ ବରଣ କରି ଏକ ସୁରମ୍ୟ ପ୍ରାସାଦ ସହିତ ଶହେ ଏକର ଜମି ଖଞ୍ଜା ଓ ମାସିକ ୩୦ ଟଙ୍କା ଭତ୍ତା ମଧ୍ୟ ଦେଇଥିଲେ । ୧୯୫୦ ରେ ଅନୁଗୁଳ ଠାରେ ଅନୁଷ୍ଠିତ ସର୍ବୋଦୟ ସମ୍ମିଳନୀରେ ତାଙ୍କ ସଙ୍ଗୀତ ଶୁଣି ଭାରତ ବିଖ୍ୟାତ ମନସ୍ୱୀ କାକା କାଲେଲକର ତାଙ୍କୁ ଏକ ପ୍ରଶଂସା ସୂଚକ ପ୍ରମାଣପତ୍ର ପ୍ରଦାନ କରିଥିଲେ । ସେହିପରି ୧୯୬୭ ରେ ପ୍ରଜାତନ୍ତ୍ର ପ୍ରଚାର ସମିତି ତରଫରୁ ତାଙ୍କୁ ଅଭିନନ୍ଦିତ ଓ ପୁରସ୍କୃତ କରାଯାଇଥିଲା । ୧୯୭୬ ରେ ରାଷ୍ଟ୍ରପତି ଦେଶର ବିଭିନ୍ନ କ୍ଷେତ୍ରରେ ପାରଦର୍ଶିତା ଅର୍ଜନ କରିଥିବା ବରପୁତ୍ର ମାନଙ୍କ ପାଇଁ ଉଦ୍ଦିଷ୍ଟ ରାଷ୍ଟ୍ରୀୟ ସମ୍ମାନ 'ପଦ୍ମଶ୍ରୀ' ଉପାଧି ତାଙ୍କୁ ପ୍ରଦାନ କରିଥିଲେ ।

ଯୁଗ ବଦଳିବା ସଙ୍ଗେ ସଙ୍ଗେ ରୁଚି ବଦଳିବ, ଏହା ହିଁ ଏହି କ୍ଷଣ ଭଙ୍ଗୁର ଦୁନିଆଁର ରୀତି । କିନ୍ତୁ ଯେତେ ଦିନ ପର୍ଯ୍ୟନ୍ତ ଏ ଜାତି ପ୍ରକୃତ ସଙ୍ଗୀତ ପ୍ରେମୀ ହୋଇ ରହିଥିବ ସେତେଦିନ ପର୍ଯ୍ୟନ୍ତ ଆମର [illegible] ସଙ୍ଗୀତ ଆକାଶରେ ଉଜ୍ଜ୍ୱଳ ଜ୍ୟୋତିଷ୍କ ଭାବେ ସେ ଶୋଭା ପାଉଥିବେ, ଏହା ନିଃସନ୍ଦେହରେ କୁହାଯାଇ ପାରେ ।

ରାଉତ ପଡ଼ା, ରୂପସା
ବାଲେଶ୍ୱର ।

# ଜଗନ୍ନାଥ ଦଦେଇ ଏବଂ ଆମେ

## ଶ୍ରୀ ଅକ୍ଷୟ କୁମାର ସାମନ୍ତରାୟ

ପଦ୍ମଶ୍ରୀ ନିମାଇଁ ଚରଣ ହରିଚନ୍ଦନ ସବୁଦିନ ପାଇଁ ଚାଲିଗଲେ । କିନ୍ତୁ ଆମ ପାଇଁ ଚାଲିଗଲେ ଆମ ପରମ ଆଦରର 'ଦଦେଇ' ।

ତାଙ୍କର ପୁଅ-ବୋହୂ, ଝିଅ-ଜ୍ୱାଇଁ ଏବଂ ସେମିତି ସମ୍ପର୍କୀୟ ସମସ୍ତେ ତାଙ୍କୁ ଆଦରରେ 'ଦଦେଇ' ବୋଲି ଡାକୁଥିଲେ । ମୁଁ ତାଙ୍କୁ କେହି 'ବାବା' ଡାକିବା କେବେ ଶୁଣିନି ।

ପୁରୀ ଗଲେ ଆମର ଲକ୍ଷ୍ୟ ଦୁଇଟି । ପ୍ରଥମ ଜଗନ୍ନାଥ ଦର୍ଶନ । ଦ୍ୱିତୀୟ ଦଦେଇଙ୍କୁ ଦେଖା କରିବା—ତାଙ୍କ ଜଗନ୍ନାଥ ନିବାସରେ । ତାଙ୍କ ସହିତ ଯିଏ ଆଳାପ ଆଲୋଚନା କରିଛି ସେ ସ୍ମୃତି ନିଶ୍ଚୟ ତା' ମନରେ ଅମଳିନ ରହିବ । ୧୯୮୩ ଜୁନ୍ ୧୯ ତାରିଖରେ ତାଙ୍କ ସଙ୍ଗେ ଆମର ଶେଷ ଦେଖା । ତାଙ୍କ ସାନ ଝିଅ ଅର୍ଥାତ୍ ମୋର ସ୍ତ୍ରୀଙ୍କୁ ମୁଁ ସାଙ୍ଗରେ ନେଇ ଯାଇଥିଲି କିଛିଦିନ ପାଇଁ ତାଙ୍କ ପାଖରେ ଛାଡ଼ି ଆସିବା ପାଇଁ । ଜଗନ୍ନାଥଙ୍କ ଦର୍ଶନ ସାରି ପ୍ରାୟ ଦିନ ଘ ୧-୩୦ ରେ ତାଙ୍କ ପାଖରେ ପହଞ୍ଚିଲୁ । ଖାଇସାରି ଶୋଇଥିଲେ । ତାଙ୍କ ସଙ୍ଗେ ପ୍ରଥମ ସାକ୍ଷାତରେ ସେ ଦୁଇଟି କଥା ପଚାରୁଥିଲେ । 'ବାବା' ଜଗନ୍ନାଥ ଦର୍ଶନ ସାରି ଆସିଛ କି ନାହିଁ ? ତା'ପରେ ଖାଇବା କଥା, ସେଦିନ ତାଙ୍କ ସାଙ୍ଗେ ବସି ଖାଇବା ଭାଗ୍ୟରେ ନ ଥିଲା । ଭୁବନେଶ୍ୱର ଫେରିବା ଆଗରୁ ସେ ମୋତେ ପାଖକୁ ଡାକି ତାଙ୍କ ଦୁଃଖ ସେଦିନ ମୋତେ ଜଣାଇଥିଲେ । ସେଦିନର ମୋ ପାଇଁ ଥିଲା ତାଙ୍କର ଶେଷ କଥା । ଅଶ୍ରୁବୋଳା ଆଖିରେ ସେ କହୁଥିଲେ, ମୁଁ ଶୁଣୁଥିଲି—'ବାବା' ବାମଗୋଡ ପ୍ରାୟ ଅଚଳ । ମନ୍ଦିରରେ ବାଇଶି ପାହାଚ ଚଢ଼ି ଜଗନ୍ନାଥଙ୍କୁ ଦର୍ଶନ କରି ପାରୁନି । ଏଇଠି ରହି ତାଙ୍କୁ ଦେଖି ପାରୁନି । ଏ ଜୀବନ ଥାଇ କି ଲାଭ । ଏବେ ସିଂହଦ୍ୱାରଜା ଆଗରେ ତାଙ୍କୁ ଜଣାଣ କଲି, ପ୍ରଭୁ କାହିଁକି ଆଉ ଦୁଃଖ ଦେଉଛୁ । ମୋତେ ତୋ ପାଖକୁ ନେଇଯା । ସେ କହିଲେ ଏତେ ବ୍ୟସ୍ତ ହେଲେ କ'ଣ ହେବ, ତୁମ ବେଳ ହୋଇନି ।'

ମୋ ଜୀବନରେ ପ୍ରଥମେ ତାଙ୍କ ଆଖିରେ ସେଦିନ ଦେଖିଥିଲି ଦୁଇଧାର ଲୁହ । ଫେରିବା ବେଳେ କହିଥିଲି ସାନଝିଅ ପାଖରେ ଥାଉ । କିଛିଦିନ ପରେ ଆସି ନେଇଯିବି । କହିଲେ—"ମୋ ଦେହ ଭଲ ଅଛି, ଦରକାର ହେଲେ ଆମେ ଡାକିବୁ । ପିଲାମାନେ ହଇରାଣ ହେବେ ସେ ଯାଉ । ଆସିବା ବାଟରେ ସିଂହଦ୍ୱାରଜା ଆଗରେ ସେଦିନ ମୁଁ ଜଗନ୍ନାଥଙ୍କୁ ଡାକିଥିଲି—"ପ୍ରଭୁ ହେ ! ତାଙ୍କ ଗୋଡ ଭଲ-କରିଦିଅ । ସେ ତୁମକୁ ରତ୍ନ ବେଦୀରେ ଦେଖନ୍ତୁ । ଏତେ ଦୃଢ଼ମନା ମଣିଷ ତୁମକୁ ନ ଦେଖି କାନ୍ଦୁଛନ୍ତି ।" ଜଗନ୍ନାଥ ସେଦିନ କିନ୍ତୁ ମୋ ଡାକ ଶୁଣିଲେନି । ଶୁଣିଲେ ତାଙ୍କର ଡାକ । ତାଙ୍କୁ ନିଜ ଦେହରେ ମିଶାଇ ଦେଲେ ।

ଜୁଲାଇ ୨୦ ତାରିଖ । ସକାଳ ୬ ଟାରେ ବାହାରେ ଦାନ୍ତ ଘଷିବାକୁ ବାହାରିଛି । ମୋ ସଢ଼ୁଙ୍କ ପୁଅକୁ ହଠାତ୍ ଫାଟକ ପାଖରେ ଦେଖି ଆଶ୍ଚର୍ଯ୍ୟ ହେଲି । ଏତେ ସକାଳୁ କେମିତି ଆସିଲୁ ?" "ଅଜା ଚାଲିଗଲେ ।" ବିଶ୍ୱାସ କରି

ପାରୁଥିବ । ଖବର ଆଜି ତ ବାହୁଡ଼ା ଜାତ । କାଳିଆ ବାହୁଡ଼ିବା ଆଗରୁ କ'ଣ ତାଙ୍କୁ ବାହୁଡ଼ାଇ ନେଲେ ।

ଦିନ ଘ ୧୧-୩୦ ରେ ପୁରୀରେ ପହଞ୍ଚି ତାଙ୍କର ସ୍ନେହ ଆଦରର 'ଜଗନ୍ନାଥ ନିବାସ'ରେ ତାଙ୍କୁ ଶେଷ ଦର୍ଶନ କଲୁ । ସେ ଯେମିତି ପ୍ରତିଦିନ ଶୁଅନ୍ତି, ସେମିତି ଶୋଇଥାନ୍ତି ସେ ତକ୍ତ ପୋଷରେ । ସେମିତି ପ୍ରଶାନ୍ତ ମୁଖମଣ୍ଡଳ, ଗ୍ଲାନି ନାହିଁ, କ୍ଲାନ୍ତି ନାହିଁ କିମ୍ବା ମୃତ୍ୟୁର ନିଷ୍ଠୁରତା ନାହିଁ ।

ତା'ପର ଘଟଣା । ମାଟିମଣ୍ଡପ ସାହିରୁ ଶବ ଯାତ୍ରା । ଆମେ କେତେଜଣ ଅତି ଆପଣାର ତାଙ୍କ ମର ଶରୀରକୁ ଧରି ଚାଲିଲୁ ସ୍ୱର୍ଗ ଦ୍ୱାର । ବଡ଼ଦାଣ୍ଡ ଲୋକାରଣ୍ୟ । କାଳିଆ ବାହୁଡ଼ୁଛି । ସେ ଜନସମୁଦ୍ର ଭିତର ଦେଇ ଆମେ ଆଗେଇଲୁ । ଭକ୍ତର ଶେଷ ଇଚ୍ଛା "ପ୍ରଭୁ ତୁମେ ବାହୁଡ଼ିବା ଆଗରୁ ମୋତେ ବାହୁଡ଼ାଇ ନିଅ ।" ସ୍ୱର୍ଗଦ୍ୱାରରେ ପହଞ୍ଚି ମୁଁ ତଟସ୍ଥ । ଆକାଶର ଚନ୍ଦ୍ରା — ବର୍ଷା ତ କମୁନି । ଶବଦାହ କିପରି ହେବ । "ଓହ ଚକାଡ଼ୋଳା ! ତୋ ବାହୁଡ଼ିବା ଆଗରୁ ତ ବାହୁଡ଼ାଇ ନେଲୁ, ପୁଣି ଏ କି ଖେଳ ।" କିଛି ମୁହୂର୍ତ୍ତ । ଆମେ ସମସ୍ତେ ତାଙ୍କ ମରଶରୀରକୁ ଶେଷ ପ୍ରଣିପାତ ଜଣାଇ ଜୁଇରେ ରଖିଲୁ । ହଠାତ୍ ବର୍ଷା ବନ୍ଦ, ପବନର ବେଗ ପ୍ରଖର । ଜୁଇ ଜଳିଲା । ଆମ ଆଖି ଆଗରେ ସେ ସୁଠାମ ଶରୀର ପୋଡ଼ି ପାଉଁଶ ହୋଇଗଲା । ତା'ପରେ ବର୍ଷାର ବେଗ ପୂର୍ବଭଳି ଲାଗି ରହିଲା ।

'ଭକ୍ତର ଭଗବାନ ।' ଜଗନ୍ନାଥ ଭକ୍ତ ପାଇଁ ଯେପରି ସେତିକ ସମୟ ବର୍ଷାକୁ ଚନ୍ଦ ଉହାଡ଼ରେ ରଖିଲେ ।

ଆମେ ତାଙ୍କର ଅତି ଆଦରର । ଆଜି ତାଙ୍କର ଅମର ଆତ୍ମା ପ୍ରତି ବିନମ୍ର ଶ୍ରଦ୍ଧାଞ୍ଜଳି ଜଣାଉଛୁ । ଏଣିକି ସେ ବଡ଼ଠାକୁର, ଜଗତର ନାଥ ଜଗନ୍ନାଥଙ୍କ ପାଖେ ତାଙ୍କୁ ଦର୍ଶନ କରି ତାଙ୍କର ସେହି ବୀଣା-ଜିଣା କଣ୍ଠରେ ଗାଉଥିବା ସଙ୍ଗୀତ 'ଜଗତର ନାଥ କାଳିଆ ସାଆନ୍ତ ଶୁଣିବା ହେଉ ଗୁହାରି' ପ୍ରତିଧ୍ୱନି ମନ୍ଦିର ଭିତରେ ଯେମିତି ଶୁଣିବୁ, ଏତିକି ମୋର ଚକାଡ଼ୋଳାଙ୍କୁ ପ୍ରାର୍ଥନା ।

କ୍ୱାର୍ଟର ନମ୍ବର ୧୦୬ / ୪ ଆର,
ୟୁନିଟ୍ ୬ / ଭୁବନେଶ୍ୱର ।

# ବାଣୀ ସାଧକ ବାଣୀକଣ୍ଠ

**ଶ୍ରୀ ଅସୀତ ମହାନ୍ତ**

"ଫୁଲ ଟିର ଜୀବନ ଫୁଟେ ଓ ଝଡ଼ିଯାଏ । ଯେଉଁ ଫୁଲଟି ନିକାଞ୍ଚନରେ ଫୁଟି ଝଡ଼ିଯାଏ ତାକୁ କେହି ଜାଣନ୍ତି ନାହିଁ । ମାତ୍ର ଯେଉଁ ଫୁଲଟି ଦେବତା ପୂଜାରେ ଲାଗେ ତାହାର ଜୀବନ ସାର୍ଥକ ହୁଏ ।"

ନିଜ ସଂପର୍କରେ କହିବାକୁ ଯାଇ ଯେ ଏକଦା ଏଇ କେଇପଦ କଥା କହିଥିଲେ ସେ ଆଉ କେହି ନୁହଁନ୍ତି, ଶ୍ରୀଜଗନ୍ନାଥଙ୍କର ପରମ ଭକ୍ତ ନିରଳସ ବାଣୀ-ସାଧକ ବାଣୀକଣ୍ଠ ନିମାଇଁ ଚରଣ ହରିଚନ୍ଦନ ।

ଅଷ୍ଟାଦଶ ଶତାବ୍ଦୀର ଶେଷଭାଗ ଓ ଊନବିଂଶ ଶତାବ୍ଦୀର ଆରମ୍ଭ ଭାଗ ବେଳକୁ, କେନ୍ଦ୍ରାପଡ଼ାର ଖ୍ୟାତିନାମା ଜମିଦାର ଥିଲେ ରାଧାଶ୍ୟାମ ଜେନା, ଓରଫ୍ ରାଧାଶ୍ୟାମ ନରେନ୍ଦ୍ର । ସେ ଯେପରି ପ୍ରତିପତ୍ତିଶାଳୀ ଥିଲେ, ସେହିପରି ମଧ୍ୟ ଥିଲେ ଦାନଶୀଳ ଓ ପ୍ରଜାବତ୍ସଳ । ତାଙ୍କର ଖ୍ୟାତି ଓ ପ୍ରଜା-ପ୍ରୀତି ଏପରି ଥିଲା ଯେ, ତାଙ୍କୁ ଦେବରାଜ ଇନ୍ଦ୍ରଙ୍କ ସହ ତୁଳନା କରି 'ସ୍ୱର୍ଗରେ ଇନ୍ଦ୍ର, ମର୍ତ୍ତ୍ୟରେ ନରେନ୍ଦ୍ର' ବୋଲି ଲୋକ-ପ୍ରସିଦ୍ଧିଟିଏ ସର୍ବମୁଖରେ ପ୍ରଚଳିତ ଥିଲା ।

ଏହି ସମ୍ଭ୍ରାନ୍ତ ଖ୍ୟାତିମାନ୍ ମର୍ତ୍ତ୍ୟ-ଇନ୍ଦ୍ର ରାଧାଶ୍ୟାମ ନରେନ୍ଦ୍ରଙ୍କ ବଂଶରେ ୧୯୦୧ ମସିହା ଜୁଲାଇ ୯ ତାରିଖରେ ଜନ୍ମଗ୍ରହଣ କରିଥିଲେ ନିମାଇଁ ଚରଣ । ତାଙ୍କର ପିତା ବୃନ୍ଦାବନ ଚନ୍ଦ୍ର ହରିଚନ୍ଦନ ଥିଲେ ରାଧାଶ୍ୟାମ ନରେନ୍ଦ୍ରଙ୍କର ଚତୁର୍ଥ ନାତି ଓ ମାତା ଥିଲେ ସମ୍ଭ୍ରାନ୍ତ ବଂଶ-ସଂଭୂତା ଇନ୍ଦ୍ରମଣି ଦେବୀ ।

ନିମାଇଁ ଚରଣଙ୍କ ଜନ୍ମ ବେଳକୁ ରାଧାଶ୍ୟାମ ନରେନ୍ଦ୍ର ବଂଶର ପୂର୍ବ-ପ୍ରତିପତ୍ତି ନିଷ୍ପ୍ରଭ ହୋଇ ଆସିଲଣି । ତା ସତ୍ତ୍ୱେ ନିମାଇଁ ଚରଣଙ୍କ ପାଠ ପଢ଼ା ପାଇଁ କୌଣସି ପ୍ରକାର ପ୍ରତିବନ୍ଧକ ନ ଥିଲା । ସେ କୌଣସି ସାଧାରଣ ଏକ ଶିଶୁ ପରି ସ୍ନେହ-ଲାଳିତ ଶୈଶବ ଓ କୈଶୋର ତାଙ୍କର କଟିଥିଲା କ୍ରୀଡ଼ାଚପଳ ଭାବେ । ବିଦ୍ୟାଧ୍ୟୟନର ବୟସରେ ସେ ବିଦ୍ୟାଧ୍ୟୟନ ଆରମ୍ଭ କରିଥିଲେ । ମାତ୍ର ଦୁର୍ବିପାକ ତାଙ୍କୁ ବିଦ୍ୟାଧ୍ୟୟନ କରିବା ପାଇଁ ଅନୁକୂଳ ସୁଯୋଗ ଦେଇ ନ ଥିଲା ।

ତାଙ୍କୁ ସେତେବେଳକୁ ବୟସ ହେବ ୯-୧୦ । ମାଇନର ତଳ କ୍ଲାସରେ ପଢ଼ୁଥା'ନ୍ତି । ପିତା ବୃନ୍ଦାବନ ଚନ୍ଦ୍ରଙ୍କର ମସ୍ତିଷ୍କ ବିକୃତି ଘଟିଲା । ବୟସ ସ୍ୱଳ୍ପ ହୋଇଥିବା ସତ୍ତ୍ୱେ ଜ୍ୟେଷ୍ଠପୁତ୍ର ହେତୁ ପିତାଙ୍କର ଚିକିତ୍ସାର ସମସ୍ତ ଦାୟିତ୍ୱ ତାଙ୍କ ଉପରେ ପଡ଼ିଲା । ଗୋଟାଏ ପଟେ ଆନୁଷ୍ଠାନିକ ବିଦ୍ୟାଧ୍ୟୟନର ପ୍ରଶସ୍ତ ପରିସର ଓ ଅନ୍ୟ ଗୋଟାଏ ପଟେ ପିତାଙ୍କର ସୁଚିକିତ୍ସାର ସମସ୍ତ ଦାୟିତ୍ୱ—ଏ ଉଭୟ ମଧ୍ୟରୁ ବଡ଼ ହୋଇ ଦେଖା ଦେଲା ଦାୟିତ୍ୱ ଓ କର୍ତ୍ତବ୍ୟ ବୋଧ । ପିତାଙ୍କୁ ସାଙ୍ଗରେ ଧରି ଚିକିତ୍ସା ପାଇଁ ଓଡ଼ିଶାର ବିଭିନ୍ନ ସ୍ଥାନ ସେ ଘୂରି ବୁଲିଲେ । ବନ୍ଧ ବସ୍ତାନରେ ଡୋରି ବନ୍ଧା ହେଲା ସେଇଠି ।

ବନ୍ଧ ବସ୍ତାନରେ ସେ ଦିନ ଯେଉଁ ଡୋରି ବନ୍ଧା ହୋଇ ଥିଲା, ତାହା ତାଙ୍କ ଜୀବନ କାଳ ମଧ୍ୟରେ ଆଉ ଖୋଲି ନାହିଁ । ମାତ୍ର ପାଠ ପଢ଼ାରେ ସୃଷ୍ଟି ହେବା ଏହି ପ୍ରତିବନ୍ଧକର ନେପଥ୍ୟରେ ସମ୍ଭବତଃ ଆଉ ଏକ ବିଧି-ନିର୍ଦ୍ଦିଷ୍ଟ ବ୍ୟଞ୍ଜନା ଥିଲା । ତାହା ହେଉଛି ସଙ୍ଗୀତ-ସାଧନା ପାଇଁ କ୍ଷେତ୍ର ପ୍ରସ୍ତୁତି ।

ବଂଶର ଇଷ୍ଟ ଦେବତା ଥିଲେ ଶ୍ରୀ ଶ୍ରୀ ରାଧାଗୋବିନ୍ଦ ଜୀଉ । ଅନେକେ ହୁଏତ ବାଣୀକଣ୍ଠଙ୍କର 'ରାଧେ ଗୋବିନ୍ଦ ଭଜ ...' ଗୀତଟି ଶୁଣିଥିବେ; ମାତ୍ର ସେଇ ଗୀତର 'ରାଧାଗୋବିନ୍ଦ' ଯେ ତାଙ୍କର ବଂଶର ଇଷ୍ଟ ଦେବତା 'ରାଧା-ଗୋବିନ୍ଦ' ତାହା ବୋଧହୁଏ ସମସ୍ତଙ୍କୁ ଜଣା ନ ଥିବ । ସେ ସମୟର ଜମିଦାରୀ ଖାନ୍ଦାନରେ ଇଷ୍ଟଦେବତାଙ୍କ ଅର୍ଚ୍ଚନା

ଓ ନୀତ-କାନ୍ତି ପାଇଁ ଥିଲା ସୁ ଓ ପର୍ଯ୍ୟାପ୍ତ ବନ୍ଦୋବସ୍ତ । ମହାର୍ଘ ସାଜସଜ୍ଜାରେ ବହୁ ଉପଚାରର ପୂଜାର୍ଚ୍ଚନା ବା ଦ୍ରବ୍ୟ ଭୋଗ-ନୈବେଦ୍ୟରେ କେବଳ ନୁହେଁ; ଭଜନ-କୀର୍ତ୍ତନ ଓ ସାଧୁସଙ୍ଗ ପାଇଁ ମଧ୍ୟ ଥିଲା କାର୍ପଣ୍ୟଶୂନ୍ୟ ବନ୍ଦୋବସ୍ତ । ସନ୍ଧ୍ୟା-ସକାଳେ ବା ପର୍ବପର୍ବାଣୀ ଓ ଧର୍ମ ଅନୁଷ୍ଠାନାଦିରେ ନିୟମିତ ଭଜନକୀର୍ତ୍ତନ ପାଲା ଆଦି ପରିବେଷଣ କରାଯାଉଥିଲା । ସେଇ ସବୁ ଭଜନକୀର୍ତ୍ତନାଦି ଥିଲା ସହୃଦୟ ଓ ଭାବବନ୍ଧୁର ତାଦାତ୍ମ୍ୟରେ ପରିପୂର୍ଣ୍ଣ । ଭୂମିଷ୍ଠ ହୋଇ କୁଆଁ ରାବ ଦେବା ବେଳଠାରୁ ହିଁ ନିମାଇଁ ଚରଣ ଶୁଣି ଆସୁଥିଲେ ସେହି ସବୁ ଭାବୋଚ୍ଛ୍ୱାସଭରା ଭଜନ-କୀର୍ତ୍ତନ । କୈଶୋରରେ ସେ ଆଡ଼କୁ କ୍ରମେ ଆକର୍ଷଣ ବଢ଼ିଲା ତାଙ୍କର । ବଂଶ-ପରଂପରାରୁ ସ୍ୱର-ସଙ୍ଗୀତର ଯେଉଁ ସୁପ୍ତ-ବୀଜଟି ହୃଦଭୂମିରେ ପ୍ରୋଥିତ ଥିଲା, ତାହା କ୍ରମେ ଅଙ୍କୁରିବାକୁ ଉନ୍ମୁଖ ହୋଇ ଉଠିଲା । ସେତେବେଳକୁ ସେ ତରଳ କିଶୋର । ବୟସ ମାତ୍ର ୧୪ ବର୍ଷ ।

ସ୍ୱର-ସାଧନାର ସୁପ୍ତବୀଜଟି ହୃଦଭୂମିରେ ଅଙ୍କୁରିତ ହେବା ପାଇଁ ପରିବାର ଓ ପାରିପାର୍ଶ୍ୱିକ ଥିଲା ସଂପୂର୍ଣ୍ଣ ଅନୁକୂଳ ଓ ଉତ୍କୃଷ୍ଟ । ତାଙ୍କର କନିଷ୍ଠ ପିତୃବ୍ୟ (ଦାଦା) ଗୋକୁଳ ଶ୍ରୀଚନ୍ଦନ ଥିଲେ ସଙ୍ଗୀତଜ୍ଞ ଓ ଖ୍ୟାତନାମା ହାରମୋନିୟମ୍ ବାଦକ । ପ୍ରସିଦ୍ଧ ମୋହନ ସୁନ୍ଦର ଗୋସ୍ୱାମୀ ଥିଲେ ତାଙ୍କର ଅନ୍ୟତମ ଶିଷ୍ୟ—ଯାହାଙ୍କ ରାସଦଳରେ ନିମାଇଁ ଚରଣ ପରେ ୧୯୨୮ରେ ଯୋଗ ଦେଇଥିଲେ ।

ନିମାଇଁ ଚରଣଙ୍କର ଅନ୍ୟତମ ଦାଦା ଗିରିଧାରୀ କେନା ମଧ୍ୟ ଥିଲେ ସଙ୍ଗୀତ ଓ ମୃଦଙ୍ଗବାଦ୍ୟ ପ୍ରବୀଣ । ଏ ଉଭୟଙ୍କଠାରୁ ନିମାଇଁ ଚରଣ ହାରମୋନିୟମ୍ ଓ ମୃଦଙ୍ଗ ବାଦନ ଶିଖିଥିଲେ । ତତ୍କାଳୀନ ଅନ୍ୟତମ ସଙ୍ଗୀତ-ଶିକ୍ଷକ ଆର୍ତ୍ତବନ୍ଧୁ ପାତ୍ର କିଛୁକାଳ ତାଙ୍କୁ ମାସିକ ତିରିଶଟଙ୍କା ବିନିମୟରେ ସଙ୍ଗୀତ ଶିକ୍ଷା ଦେଉଥିଲେ । ଏସବୁ ପ୍ରତି ନିମାଇଁ ଚରଣଙ୍କର ଥିଲା ଅସୀମ ଆଗ୍ରହ । ତେଣୁ ଆଦ୍ୟ ଯୌବନ ସମୟକୁ ସେ ଏକାଧାରରେ ହାରମୋନିୟମ୍, ମୃଦଙ୍ଗ, ତବଲା ଓ ଢୋଲକ ବାଦନରେ ପ୍ରବୀଣ ହୋଇ ଉଠିବା ସଙ୍ଗେ ସଙ୍ଗେ ପାରମ୍ପରିକ ସଙ୍ଗୀତ ଶିକ୍ଷାରେ ମଧ୍ୟ ପ୍ରାଥମିକ ଜ୍ଞାନ ଅର୍ଜନ କରି ସାରିଥିଲେ ।

ଏ ସମୟକୁ, ସଙ୍ଗୀତ-ସାଧନା କ୍ଷେତ୍ରରେ ପ୍ରତିବନ୍ଧକ ରୂପେ ଜମିଜମା ନେଇ କନ୍ଦଳ ଓ ମାଲି-ମକଦ୍ଦମା ଲାଗି ଯାଇଥାଏ । ଏହି ମାଲି-ମକଦ୍ଦମା ଝୁଣ୍ଟା ସୁଣ୍ଟା କରିବା ପାଇଁ ପିତାମାତା ନିମାଇଁ ଚରଣଙ୍କୁ ସାଙ୍ଗରେ ନେଇ କଟକ ଆସିଲେ । ଏ ସଂକ୍ରାନ୍ତରେ ଦୀର୍ଘଦିନ ସେମାନଙ୍କୁ କଟକରେ ରହିବାକୁ ପଡ଼ିଲା । ମାତ୍ର ଏହି ମାଲି-ମକଦ୍ଦମା-ଜନିତ ବିପତ୍ତି ଅନ୍ତରାଳରେ ନିମାଇଁ ଚରଣଙ୍କ ପ୍ରତି ପ୍ରଚ୍ଛନ୍ନ ଥିଲା ଏକ ଅବାଞ୍ଛିତ ବରଦାନ—ଯାହା ତାଙ୍କର ପରବର୍ତ୍ତୀ କାଳର ଏକ ମୁଖ୍ୟ-ପର୍ଯ୍ୟାୟର ଜୀବନ ଧାରାକୁ ନିୟନ୍ତ୍ରିତ କରିଥିଲା । ନୟାଗଡ଼ ରାଜବଂଶ ସମ୍ଭୂତ ଗୋବିନ୍ଦ ଚନ୍ଦ୍ର ଶୂରଦେଓ ସେତେବେଳେ ଥିଲେ ବେଶ୍ ଖ୍ୟାତିମାନ୍ ଲେଖକ ଓ କଳାକାର । ରାସଲୀଳା ଅଭିନୟରେ ତାଙ୍କର ଥିଲା ଅପୂର୍ବ ଦକ୍ଷତା ଓ ସେଥିପାଇଁ ସେ ନିଜସ୍ୱ ଏକ ରାସଦଳ ମଧ୍ୟ ସଂଗଠିତ କରିଥିଲେ ।

ନିମାଇଁ ଚରଣଙ୍କର ବଡ଼ବାପା ଥିଲେ ଶ୍ୟାମ ସୁନ୍ଦର ନରେନ୍ଦ୍ର ଓ ତାଙ୍କର କନ୍ୟାଙ୍କୁ ବିବାହ କରିଥିଲେ ଶୂରଦେଓ । ସେ ଦୃଷ୍ଟିରୁ ଶୂରଦେଓଙ୍କ ସହ ନିମାଇଁ ଚରଣଙ୍କର ପରିଚୟ ଓ ସଂପର୍କ ଥିଲା ପାରିବାରିକ ଓ ସଂପ୍ରୀତିପୂର୍ଣ୍ଣ । କଟକ ରହଣି କାଳରେ ଏହି ସଂପର୍କ-ସୂତ୍ର ଅଧିକ ସୁଦୃଢ଼ ହେଲା ଓ ନିମାଇଁ ଚରଣ ଯୋଗ ଦେଲେ ଶୂରଦେଓଙ୍କ ରାସ ଦଳରେ । ମାଲି-ମକଦ୍ଦମା ଜନିତ ବିପତ୍ତି ଅନ୍ତରାଳରୁ ହିଁ ଉଦ୍ଭାସିତ ହୋଇଉଠିଲା ତାଙ୍କ ପ୍ରତିଭା-ସ୍ଫୁରଣର ପ୍ରଥମ ଉଷା ଅଭ୍ୟୁଦୟ । ସେତେବେଳକୁ ତାଙ୍କର ବୟସ ମାତ୍ର ୧୭ ବର୍ଷ । ଶୂରଦେଓଙ୍କ ରାସ ଦଳରେ ଯୋଗ ଦେଇ ଯେଉଁ ଅଭିଜ୍ଞତା ସେ ଅର୍ଜନ କରିଥିଲେ, ତାହା ପରବର୍ତ୍ତୀ କାଳରେ ମଧ୍ୟ ବହୁ ଭାବରେ ତାଙ୍କୁ ସାହାଯ୍ୟ କରିଥିଲା । ୧୯୨୮ ମସିହାରେ ମୋହନ ସୁନ୍ଦର ଗୋସ୍ୱାମୀଙ୍କ ରାସ ଦଳରେ ଯୋଗ ଦେବା ତନ୍ମଧ୍ୟରୁ ମୁଖ୍ୟ ଓ ଅନ୍ୟତମ ।

ଗୋବିନ୍ଦ ଚନ୍ଦ୍ର ଶୂରଦେଓଙ୍କ ରାସଦଳରୁ ଅବ୍ୟାହତି ନେଇ କିଛିକାଳ ପରେ ପୁନଶ୍ଚ କେନ୍ଦ୍ରାପଡ଼ା ଫେରିଥିଲେ ନିମାଇଁ ଚରଣ । ସେତେବେଳେ ହିନ୍ଦୁସ୍ଥାନୀ ସଙ୍ଗୀତର ପ୍ରସିଦ୍ଧ ଓସ୍ତାଦ ଥିଲେ ମାଧୋ ରାଓ । ନିମାଇଁ ଚରଣଙ୍କର ଦୁର୍ନିବାର ଆଗ୍ରହ ଦେଖି ସେ ତାଙ୍କୁ ସଙ୍ଗୀତ-ଶିକ୍ଷା ଦେବାକୁ ସମ୍ମତ ହୋଇଥିଲେ । ନିମାଇଁ ଚରଣ ତାଙ୍କ ଠାରୁ ସଙ୍ଗୀତ ଶିକ୍ଷା କଲେ ଓ ସ୍ୱଳ୍ପ ସମୟ ମଧ୍ୟରେ ଅଭୂତ ପାରଦର୍ଶିତା ଲାଭ କରିଥିଲେ ।

ରାମ ଦାସ ନାମକ ଜଣେ ବାବାଜୀଙ୍କ ସହ ସେତେବେଳକୁ ତାଙ୍କର ପରିଚୟ ହୋଇ ସାରିଥିଲା । ରାମ ଦାସ ଥିଲେ ସ୍ନେହୀ, ଉଦାର ଓ ସଙ୍ଗୀତାନୁରାଗୀ । ସେଥିପାଇଁ ନିମାଇଁ ଚରଣଙ୍କ ପ୍ରତି ତାଙ୍କର ଥିଲା ଆନ୍ତରିକ ଅନୁରାଗ । ସେତେବେଳେ କଲିକତା କେବଳ ବୈଷୟିକ ବିଷୟମାନଙ୍କର ନୁହେଁ, ସଙ୍ଗୀତ-ସାହିତ୍ୟ-ସଂସ୍କୃତିର ମଧ୍ୟ ଏକ ଅପ୍ରତିଦ୍ୱନ୍ଦ୍ୱୀ ପୁଣ୍ୟ ପୀଠ ଥିଲା । ବାବାଜୀ ରାମ ଦାସ ନିମାଇଁ ଚରଣଙ୍କୁ ଥରେ କଲିକତା ନେଇଗଲେ । କଲିକତାରେ ସେ ସମୟର ବହୁ ପ୍ରସିଦ୍ଧ ସଙ୍ଗୀତବିତଙ୍କ ସହ ପରିଚୟ ଓ ସମ୍ପର୍କ ହେଲା ନିମାଇଁ ଚରଣଙ୍କର ଓ ସଙ୍ଗୀତ ଶିକ୍ଷା ପାଇଁ ସେ କେତେକ ସପକ୍ଷ ସୁଯୋଗ ପାଇଲେ । ସେତେବେଳକୁ ସେ ୨୦ ବର୍ଷର ନବ ଯୁବକ । ମାତ୍ର ୨୦ ବର୍ଷ ବୟସରେ ଏକାଧାରରେ ଅନେକ ଗୁଡ଼ିଏ କଳାରେ ଧୁରୀଣ ହୋଇ ଉଠିବା ବ୍ୟକ୍ତି ସେତେବେଳେ ଖୁବ୍ କମ୍ ଥିଲେ ଆମ ରାଜ୍ୟରେ ।

ଜମିଜମା ନେଇ ମାମଲା-ମକଦ୍ଦମା ଲାଗି ରହିଥାଏ ସେମିତି । କ୍ରମେ ଉତ୍କଟ ଆକାର ମଧ୍ୟ ଧାରଣ କରୁଥାଏ । ଘନେଇ ଆସୁଥାଏ ଦାରୁଣ ଦୁର୍ବିପାକ । ଜମିଦାରୀ ବିକ୍ରୀ ହୋଇ ଯାଉଥାଏ ଗୋଟିଏ ପରେ ଗୋଟିଏ । ଏଇ ଆସନ୍ନ ଦୁର୍ବିପାକ ମଧ୍ୟରେ, ୧୯୨୪ ଏପ୍ରିଲ୍‌ରେ ଆଠଗଡ଼ ରାଜପରିବାରର ଶ୍ରୀନାଥ ସାମନ୍ତରାୟଙ୍କ ଏକମାତ୍ର କନ୍ୟା ଲକ୍ଷ୍ମୀପ୍ରିୟାଙ୍କ ସହ ବିବାହ ସମ୍ପନ୍ନ ହେଲା ନିମାଇଁ ଚରଣଙ୍କର । ଏହି ବିବାହ ସହ ଜମିଦାରୀ ବିକ୍ରୀ ବା ଆର୍ଥିକ ଅସ୍ୱଚ୍ଛଳତାର କୌଣସି ଆପାତତଃ ସମ୍ପର୍କ ଅବଶ୍ୟ ନାହିଁ ; ବରଂ ଲକ୍ଷ୍ମୀପ୍ରିୟା ଥିଲେ ଆଦର୍ଶ ଗୃହିଣୀ, ଗୃହଲକ୍ଷ୍ମୀ । ଜୀବନର ଅନ୍ତିମ ମୁହୂର୍ତ୍ତ ପର୍ଯ୍ୟନ୍ତ ସୁଦୀର୍ଘ ୬୦ ବର୍ଷ ଧରି ନିମାଇଁ ଚରଣଙ୍କର ସେ ଥିଲେ ନିରଳସ ସାଥୀ ଓ ନର୍ମଦାୟିନୀ । ସମସ୍ତ ପାରିବାରିକ ଅସ୍ୱଚ୍ଛଳତା ମଧ୍ୟରେ ବି ଐଶ୍ୱର୍ଯ୍ୟ-ଲାଳିତା ଲକ୍ଷ୍ମୀପ୍ରିୟା ଥିଲେ ଅନମନୀୟା । ସେତେବେଳେ ସେ ହିଁ ଥିଲେ ମୁଖ୍ୟ ପ୍ରେରଣା-ଉତ୍ସ ନିମାଇଁ ଚରଣଙ୍କର । ପରବର୍ତ୍ତୀ କାଳରେ ସେ ଗାଇଥିବା—"ସୁଖଦୁଃଖ ଦୁଇ ସହୋଦର ଭାଇ, ଉଭୟ ମଧ୍ୟରେ ଦୁଃଖ ସିନା ସାର..." ଗୀତଟି ଯେ ଶୁଣିଥିବେ ତାହା କେତେ ଜୀବନାନୁଭୂତ ଓ ଜୀବନାଶ୍ରୁ-ରସାଣିତ ତାହା ଏଥିରୁ ଉପଲବ୍ଧି କରିପାରିବେ ।

କିନ୍ତୁ ଘରର ଗତି ବଡ଼ ବିଚିତ୍ର । କ୍ରମେ ଦୁରବସ୍ଥା ଓ ଅସ୍ୱଚ୍ଛଳତା ଏପରି ଉତ୍କଟ ହୋଇ ପଡ଼ିଲା ଯେ, ଭରଣ-ପୋଷଣର ଅନ୍ୟ ଉପାୟ ନ ଦେଖି ନିମାଇଁ ଚରଣ କଟକ ଚାଲିଆସିଲେ । ସେତେବେଳେ ବ୍ରଜକିଶୋର ଦାସଙ୍କ ପୁଅମାନେ କଟକରେ ଏକ ବସ୍ ସର୍ଭିସ୍ କରି ବ୍ୟବସାୟ କରିବାର ଯୋଜନା କରୁଥାନ୍ତି । ନିମାଇଁ ଚରଣ ସେମାନଙ୍କ ସହିତ ଜଣେ ଅଂଶୀଦାର ଭାବେ ଯୋଗ ଦେଇ ବ୍ୟବସାୟ ଆରମ୍ଭ କଲେ । ସୁଯୋଗ ପାଇ ବସ୍ ଚାଳନା (ଡ୍ରାଇଭିଂ) ମଧ୍ୟ ଶିଖି ନେଲେ । ଯେଉଁ ଅଙ୍ଗୁଳି ପାପୁଲି ଓ ହାତ ଦିନେ ହାରମୋନିୟମ୍‌ରେ ସୁର ତୋଳୁଥିଲା ବା ତାବଲା ସଙ୍ଗତ କରୁଥିଲା — ସେ ହାତ ସେ ପାପୁଲି ଧରିଲା ଷ୍ଟିଅରିଂ, ହର୍ଣ୍ଣ ଓ ଗିଅର୍ । ତାହା କୁଟୁମ୍ବ ପୋଷଣ ପାଇଁ ବୃତ୍ତିଟିଏ ଥିଲା ମାତ୍ର, କିନ୍ତୁ ହୃଦୟ-ବୃତ୍ତି ସେଥିରେ ନ ଥିଲା । ତଥାପି ମଧ୍ୟ, ଏ ଯାନ୍ତ୍ରିକ ଜୀବନକୁ କ୍ରମେ ସ୍ୱୀକାର କରି ନେଉଥିଲେ ନିମାଇଁ ଚରଣ । ମାତ୍ର ବିଧି ନିୟନ୍ତାଙ୍କର ବୋଧହୁଏ ସେ ଇଚ୍ଛା ନ ଥିଲା । ବ୍ୟବସାୟରେ ମିଳିଲା କ୍ରମାଗତ ଅସାଫଲ୍ୟ ଓ କ୍ଷତି । ଅସଫଳ ନିମାଇଁ ଚରଣ ତଥାପି ହତୋତ୍ସାହ ହୋଇ ନ ଥିଲେ । ଆଉ କେତେକ ଛୋଟମୋଟ ବ୍ୟବସାୟରେ ହାତ ଦେଲେ । ମାତ୍ର ବାଣିଜ୍ୟ-ଲକ୍ଷ୍ମୀ ତଥାପି ପ୍ରସନ୍ନା ହେଲେ-ନାହିଁ ।

ବ୍ୟବସାୟରେ ଅଭିଜ୍ଞତା ଆଦୌ ନ ଥିଲା । ମାତ୍ର ନିଜର ସ୍ୱର ଓ ସଙ୍ଗୀତ-ଦକ୍ଷତା ସମ୍ପର୍କରେ ଅଭିଜ୍ଞତା ଓ ପ୍ରଚୁର ଆତ୍ମବିଶ୍ୱାସ ଥିଲା ନିମାଇଁ ଚରଣଙ୍କର । ସେଇ ଅଭିଜ୍ଞତା ଓ ଆତ୍ମବିଶ୍ୱାସ ତାଙ୍କୁ ପ୍ରେରଣା ଯୋଗାଇଲା । ସେ ସଙ୍ଗୀତ-ଶିକ୍ଷକର ବୃତ୍ତିରେ କୁଟୁମ୍ବ ପରିପୋଷଣ କରିବାକୁ ମନସ୍ଥ କଲେ । ଆଜିକାଲି ପରି ସେତେବେଳେ ଉଚ୍ଚବଂଶୀୟା ମାନଙ୍କର ସଙ୍ଗୀତ ଶିକ୍ଷା ଏକ ଆଭିଜାତ୍ୟ ବା ଅହମିକା ନ ଥିଲା—ଥିଲା ମର୍ଯ୍ୟାଦା ଓ ସମ୍ଭ୍ରାନ୍ତ୍ୟ । ତେଣୁ ନିଷ୍କଲଙ୍କ ନିମାଇଁ ଚରଣଙ୍କ ପାଇଁ ଅନୁକୂଳ ପରିବେଶର ଅଭାବ ହେଲା ନାହିଁ । ସାମାନ୍ୟ ପ୍ରଚେଷ୍ଟାରେ ହିଁ ସେ ପ୍ରଫେସର ପ୍ରାଣକୃଷ୍ଣ ପରିଜା, ଡ଼କ୍ଟର ଅତିବଲ୍ଲଭ ମହାନ୍ତି ଓ ନିତ୍ୟାନନ୍ଦ କାନୁନ୍‌ଗୋ ପ୍ରଭୃତିଙ୍କ ପରିବାରରେ ସେମାନଙ୍କ କନ୍ୟାମାନଙ୍କର ସଙ୍ଗୀତ ଶିକ୍ଷକ ହୋଇଗଲେ । ଏହି ନୂତନ ନିଯୁକ୍ତି ଓ ଜୀବିକାରୁ ତାଙ୍କୁ ମାସିକ ପ୍ରାୟ ୧୫୦ ଟଙ୍କା ପର୍ଯ୍ୟନ୍ତ ମିଳି-

ଯାଉଥିଲା । ସେତେବେଳେ ଦେଢ଼ଶହ ଟଙ୍କା କିଛି କମ୍ ନ ଥିଲା ଓ ଏଥିରେ ସେ ସ୍ୱଚ୍ଛଳରେ ଚଳିବାକୁ ଲାଗିଲେ । ଯୁଗଳେ ଲକ୍ଷ୍ମୀ ଓ ସରସ୍ୱତୀଙ୍କର ଏଇ ଯେଉଁ ପ୍ରଥମ କରୁଣା ତାଙ୍କ ପ୍ରତି ହେଲା—ତା' ପରଠାରୁ ସେ କେବେହେଲେ ସେହି କରୁଣା ଦୃଷ୍ଟିରୁ ବଞ୍ଚିତ ହୋଇ ନାହାନ୍ତି ।

୧୯୩୩ — ନିମାଇଁ ଚରଣଙ୍କ ଜୀବନର ଏକ ଗୁରୁତ୍ୱପୂର୍ଣ୍ଣ ଓ ସ୍ମରଣୀୟ ସମ୍ବତ୍ସର । ଏ ସମୟକୁ ନିମାଇଁ ଚରଣ କିଛିଟା ଖ୍ୟାତି ଅବଶ୍ୟ ପାଇସାରିଲେଣି—ମାତ୍ର ଅଧିକତର ଖ୍ୟାତି ଓ ପ୍ରତିଷ୍ଠା ପାଇଁ ଦ୍ରୁତ ପ୍ରଚାରଶୀଳ ଯେଉଁ ଗଣ-ମାଧ୍ୟମ—ତାହା ତାଆଁ ଅଛି ଅପହଞ୍ଚ । ଠିକ୍ ଏହିପରି ଏକ ସମୟରେ ଦାଦା ଗୋକୁଳ ଚନ୍ଦ୍ର ଶ୍ରୀଚନ୍ଦନ ଓ ହିଜ୍ ମାଷ୍ଟର୍ସ ଭଏସ୍‌ର ଗ୍ରାମ୍‌ଫୋନ୍ ବ୍ୟବସାୟୀ ମ୍ୟାନ୍ ବାବୁ ତାଙ୍କର କେତୋଟି ନିର୍ବାଚିତ ଓଡ଼ିଶୀ ସଙ୍ଗୀତ ଓ ଜଣାଣ 'ରେକର୍ଡ଼' କରାଇଲେ ।

୧୧-୬-୧୯୩୩ରେ ହିଜ୍ ମାଷ୍ଟର୍ସରେ ସେ ରେକର୍ଡ଼ କରିଥିଲେ ତାଙ୍କର ପ୍ରଥମ ଗୀତ—'ବଉଳକୁ ଆଲିଙ୍ଗନ....' ଗୀତଟି ଥିଲା କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କର ପ୍ରସିଦ୍ଧ କାବ୍ୟ 'ବୈଦେହୀଶ ବିଳାସ'ର ଏକ ବହୁ ଚର୍ଚ୍ଚିତ କାବ୍ୟାଂଶ । ଜାହ୍ନବୀର ସ୍ରୋତଧାରା ସଦୃଶ ଥିଲା ସେ ସଙ୍ଗୀତର ପୂତ ପ୍ଲାବନ । ତାହା ଉତ୍କଳୀୟଙ୍କ ପାପ-ତାପ-ଦଗ୍ଧ ମସ୍ତିଷ୍କ-ମାନଙ୍କର ମନୋଭୂମିର ପାପ-ତାପ କେବଳ କ୍ଷାଳିତ ଓ ପ୍ରଶମିତ କଲା ନାହିଁ—ନିମାଇଁ ଚରଣଙ୍କ ପାଇଁ ବହୁ ପ୍ରସିଦ୍ଧି ମଧ୍ୟ ଆଣିଦେଲା । ତା'ର ଅଳ୍ପ କିଛି କାଳ ପରେ ୧୯୩୪ ମସିହାରେ ସେ ଆକାଶବାଣୀ କଲିକତାରୁ ଓଡ଼ିଆ ସଙ୍ଗୀତ ଗାଇବା ପାଇଁ ଅମନ୍ତ୍ରଣ ପାଇଲେ । ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ ସେହିବର୍ଷ ଏକ ଛାନ୍ଦ-ସଙ୍ଗୀତ ପ୍ରତିଯୋଗିତାର ଆୟୋଜନ କରାଯାଇଥିଲା । ସେଥିରେ ଭାଗ ନେଇ ନିମାଇଁ ଚରଣ ଜିତିଲେ ପ୍ରଥମ ପୁରସ୍କାର ଓ ଗଜପତି ମହାରାଜାଙ୍କ ସ୍ୱର୍ଣ୍ଣପଦକ । ପରେ ୧୯୩୭ ରେ ଉତ୍କଳ ସଙ୍ଗୀତ ସମାଜ ପକ୍ଷରୁ ଆୟୋଜିତ ଓଡ଼ିଶୀ ସଙ୍ଗୀତ ପ୍ରତିଯୋଗିତାରେ ମଧ୍ୟ ସେ ପ୍ରଥମ ସ୍ଥାନ ଅଧିକାର କରି ସ୍ୱର୍ଣ୍ଣପଦକ ଜିତିଥିଲେ ।

ଓଡ଼ିଶାର ପାରମ୍ପରିକ ସଙ୍ଗୀତ—ଭଜନ, ଜଣାଣ, ଛାନ୍ଦ, ଚମ୍ପୂ ଆଦି ହିଁ ଥିଲା ନିମାଇଁ ଚରଣଙ୍କ ଗାୟନର ପରିସର । ସେ ସେହି ପରିଧି ବା ସୀମାରେଖା ସ୍ୱୀୟ ଜୀବନ କାଳ ମଧ୍ୟରେ ଥରେ ହେଲେ ମଧ୍ୟ ଲଙ୍ଘନ କରି ନାହାନ୍ତି । କାରଣ ସେ ଖୁବ୍ ଭଲ ରୂପେ ଜାଣିଥିଲେ ଓ ତାଙ୍କର ଧ୍ରୁବ ଧାରଣା ଥିଲା ଯେ—ଏହି ଭଜନ, ଜଣାଣ, ଛାନ୍ଦ, ଚମ୍ପୂ ଆଦି ଓଡ଼ିଶାର ଅନନ୍ୟ ବୈଶିଷ୍ଟ୍ୟ ଓ ବଳିଷ୍ଠ ଏବଂ ଏ ସବୁ ସହିତ ଅତି ଘନିଷ୍ଠ ଓ ଅବିଚ୍ଛେଦ୍ୟ ଭାବେ ସଂଶ୍ଳିଷ୍ଟ ଅଛି ଉତ୍କଳୀୟର ନିଜସ୍ୱ ହୃଦୟ ଓ ମନୋଭୂମି । ତେଣୁ ସେ ଥିଲେ ଓଡ଼ିଆ ଜାତିର ନିଜସ୍ୱ ସଙ୍ଗୀତ କଳାର ଅପୂର୍ବ ସାଧକ । ଏହା ଉପଲବ୍ଧି କରି ହିଜ୍ ମାଷ୍ଟର୍ସ ଭଏସ୍ ଗ୍ରାମ୍-ଫୋନ୍ କମ୍ପାନୀର କର୍ମକର୍ତ୍ତାମାନେ ୧୯୪୩ରେ ତାଙ୍କୁ 'ବାଣୀକଣ୍ଠ' ଉପାଧିରେ ଭୂଷିତ କଲେ । ତା'ପରେ ମଧ୍ୟ ପ୍ରାୟ ୩୫ ବର୍ଷରୁ ଊର୍ଦ୍ଧ୍ୱ କାଳ ଧରି ସେ ହିଜ୍ ମାଷ୍ଟର୍ସ ଭଏସ୍‌ରେ ରେକର୍ଡ଼ ଦେଇ ଆସିଛନ୍ତି ।

ଯେଉଁ ବର୍ଷ ହିଜ୍ ମାଷ୍ଟର୍ସ ଭଏସ୍ ଗ୍ରାମ୍‌ଫୋନ୍ କମ୍ପାନୀ ତାଙ୍କୁ 'ବାଣୀକଣ୍ଠ' ଉପାଧିରେ ଭୂଷିତ କଲେ, ସେହି ବର୍ଷ ବିଶ୍ୱବିଧାତା ତାଙ୍କ କପାଳରେ ଯେ ରାଜଯୋଗ ଲେଖିଥିଲେ, ତାହା ନିମାଇଁ ଚରଣ ନିଜେ ବି ଜାଣି ନ ଥିଲେ । ସେତେ-ବେଳର ଅଠଗଡ଼ ରାଜା ଥିଲେ କଳାପ୍ରିୟ, କାବ୍ୟାମୋଦୀ ଓ ସଙ୍ଗୀତାନୁରାଗୀ । ସେତେବେଳକୁ ବାଣୀକଣ୍ଠଙ୍କ ସୁଲଳିତ ସ୍ୱର ଝଙ୍କାର ସମଗ୍ର ରାଜ୍ୟରେ ଏପରି ପ୍ରଚାରିତ ହୋଇଥିଲା ଯେ, ତାହା ତାଙ୍କ ଶ୍ରୁତିପଥ ଏଡ଼ାଇ ପାରି ନ ଥିଲା । ବାଣୀକଣ୍ଠ-ଙ୍କର ଭାବୋଚ୍ଛ୍ୱାସ ପୂର୍ଣ୍ଣ ସଙ୍ଗୀତମାନ ତାଙ୍କୁ ଅତ୍ୟନ୍ତ ମୁଗ୍ଧ କରିଥିଲା । ନିମାଇଁ ଚରଣଙ୍କର କଣ୍ଠସ୍ୱର ଉତ୍କଳର ସଙ୍ଗୀତ-ଜଗତରେ ଥିଲା ସମ୍ପୂର୍ଣ୍ଣ ଅନନ୍ୟ ଓ ଅସାଧାରଣ । ଅନୁରାଗ, ଆବେଦନ ଓ ଭାବୋଚ୍ଛ୍ୱାସ କେବଳ ନୁହେଁ; ଭକ୍ତିମଧୁର ଓ ଆଧ୍ୟାତ୍ମିକ ଥିଲା ସେ ସ୍ୱରର ମନ୍ଦ୍ର-ମଧୁର ଉଚ୍ଚାରଣ । ଉଚ୍ଚାରଣର ପ୍ରଥମ ଶବ୍ଦଟିରୁ ହିଁ ସେ ସ୍ୱରର ବୈଶିଷ୍ଟ୍ୟ ବାରି ହୋଇ ପଡୁଥିଲା । ତେଣୁ ଅଠଗଡ଼ର ତତ୍କାଳୀନ ସଂଗୀତାନୁରାଗୀ ରାଜା ତାଙ୍କୁ କାଳବିଳମ୍ବ ନ କରି 'ରାଜ ସଙ୍ଗୀତଜ୍ଞ' ପଦରେ ନିଯୁକ୍ତି ଦେଲେ ଓ ତାଙ୍କ ପାଇଁ ୧୦୦ ଏକର କୃଷିବାଡ଼ି ଜମି ଖଞ୍ଜା କରିବା ସହିତ ମାସିକ ୬୦ ଟଙ୍କା ଭତ୍ତାର ବ୍ୟବସ୍ଥା କରିଥିଲେ । ଏହି ଅପ୍ରତ୍ୟାଶିତ ପ୍ରାପ୍ତି ପରେ ସପରିବାର ଅଠଗଡ଼ରେ ଅବସ୍ଥାନ କଲେ ନିମାଇଁ ଚରଣ । ( ଅଠଗଡ଼ରେ ସେ

ରହୁଥିବା ଘର 'ବାଣୀକଣ୍ଠ ଭବନ' ନାମରେ ଆଜି ମଧ୍ୟ ସୁପ୍ରସିଦ୍ଧ ।)

୧୯୪୮ ମସିହା ଡିସେମ୍ବର ୨୮ ତାରିଖ । କଟକ ବେତାର କେନ୍ଦ୍ରର ସଙ୍ଗୀତ ଶିଳ୍ପୀ ଭାବେ ନିମାଇଁ ଚରଣ ଗାଇଲେ ତାଙ୍କର ପ୍ରଥମ ଗୀତ—"ଶ୍ରୀରାଧା ବାତୁଳୀ ପ୍ରେମ ରତ୍ନ ତୁଳୀ, ଯେନ ଚିହ୍ନାର ଗ୍ରାହକ ମାନେ ..।" କହିବା ବାହୁଲ୍ୟ, ଚିହ୍ନାର ଗ୍ରାହକମାନେ ସେତିକିବା ଆଉ ବାକି ନ ଥିଲେ ସେତେବେଳକୁ । ଗୀତଟି ଥିଲା ବିଦଗ୍ଧ କବି ଅଭିମନ୍ୟୁ ସାମନ୍ତ ସିଂହାରଙ୍କ 'ବିଦଗ୍ଧ ଚିନ୍ତାମଣି' କାବ୍ୟର ତ୍ରିହିଷ ଅଂଶ ବିଶେଷ । ପ୍ରାସଙ୍ଗିକ ଉଲ୍ଲେଖ ଆବଶ୍ୟକ ଯେ, ଅଭିମନ୍ୟୁ ସାମନ୍ତସିଂହାର ରାଧାଶ୍ୟାମ ନରେନ୍ଦ୍ରଙ୍କ ଭଗିନୀ ବିମଳାଦେବୀଙ୍କୁ ବିବାହ କରିଥିଲେ ଓ ସେ ଦୃଷ୍ଟିରୁ ବାଣୀକଣ୍ଠ ଥିଲେ ତାଙ୍କର ପରିବାର-ସମ୍ପର୍କୀୟ । ଏହା ଅବଶ୍ୟ ଏକ ମୁଖ୍ୟ କାରଣ ନୁହେଁ—ମାତ୍ର, ସମ୍ପୂର୍ଣ୍ଣ ଅସ୍ୱୀକାର କରି ହେବ ନାହିଁ ଯେ, ବାଣୀକଣ୍ଠ ସ୍ୱୀୟ ଜୀବନ-କାଳ ମଧ୍ୟରେ ଯେଉଁ ସବୁ ଶୁଦ୍ଧ ସଂଗୀତ ଗାଇଥିଲେ—ସେଥିରୁ ମୁଖ୍ୟତଃ ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ, କବିସୂର୍ଯ୍ୟ, ଅଭିମନ୍ୟୁ, ବନମାଳି ପ୍ରମୁଖଙ୍କ ରଚନା ଓ ତାହା କଣ୍ଠ-ଧ୍ୱନିରେ ବର୍ଣ୍ଣାନୁରାଗ ପ୍ରଚଳିତ । ସେତେବେଳର ଦିନମାନଙ୍କରେ ଏହି ସବୁ ରାଗ ସଙ୍ଗୀତ, ଛାନ୍ଦ, ଚମ୍ପୂ ଆଦିର ପ୍ରଭାବ ଥିଲା ଅତ୍ୟନ୍ତ ଓ ତାହାର ଗ୍ରାହକତା ଥିଲା ସର୍ବତ୍ର । ବେତାର ଶ୍ରୋତାମାନେ ନିମାଇଁ ଚରଣଙ୍କୁ ଆଦରର ସହିତ ଦେଇଥିଲେ । କହିବା ବାହୁଲ୍ୟ, ନିମାଇଁ ଚରଣଙ୍କର କଳାକାର ପ୍ରତିଭା ଓ ପରବର୍ତ୍ତୀ ଜୀବନରେ ମଧ୍ୟ ଯେଉଁ ପ୍ରସିଦ୍ଧି, ତାହା 'ରାଜ-ସଙ୍ଗୀତଜ୍ଞ' ହେତୁ ବା ଗଜପତି ମହାରାଜାଙ୍କ ସ୍ୱର୍ଣ୍ଣପଦକ ଜିତିବା ହେତୁ ନୁହେଁ—ତାହା ମୁଖ୍ୟତଃ ହିଜ୍ ମାଷ୍ଟର୍ସ ଭଏସ୍ ଗ୍ରାମଫୋନ୍ ରେକର୍ଡ଼ କମ୍ପାନୀ ଓ ଆକାଶବାଣୀର ସଙ୍ଗୀତ ଶିଳ୍ପୀ ହୋଇଥିବା ହେତୁ ।

୧୯୫୯ ରେ ପ୍ରଯୋଜିତ ହେଲା ଓଡ଼ିଆ ଚଳଚ୍ଚିତ୍ର 'ଶ୍ରୀଜଗନ୍ନାଥ' । ସେତେବେଳକୁ ଭକ୍ତି-ସଙ୍ଗୀତ-ଗାୟନରେ ନିମାଇଁ ଚରଣଙ୍କର ପ୍ରସିଦ୍ଧି ଥିଲା ଅସାମାନ୍ୟ । ତେଣୁ କର୍ମକର୍ତ୍ତାମାନେ ନିମାଇଁ ଚରଣଙ୍କୁ ସାଦର ଆମନ୍ତ୍ରଣ କରାଇଲେ ଗୀତ ଦୋଟିଏ ଦୁଇଟି ଗାଇବାକୁ । ପ୍ରକୃତ ପକ୍ଷେ—କେବଳ ସିନେମାରେ ଗାଇବା କଥା ହୋଇଥିଲେ ହୁଏତ ନିମାଇଁ ଚରଣ ନାସ୍ତି ବାଣୀ ଶୁଣାଇ ଦେଇଥାନ୍ତେ—ମାତ୍ର ସ୍ୱୟଂ ନୀଳାଦ୍ରି ବିହାରୀ ଜଗତପତି ଶ୍ରୀଜଗନ୍ନାଥଙ୍କ ମହିମା ବ୍ୟାଖ୍ୟାନ ଉଦ୍ଦେଶ୍ୟରେ ନିର୍ମିତ ଚଳଚ୍ଚିତ୍ର—ତେଣୁ ଅସ୍ୱୀକାର ଉପାୟ ନାହିଁ ? ସେଦିନ ନିମାଇଁ ଚରଣ 'ଶ୍ରୀଜଗନ୍ନାଥ' ଚଳଚ୍ଚିତ୍ର ପାଇଁ ଯେଉଁ ଜଣାଣ ଦୁଇଟି ଗାଇଥିଲେ ତାହା ସେତେବେଳେ (ବିଗତ ୩୬ବର୍ଷ ତଳେ) ଯେଉଁ ଚମକ ସୃଷ୍ଟି କରିଥିଲା—ଆଜି ବି ଶୁଣିଲେ ହୃଦୟରେ ସେହି ଚମକ ସୃଷ୍ଟି ହୁଏ । ସେଇ ଜଣାଣ ଦୁଇଟିରୁ ଗୋଟିଏ ହେଉଛି—'ନୀଳ ସିନ୍ଧୁ ତୀରେ ନୀଳ ଅଚଳ...' ଓ ଅନ୍ୟଟି ଚକାଡୋଳ କିମ୍ପା ଡ଼ାକ...।"

କାକା କାଲେଲକରଙ୍କର ପ୍ରଶଂସାପତ୍ର ଠାରୁ ପଦ୍ମଶ୍ରୀ ପ୍ରାପ୍ତି ପର୍ଯ୍ୟନ୍ତ ସମୟ ଓ ସୌଭାଗ୍ୟ—ନିମାଇଁ ଚରଣଙ୍କର ଚଉଠ ଶତାବ୍ଦୀର ସମ୍ମାନ-ପ୍ରସିଦ୍ଧିର ଇତିହାସ । ୧୯୫୦—ସେ ବର୍ଷ ଅନୁଗୋଳରେ ଅନୁଷ୍ଠିତ ହୋଇଥାଏ ସର୍ବୋଦୟ ସମ୍ମିଳନୀ । କାକା କାଲେଲକର ଉପସ୍ଥିତ ଥା'ନ୍ତି ସେ ସମ୍ମିଳନୀରେ । ନିମାଇଁ ଚରଣ ସେଠାରେ ନିଜସ୍ୱ ସ୍ୱଭାବ-ସୁଲଭ ସ୍ୱରରେ କେତୋଟି ସଙ୍ଗୀତ ଗାଇଲେ । ସେ ଜଣାଣ କାକା କାଲେଲକରଙ୍କୁ ଏପରି ମୁଗ୍ଧ ଚକିତ କରିଦେଲା ଯେ ସେ ତାଙ୍କୁ ଉଚ୍ଛ୍ୱସିତ ପ୍ରଶଂସା କେବଳ କରି ନ ଥିଲେ—ଲିଖିତ ପ୍ରଶଂସାପତ୍ର ମଧ୍ୟ ପ୍ରଦାନ କରିଥିଲେ । ୧୯୪୯ ରେ ରିଜୋଲ୍ୟୁସନ ଅନୁଯାୟୀ 'ଉତ୍କଳ ନୃତ୍ୟ ସଙ୍ଗୀତ ନାଟ୍ୟକଳା ପରିଷଦ'ର ନାମ ପରିବର୍ତ୍ତିତ ହୋଇ ତା ୧୪ । ୯ । ୫୭ରେ ପ୍ରତିଷ୍ଠିତ ହେଲା 'ଓଡ଼ିଶା ସଙ୍ଗୀତ ନାଟକ ଏକାଡ଼େମୀ' । ଏହି 'ଉତ୍କଳ ନୃତ୍ୟ ସଙ୍ଗୀତ ନାଟ୍ୟକଳା ପରିଷଦ' ୨୪ । ୬ । ୧୯୫୨ ପ୍ରତିଷ୍ଠା ହୋଇଥିଲା ଓ ନିମାଇଁ ଚରଣ କିଛି କାଳ ଥିଲେ ତା'ର ସାଧାରଣ ପରିଷଦ ସଦସ୍ୟ । ୧୯୫୪ ରେ ଭାରତୀୟ ସଙ୍ଗୀତ ନାଟକ ଏକାଡ଼େମୀ ଶୁଦ୍ଧ ସଙ୍ଗୀତରେ ଅସାମାନ୍ୟ ଅବଦାନ ପାଇଁ ତାଙ୍କୁ ସମ୍ବର୍ଦ୍ଧିତ କଲେ । ୧୯୬୩ ରେ ଜାମସେଦପୁରର ଉତ୍କଳ ବାନ୍ଧବ ସମିତି, ପ୍ରବାସୀ ସାହିତ୍ୟ ଚକ୍ର, ଗୋଲମୁରି ଉତ୍କଳ ସମାଜ ତାଙ୍କୁ ଅଭିନନ୍ଦିତ କରିଥିଲେ । ପ୍ରଜାତନ୍ତ୍ର ପ୍ରଚାର ସମିତି ୧୯୬୬ ବିଷୁବ ମିଳନରେ ସଙ୍ଗୀତଜ୍ଞ ଭାବେ ତାଙ୍କୁ ବିଶେଷ ସମ୍ମାନ ଦେଲେ ଓ ତା'ର ଠିକ୍ ୧୦ ବର୍ଷ ପରେ ୧୯୭୬ରେ ଜନନରକ୍ୟ ଅବସରରେ ତାଙ୍କୁ ଭୂଷିତ କଲେ ରାଷ୍ଟ୍ରପତି-

ପ୍ରଦତ୍ତ 'ପଦ୍ମଶ୍ରୀ' ଉପାଧିରେ । ୧୯୭୮-୭୯ରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ କଣ୍ଠସଙ୍ଗୀତ ପାଇଁ ତାଙ୍କୁ ପୁରସ୍କୃତ ମଧ୍ୟ କଲେ । ଏହିସବୁ ସମ୍ମାନ ସମ୍ବର୍ଦ୍ଧନା ଓ ପୁରସ୍କାର ଈଶ୍ୱରଙ୍କର ତାଙ୍କ ପ୍ରତି ଅଯାଚିତ କରୁଣା ବୋଲି ସେ ମନେ କରୁଥିଲେ । ତେଣୁ କ୍ରମାଗତ ଭାବେ ଏତେଗୁଡ଼ିଏ ସମ୍ମାନ ସମ୍ବର୍ଦ୍ଧନା ଓ ପୁରସ୍କାର ତାଙ୍କୁ ଅହଂ-ସଚେତନ ଓ ଅହଂକାରୀ ନ କରି କରିଥିଲା ଅଧିକ ନମ୍ର ଓ ଉଦ୍‌ବେଗତ । ଏପରିକି ୧୯୮୦ ମସିହା ଅଗଷ୍ଟ ୮ ତାରିଖ ସନ୍ଧ୍ୟା ୭ ଘଣ୍ଟା ସମୟରେ ଶ୍ରୀରାମଚନ୍ଦ୍ର ଭବନରେ ତାଙ୍କର ପ୍ରତିକୃତି ଉନ୍ମୋଚନ ହେବା ବେଳେ ମଧ୍ୟ ସେ ଥିଲେ ସମ୍ପୂର୍ଣ୍ଣ ପ୍ରତିକ୍ରିୟାହୀନ ସ୍ୱାଭାବିକ ।

ହିଜ ମାଷ୍ଟର୍ସ ଭଏସ୍‌ରେ ସେ ରେକର୍ଡ କରିଥିବା ଗୀତ ସଂଖ୍ୟା ୧୨୦ଟି ରୁ ବେଶି । ସେ ଗୀତ ବାଧିରେ ଗାଉ ନଥିଲେ । ଗୀତ ଥିଲା ତାଙ୍କର ଜୀବନ । ଏଇ ଗୀତ ଗାଇବାର ଅଦମ୍ୟ ଇଚ୍ଛା ତାଙ୍କୁ ଗୀତିକାର କରିଥିଲା । ସେ ଗାଉଥିବା ଗୀତଗୁଡ଼ିକ ମଧ୍ୟରୁ ଅନେକ ଗୁଡ଼ିଏ ସ୍ୱରଚିତ । ସେଗୁଡ଼ିକ ମଧ୍ୟରେ ମଣିମା ! ତୁମ୍ଭ ଶ୍ରୀମୁଖ ଚାହିଁଲେ ମଣିମା···, ଆହେ ଚକା ଆଖି..., ମହାପ୍ରଭୁ ! କମ୍ପା ନ ଶୁଣ ଡାକ ··, ଚକା ନୟନ ହେ ପ୍ରଭୁ ଜଗଜୀବନ..., ପ୍ରଭୁ ! ଗୁହାରି ହେଉ ମୋ ଘେନା...ପ୍ରଭୃତି ପ୍ରସିଦ୍ଧ । ସମଗ୍ର ଜୀବନ ତାଙ୍କର ସଙ୍ଗୀତ ପାଇଁ ଥିଲା ଉତ୍ସର୍ଗୀକୃତ । ବ୍ୟବସାୟରେ ବିଫଳ ହେବା ପରେ ସେଇ ସେଦିନ ଯେ ସେ ସଙ୍ଗୀତକୁ ଜୀବିକା ଭାବରେ ଗ୍ରହଣ କରିଥିଲେ, ତା' ପରଠାରୁ କେବେ ପଛକୁ ଫେରି ଚାହିଁ ନାହାନ୍ତି, ବରଂ 'ଜୀବିକା' ସ୍ତରରୁ ସଙ୍ଗୀତ ତାଙ୍କ ପାଇଁ ଉନ୍ନତ ହୋଇ ହୋଇଯାଇଛି 'ଜୀବନ' । ୧୯୬୦ ରେ ସେ ସସ୍ତ୍ରୀକ ଆସି ଅବସ୍ଥାନ କଲେ ପୁରୀ ମାଟିମଣ୍ଡପ ସାହିରେ ଓ ହେଲେ ଶ୍ରୀଜଗନ୍ନାଥଙ୍କର ଏକନିଷ୍ଠ ଚାମର ସେବକ । ଏଣିକି ତାଙ୍କର ମାତ୍ର ଦୁଇଟି ଅଭିଳାଷ ଥିଲା ନୀଳାଦ୍ରୀନାଥଙ୍କ ଶ୍ରୀଛାମୁରେ । ସେଥିରୁ ଗୋଟିଏ ହେଉଛି—'କାଳିଆ କାହ୍ନୁ ! ଆଉ ବିଳମ୍ବ କର କାହିଁକି ?' ଓ ଅନ୍ୟଟି 'ପ୍ରଭୁ ହେ ! ଗୀତ ଗାଉ ଗାଉ ଜୀବନ ଯାଉ ।' ଅତୀବ ବିସ୍ମୟଜନକ ଯେ ମୃତ୍ୟୁର ମାତ୍ର ସାତଦିନ ପୂର୍ବରୁ ୧୯୮୩ ମସିହା ଜୁଲାଇ ୧୨ ତାରିଖ ମଙ୍ଗଳବାର ଶ୍ରୀଗୁଣ୍ଡିଚା ଦିନ ଶ୍ରୀକ୍ଷେତ୍ରର ବଡ଼ଦାଣ୍ଡରେ ସରକାରଙ୍କ ଲୋକ ସଂପର୍କ ବିଭାଗ ଦ୍ୱାରା ଆହୂତ ହୋଇ ସେ ଗାଇଥିଲେ ତାଙ୍କର ଏଇ ଦ୍ୱିତୀୟ ଗୀତ—'ପ୍ରଭୁ ହେ ! ଗୀତ ଗାଉ ଗାଉ ଜୀବନ ଯାଉ ।' କାରଣ, ଜୀବନରେ ଆଉ କିଛି ପ୍ରାପ୍ତି ନ ଥିଲା—ଆଉ କିଛି ଅପୂର୍ଣ୍ଣତା ନ ଥିଲା । ଯେ ପୂର୍ଣ୍ଣାତ୍ ପୂର୍ଣ୍ଣମାଦାୟ ପୂର୍ଣ୍ଣବ୍ରହ୍ମ, ତାଙ୍କ ସେବକର ଆଉ ପ୍ରାପ୍ତି ବା କ'ଣ ! ଅପୂର୍ଣ୍ଣତା ବା କେଉଁଟି ! !

୧୯୮୩ ମସିହା ଜୁଲାଇ ୧୯ ତାରିଖ ମଙ୍ଗଳବାର । ରଥ ଫାଙ୍ଗିଲେ ବାହୁଡ଼ା ଦଶମୀ । ପୂର୍ବ ଦିନ ଅନ୍ୟ ସବୁଦିନ ପରି ପାହାନ୍ତାରୁ ଉଠିଥିଲେ କୃମାଇଁ ଚରଣ । ଅଗଣାରେ ପାଣିକଳ । କଳେ ପାଣିକଳ ମାତ୍ର ସବୁଦିନ ପରି ସ୍ନାନାଦି ସମାପନ କରି ଶ୍ରୀଛାମୁକୁ ଆସିଥିଲେ ମଙ୍ଗଳ ଆଳତି ଦର୍ଶନ ପାଇଁ । ସବୁଦିନ ପରି ସେଇ ସ୍ୱାଭାବିକ ଚାଲି । ହାତରେ ଚାମର ଓ ତେଜବର ଯଷ୍ଟି । କଣ୍ଠରେ ଶୁଭ୍ର ଉତ୍ତରୀୟ । ରଥସ୍ଥ ବାମନଙ୍କୁ ଚାହିଁ ଗାଇଥିଲେ ଗୀତଟିଏ—'ବାହୁଡ଼ାଇ ନେବୁ ମୋତେ...।' ତାହା ହିଁ ଥିଲା ତାଙ୍କର ଶେଷ ଗୀତ ।

ଆଉ ବିଳମ୍ବ କଲେ ନାହିଁ କାଳିଆ କାହ୍ନୁ । ବାହୁଡ଼ାଇ ନେଲେ । ସେଇଦିନ ରାତିରେ ଅକସ୍ମାତ୍ ଗ୍ରୀଷ୍ମରେ ଯନ୍ତ୍ରଣା ହେଲା ତାଙ୍କର । ବାହୁଡ଼ା ବିଜୟ ପାଇଁ ଶ୍ରୀଜୀଉମାନେ ପ୍ରସ୍ତୁତ ହେଉଥିଲା ବେଳେ ପରମଧାମ ପ୍ରାପ୍ତ ହେଲେ ସେ ।

ମର ଶରୀରକୁ ରଖା ଯାଇଥିଲା ବାହୁଡ଼ା ବିଜେ ଆରମ୍ଭ ହେବା ପର୍ଯ୍ୟନ୍ତ । ଶ୍ରୀଜୀଉମାନେ ନବଦିନ ଯାତ୍ରା ପରେ ଯେତେବେଳେ ଫେରୁଥିଲେ ଶ୍ରୀମନ୍ଦିରର ରତ୍ନବେଦୀ ଅଭିମୁଖେ—ଠିକ୍ ସେତିକବେଳେ ତାଙ୍କର ମର ଶରୀରକୁ ନିଆ ଯାଉଥିଲା ମହୋଦଧି ତୀରସ୍ଥ ସ୍ୱର୍ଗଦ୍ୱାରକୁ ଅନ୍ତିମ ସଂସ୍କାର ପାଇଁ ।

ତାଙ୍କର ଜୀବନ ଥିଲା ଓଡ଼ିଶାର ନିଜସ୍ୱ ପାରମ୍ପରିକ ସଙ୍ଗୀତର ଦୀର୍ଘ ଅର୍ଦ୍ଧ ଶତାବ୍ଦୀର ଇତିହାସ । ସ୍ୱୀୟ ଏହି ଅର୍ଦ୍ଧ ଶତାବ୍ଦୀର ଜୀବନ କାଳ ମଧ୍ୟରେ ସେ ଓଡ଼ିଆ ସଙ୍ଗୀତର ବୈଶିଷ୍ଟ୍ୟ ଅତି ମର୍ଯ୍ୟାଦା ସମ୍ପନ୍ନ ଭାବରେ ରକ୍ଷା କରିଥିଲେ । ଅଧିକନ୍ତୁ ସେ ଥିଲେ ଭକ୍ତ । ଈଶ୍ୱର ପ୍ରୀତି ସେପରି ଅସୀମ ଓ ଉତ୍ତରିତ ନ ହୋଇଲେ ଇଚ୍ଛାମୃତ୍ୟୁ ଲାଭ ହୁଏ ନାହିଁ । ସେ ବାହୁଡ଼ାରେ ବାହୁଡ଼ି ଯିବା ସ୍ଥୂଳ ଦୃଷ୍ଟିରେ ଏକ ଆକସ୍ମିକ ଯୋଗାଯୋଗ ହେଲେ ମଧ୍ୟ, ସୂକ୍ଷ୍ମ ବିବେଚନା କହେ ଯେ—ଏହା ଏକାଧାରରେ ଇଚ୍ଛାମୟଙ୍କ ଇଚ୍ଛା ଓ ଇଚ୍ଛାମୃତ୍ୟୁ ।

ମାର୍ଫତ୍ - କ୍ୱାଲିଟ୍ ପ୍ରେସ୍
ଭୁବନେଶ୍ୱର ।





୧୯୭୦ ମସିହାରେ ବାଣୀକଣ୍ଠ ନମାଇଁ ହରଚଂଦନ ଓ ତାଙ୍କ ସହଧର୍ମିଣୀ ଶ୍ରୀମତୀ ଲକ୍ଷ୍ମୀପ୍ରିୟା

# ନମେଇଁ ଜନା

## ଶ୍ରୀମତୀ ବୀଣା ଦେବୀ

ମୋର ଗୀତ ଗାଇବା—ଠିକ୍ କେବେଠାରୁ ଆରମ୍ଭ ହୋଇଥିଲା, ଆଜି ସେ କଥା ମୋର ଆଉ ମନେ ନାହିଁ। କିନ୍ତୁ ଏ ପର୍ଯ୍ୟନ୍ତ ମଧ୍ୟ ପରିଷ୍କାର ମନେ ଅଛି ସେ ଦିନ କଥା—ଯେଉଁ ଦିନ ମୁଁ ପ୍ରଥମେ ଆବିଷ୍କାର କଲି ଯେ, ମୁଁ ଗୀତ ଭଲ ପାଏ। ସଂଗୀତ ପ୍ରତି ମୋର ରହିଛି—ଗୋଟାଏ ଅହେତୁକ, ସ୍ୱାଭାବିକ, ସ୍ୱତଃସିଦ୍ଧ ଆକର୍ଷଣ।

ସେ ଦିନ ଗୀତ ଶୁଣିବାକୁ ଏବଂ ଶିଖିବାକୁ ଯାଇ—ମୁଁ ବଞ୍ଚିତ ହୋଇଥିଲି ପ୍ରଥମ ଥର ପାଇଁ। ଆଜି ସିନା ବୁଝିଛି—ଯେ କୌଣସି ବସ୍ତୁ ପାଇବାକୁ ହେଲେ, ତା' ବଦଳରେ କିଛି ଦେବାକୁ ହୁଏ। ସେଦିନ ସେ କଥା ବୁଝି-ବାର ବୟସ ହୋଇ ନଥିଲା। ପାଞ୍ଚ କି ଛ' ବର୍ଷ ବୟସରେ ଥିଲି ବି, ମୁଁ ଯେଉଁ ଆଗ୍ରହ ନେଇ ଗୀତ ଶୁଣିବାକୁ ଯାଇ-ଥିଲି ଆଜି ଏତେ ବର୍ଷ ପରେ ବି ସେ କଥା ଭୁଲିନି। ଆଉ ସେ ଦିନ ସେ ଗୀତ ମୋତେ ସେହିଭଳି ଗଭୀର ଭାବରେ ଆକୃଷ୍ଟ କରିଥିଲା—ତା' ମଧ୍ୟ ଆଜି ବି ଭୁଲିନି।

ଅତି ଆଗ୍ରହରେ, ଗ୍ରାମୋଫୋନ୍‌ର ସବୁଠୁ ପାଖକୁ ଯାଇ, ଗୀତଟି ଖୁବ୍ ଭଲ ଭାବରେ ଶୁଣିବାକୁ ଇଚ୍ଛା କରି-ସେଦିନ ମୁଁ ଲାଖି ରହିଥିଲି ସେ ଗ୍ରାମୋଫୋନ୍ ରେକର୍ଡଟି ଉପରେ ବାମୁଣ୍ଡିଆ ପଡ଼ି ଯାଇଥିଲି। ରେକର୍ଡଟି ଭାଙ୍ଗି-ଗଲା—ମଝିରୁ ଦୁଇଫାଳ ହୋଇ। କୌଣସି ମନ୍ଦ ଉଦ୍ଦେଶ୍ୟ ନ ଥାଇ କାମଟି କରିଥିଲି ବି, ଅତି ଆକସ୍ମିକ ସେଭଳି ଏକ ଦୁର୍ଘଟଣାର ଶିକାର ହେଲା ସେ ଯେଉଁ ରେକର୍ଡଟି, ସେଇଟି ଥିଲା ମୋର ଭଳି, ମୋ ପରିବାରର ଅନେକଙ୍କର ଅତି ପ୍ରିୟ ଶିଳ୍ପୀଙ୍କର—ଅତ୍ୟନ୍ତ ଲୋକପ୍ରିୟ ଗୋଟିଏ ଗୀତ। ଫଳରେ ଯାହା ହେବା କଥା, ସେଇଆ ହେଲା। ଜାଣିଶୁଣି ଭାଙ୍ଗି ନ ଥିଲେ ବି ଘରର ଅନ୍ୟ ସବୁରି ଭଳି ଘଟଣାଟି ମୋ ପାଇଁ ମଧ୍ୟ ଅତ୍ୟନ୍ତ ଦୁଃଖଦାୟକ ହୋଇ ଥିଲେ ବି—ମୋତେ ଦୋଷୀସାବ୍ୟସ୍ତ କରାଗଲା ଏବଂ ଶାସ୍ତି ପାଇବାକୁ ହେଲା। ବେଶ୍ କିଛିଟା ଗାଳିମନ୍ଦ ଏବଂ ସେଥିସହ ଉତ୍ତମ ମଧ୍ୟମ ଗୋଇଠା, ଚିମୁଟା ଓ କାନମୋଡ଼ା—ସେ ସବୁ ସହ୍ୟ କରିବାକୁ ହୋଇଥିଲା।

ଅଭିମାନରେ ମନ ଭରି ଯାଇଥିଲା ବୋଲି, ସେଦିନ ଶପଥ କରିଥିଲି—ଜୀବନରେ ଅନ୍ୟାନ୍ୟ ଅନେକ ଥର ଭଳି—ନାଁ, ସାରା ଜୀବନ ଆଉ ଗୀତ ଶୁଣିବିନି, ଶିଖିବିନି କି ଗାଇବିନି। ଆଉ ଜୀବନରେ ଅଗଣିତ ବାର ଘଟି ଥିଲା ଭଳି—ସେ ଦିନର ଶପଥ ବି ରକ୍ଷା କରି ପାରି ନ ଥିଲି। କାରଣ ସେ ଥିଲା ଗୀତ—ଯାହା ଶିଖିବା, ଶିଖାଇବା, ଲେଖିବା, ସ୍ୱର କରିବା, ବୋଲିବା ଓ ବୋଲାଇବା—ମୋ ଜୀବନର ସବୁଠାରୁ ସୁଖମୟ ଅନୁଭୂତି।

ସେଦିନ ଯାହାର ଗୀତର ରେକର୍ଡ ଭାଙ୍ଗିବାରୁ ମୋର ସେ ଭଳି ଦୁର୍ଦ୍ଦଶା ହୋଇଥିଲା—ସେ ଥିଲେ ନମେଇଁ-ବାବୁଙ୍କର ଗୀତ—"ଭିନ୍ନେ ଆଜି ତୋ ଘଟରେ"—ଗୀତର ରେକର୍ଡ। ସେ କାଳରେ ଏବଂ ତା'ର ବହୁତ ପର ପର୍ଯ୍ୟନ୍ତ ଗ୍ରାମୋଫୋନ ରେକର୍ଡ କହିଲେ, ନମେଇଁ ବାବୁଙ୍କ ରେକର୍ଡ ଏବଂ ଓଡ଼ିଆ ଗୀତ କହିଲେ—ନମେଇଁ ବାବୁଙ୍କ ଗୀତକୁ ବୁଝାଉଥିଲା।

ନମେଇଁବାବୁ ସବୁ ପ୍ରକାରର ଗୀତ ଗାଉଥିଲେ ବୋଲି—ବିଭିନ୍ନ ପ୍ରକାରର ଶ୍ରୋତା ସେତେବେଳେ ତାଙ୍କର ଭକ୍ତ ଥିଲେ। ଓଡ଼ିଶୀ, ଚମ୍ପୂଠାରୁ ଆରମ୍ଭ କରି—ଛାନ୍ଦ, କୋଇଲି, ଭଜନ, ପଲ୍ଲୀଗୀତ ସମସ୍ତ ପ୍ରକାରର ଓଡ଼ିଆ ଗୀତ ନମେଇଁବାବୁ ଗାଉଥିଲେ। ସୁତରାଂ ଶିକ୍ଷିତ, ଅଶିକ୍ଷିତ, ସହରୀ ଗାଉଁଲି, ବୟସ୍କ, କମ୍ ବୟସ୍କ ସବୁ ପ୍ରକାରର ଶ୍ରୋତା ତାଙ୍କ ଗୀତ ଶୁଣି ମୁଗ୍ଧ ହେଉଥିଲେ।

ଏଭଳି ଲୋକପ୍ରିୟତାର କାରଣ ଥିଲା—ନମେଇଁ-ବାବୁଙ୍କ ଗୀତର ବୈଶିଷ୍ଟ୍ୟ। ସେ ଯେଉଁ ଗୀତ ଗାଉଥିଲେ;

ଯେଉଁ ସ୍ୱର ସବୁ ବ୍ୟବହାର କରୁଥିଲେ, ସେ ଗୁଡ଼ିକ ଥିଲା ଖାଣ୍ଟି ଓଡ଼ିଆ ଗୀତ, ଓଡ଼ିଆ ସ୍ୱର । ଓଡ଼ିଶାର ପାଣି ପବନରେ ସେ ସବୁ ଯୁଗଯୁଗ ଧରି ମିଶି ରହିଥିଲା । ନିମେଇଁବାବୁ ତାକୁ ନେଇ, ନିଜସ୍ୱ ପ୍ରତିଭା ବଳରେ ତାକୁ ମାର୍ଜିତ କରି— ସୁନ୍ଦର କରି, ନିଜର ଗୀତ ମାଧ୍ୟମରେ ଶ୍ରୋତାମାନଙ୍କ ପାଖରେ ତାକୁ ପହଞ୍ଚାଇ ଥିଲେ । ନିଜର ସୁଲଳିତ କଣ୍ଠସ୍ୱର ଥିଲା-ଏ ଦିଗରେ ତାଙ୍କର ସବୁଠାରୁ ବଡ଼ ସହାୟକ ।

ଯେଉଁ ଗୀତ, ଯେଉଁ ସ୍ୱର—ପାଖ ଆଖରେ, ନିତିପ୍ରତି ଶୁଣା ଯାଉଥିଲା, କହିବାକୁ ଗଲେ ତାହା ଆମ ସବୁରି ରକ୍ତରେ ଏକ ପ୍ରକାର ମିଶି ଯାଇଥିଲା—ନିମେଇଁ ବାବୁ ତାରି ପୁନରୁଦ୍ଧାର କରି ଉପହାର ଦେଲେ ଓଡ଼ିଶାର ଶ୍ରୋତାଙ୍କୁ । ପୁଣି—ନିମେଇଁବାବୁଙ୍କ ଗୀତ ଏଭଳି ଲୋକପ୍ରିୟ ହେଲା ଯେ, ରାସ୍ତାର ଯୋଗୀ ଭିକାରୀଙ୍କ ଠାରୁ ଆରମ୍ଭ କରି ସମ୍ଭ୍ରାନ୍ତ ପରିବାରର ଗୃହାଙ୍ଗନରେ ମଧ୍ୟ, ସେ ସବୁ ଗୀତ, ସେ ସ୍ୱର ଗୁଞ୍ଜି ଉଠିଲା ।

ଅନେକ ଦିନରେ—ପରିଚୟ ହେଲା ନିମାଇଁ ଚରଣ ହରିଚନ୍ଦନ ନାମକ ଭଦ୍ରଲୋକଙ୍କ ସହିତ । ସଂଗୀତ ଦୁନିଆର ସ୍ୱଳ୍ପରୁ ଲାଗି ସେ ଥିଲେ "ନିମେଇଁ ନନା" । ନିମେଇଁବାବୁ ଆକାଶବାଣୀର ବିଶିଷ୍ଟ କଳାକାର, ନିୟମିତ ଭାବରେ ଗୀତ ଗାଇବାକୁ ଷ୍ଟେସନ ଷ୍ଟୁଡ଼ିଓକୁ ଆସୁଥିଲେ । ଯେଉଁଦିନ ସେ ଗୀତ ଗାଇବାକୁ ବା ରେକର୍ଡ଼ କରିବାକୁ ଷ୍ଟୁଡ଼ିଓକୁ ଆସୁଥିଲେ, ସେଦିନ ଷ୍ଟୁଡ଼ିଓରେ ଭିଡ଼ ଜମି ଯାଉଥିଲା । ପିଅନ୍ ଭଙ୍ଗୀ ପାନ ଅଭ୍ୟାସ ଥିବା ଅର୍ମିଷ୍ଟ ଗ୍ରୁପ୍‌ରେ ସବୁରିକ ଆପ୍ୟାୟିତ କରୁଥିଲେ ନିମେଇଁ ନନା । ସମସ୍ତେ ଅପଣାର, ସତେ ଯେମିତି ସମସ୍ତେ ତାଙ୍କର ପରିବାରର ।

ଶୁଣିଛି—ନିମେଇଁ ବାବୁ ପ୍ରକୃତରେ ମଧ୍ୟ ଅତ୍ୟନ୍ତ ସମ୍ଭ୍ରାନ୍ତ ପରିବାରର ଲୋକ । ତେବେ ବ୍ୟକ୍ତିଗତ ଭାବରେ ଯେ ତାଙ୍କର ସଂସ୍ପର୍ଶରେ ଆସିଛି, ସେ ଏ କଥା ମୁକ୍ତ କଣ୍ଠରେ କହିବ ଯେ—ନିମେଇଁ ବାବୁଙ୍କ ବ୍ୟବହାର, ଚାଲି ଚଳନ କେବଳ ଭଦ୍ର ବା ଅମାୟିକ ଥିଲା ବୋଲି କହିଲେ, ଯଥେଷ୍ଟ ହେବନି । ଏତେ ଲୋକପ୍ରିୟତା ତାଙ୍କୁ ଆହୁରି ବିନୟୀ କରିଥିଲା, ଆହୁରି ମଧୁର କରିଥିଲା ତାଙ୍କ କଥାବାର୍ତ୍ତା । ତୁଏତ ସେଇଥିଲା ତାଙ୍କର ସମ୍ଭ୍ରାନ୍ତ ପରିବାରର ପ୍ରଭାବ ।

ଜଣେ କଳାକାର ଭାବରେ, ନିମେଇଁ ବାବୁ ଓଡ଼ିଶାରେ କି ଭଳି ପ୍ରତିଷ୍ଠାର ଅଧିକାରୀ—ସେ କଥା କାହାକୁ ଅଜଣା ନୁହେଁ । ନିମେଇଁ ବାବୁ ତୁଏତ ସୌଖୀନ କଳାକାର ନ ଥିଲେ, ତୁଏତ କଳା ହିଁ ଥିଲା ତାଙ୍କର ପେଶା, ଜୀବନର ବୃତ୍ତି । କିନ୍ତୁ ପେଶାଦାର କଳାକାର ଜୀବନର ଅନ୍ଧାରୁଆ ଦିଗଟା ସହିତ କେଜାଣି କାହିଁକି—ତାଙ୍କୁ ଆଦୌ ସଂଶ୍ଳିଷ୍ଟ କରି ହୁଏନା । କୌଣସି ପ୍ରକାରର ନ୍ୟୂନତା, ହୀନମନ୍ୟତା ବା ପରଶ୍ରୀକାତରତା—ଅତି ସମ୍ଭ୍ରାନ୍ତ ସେ ଲୋକଟି ସହିତ ସଂଯୁକ୍ତ କରି ହୁଏନା । ବରଂ କଳାକାର ଭାବରେ, କଦରେ ଗୋଟିଏ ତନ୍ମୟ, ଉତ୍ସର୍ଗୀକୃତ, ବିନୟାବନତ ଭାବ, ନିମେଇଁ ବାବୁଙ୍କୁ ଦେଖିଲେ ଆଖିରେ ପଡ଼ୁଥିଲା ।

ତନ୍ମୟ ସେ ଥିଲେ—ନିଜର ସଂଗୀତକୁ ନେଇ, କଳାର ଚର୍ଚ୍ଚାରେ, କଳାକାର ଜୀବନର ମହାନୁଭବତାରେ ।

ଉତ୍ସର୍ଗୀକୃତ ଥିଲା—ତାଙ୍କର କଳା, ତାଙ୍କର ସାଧନା, ତାଙ୍କର ଆରାଧ୍ୟ ଦେବତା ମହାପ୍ରଭୁ ଜଗନ୍ନାଥଙ୍କ ନିକଟରେ ।

ବିନୟାବନତ ସେ ଥିଲେ—ଅତି ଗୁଣୀ, ବହୁ ଲୋକପ୍ରିୟତା ଓ ଅନେକ ପ୍ରତିଷ୍ଠାର ଅଧିକାରୀ ହେଲେ ମଧ୍ୟ ।

ସଂଗୀତ ପ୍ରେମୀ ଜଣେ କଳାକାର ଭାବରେ, ଅନ୍ୟ ଗୋଟିଏ ସତ୍ୟ ମୋ ଆଖିରେ ପଡ଼ୁଛି । କେତୋଟି ଗୀତକୁ ନିମେଇଁବାବୁ ଏପରି ଲୋକପ୍ରିୟ କରି ଦେଇଥିଲେ ଯେ, ଯେ ଗୀତ ଗୁଡ଼ିକ ମନକୁ ଆସିଲେ ତାକୁ ଗାଉଥିବା କଣ୍ଠସ୍ୱର କେବଳ ନିମେଇଁ ବାବୁଙ୍କର କଣ୍ଠସ୍ୱର । ଯେ ଗୀତ, ସେହି ସ୍ୱରରେ କାନରେ ବାଜେ । ସେଗୁଡ଼ିକ ନିମେଇଁ-ବାବୁଙ୍କ ଗୀତ ।

ଅନେକ ଦିନ ତଳର ଗୋଟିଏ ଘଟଣା ମନେ ପଡ଼ୁଛି । କୌଣସି ଏକ ସାଂସ୍କୃତିକ ଅନୁଷ୍ଠାନରେ ଜଣେ ଗାଇ ବସିଲେ ଜଣାଟିଏ—"ପତିତ ଜନଙ୍କୁ ଉଦ୍ଧରିବୋ ପାଇଁ, ଉଡାଉ ଅଛ ପତାକା ।" ସାମ୍ନା ଧାଡ଼ିରେ ବସି ମୁଁ ଶୁଣୁଥିଲି—କଣ ଗୋଟାଏ ଶୃଙ୍ଖଳା ଅଛି । ଶିଳ୍ପୀ ନିଭୁ'ଲ ଭାବରେ ସ୍ୱରରେ ତାଳରେ ଗାଉଛନ୍ତି । ସେ ମଧ୍ୟ ଅତି ଜଣାଶୁଣା ଜଣେ କଣ୍ଠଶିଳ୍ପୀ । ତଥାପି କାହିଁକି ଭଲ ଲାଗୁ ନ ଥିଲା, କ'ଣ ଗୋଟାଏ ଅଭାବ ହେଲେ ଭଲ ଲାଗୁଥିଲା । ଅଥଚ—ଠିକ୍ କରି ପାରୁ ନ ଥିଲି ଗୋଳମାଳଟା ଠିକ୍ କୋଉଠି ।

ଏତିକି ବେଳେ, ପଛ ଧାଡ଼ିର ଜଣେ ଭଦ୍ରମହିଳାଙ୍କ କଥା କାନରେ ପଡ଼ିଲା ।

"ଇଏତ ନମେଇଁ ବାବୁ ନୁହନ୍ତି ? ସେ ଗଳା କାହିଁ, କୁଆଡ଼େ ଗଲା ସେ ସ୍ପଷ୍ଟ ଉଚ୍ଚାରଣ ?" ମୁଁ ବି ବୁଝିଲି, ଗୀତଟି ଥିଲା ନମେଇଁ ବାବୁଙ୍କ ଗୀତ ।

ହଠାତ୍ ମନକୁ ଆସିଥିଲା କଥାଟା । ଗୀତଟି ନମେଇଁ ବାବୁ ଏ ଭଳି ମନଛୁଆଁ କରି ଗାଉଥିଲେ, ସତେ ଯେମିତି ଗୀତଟି କେବଳ ତାଙ୍କର ଗାଇବା ପାଇଁ । ଅନ୍ୟ କାହା କଣ୍ଠରେ ତା' ଭଲ ଶୁଭିବନି, ମନ ଭିତରର, କାନର ଚିହ୍ନା ସେ ଗୀତର ସ୍ୱର କେବଳ ନମେଇଁ ବାବୁଙ୍କର । ଆଜି ବି କେତୋଟି ଗୀତ ମନେ ପଡ଼ି ଗଲେ—ମନେ ପଡେ ନମେଇଁ ବାବୁଙ୍କ ସ୍ୱରରେ । ସେ ଗୀତ ସତେ ଯେମିତି ତାଙ୍କର ଏକଚାଟିଆ । କେବଳ ସେ ଗାଉଥିଲେ ସେ ଗୀତ, ଅନ୍ୟ ସବୁରି କଣ୍ଠରେ ସେ ହେବ ଖାପ୍ଛଡ଼ା ।

ତାଙ୍କର ଓଡ଼ିଶୀ ହୁଏତ ଶାସ୍ତ୍ରୀୟ ନ ଥିଲା । ତାଙ୍କର ପଲ୍ଲୀଗୀତ, ତାଙ୍କର ଶ୍ରୁତ ଥିଲା ସଂପୂର୍ଣ୍ଣ ଗାଉଁଲି ଗୀତ । ତଥାପି ଗୋଟିଏ ବିଷୟରେ ନମେଇଁ ବାବୁଙ୍କ ନିକଟରେ ଓଡ଼ିଆ ସଂଗୀତ ଋଣୀ ରହିବ ଚିରକାଳ ଲାଗି । ଓଡ଼ିଆ ସଂଗୀତକୁ ଲୋକପ୍ରିୟ କରିବାରେ, ସବୁରି ନିକଟରେ ଆଦରଣୀୟ କରିବାରେ ତାଙ୍କର ଅବଦାନ ଚିରସ୍ମରଣୀୟ ହୋଇ ରହିବ । ତାଙ୍କରି ଯୋଗୁଁ, ଓଡ଼ିଶାର ଘରେ ଘରେ ସୁପରିଚିତ ହେଲା, ଲୋକପ୍ରିୟ ହେଲା, ଖାଣ୍ଟି ଓଡ଼ିଆ ଗୀତ । ଆଜିର ଓଡ଼ିଶାର ସଂଗୀତ ଶିଳ୍ପୀ ଲାଗି ସେ ସୃଷ୍ଟି କରି ଯାଇଛନ୍ତି—ବୃତ୍ତି ଓ ପେଶା ଭାବରେ ସଂଗୀତକୁ ଗ୍ରହଣ କରିବାର ବିଭିନ୍ନ ସୁବିଧା ସୁଯୋଗ ।

ସବୁଠାରୁ ବଡ଼ କଥା ହେଲା, ସମ୍ଭ୍ରାନ୍ତ ପରିବାରର ଲୋକଙ୍କ ଲାଗି ସଂଗୀତ ଚର୍ଚ୍ଚା ଆଜି ଆଉ ଲଜ୍ଜାଜନକ ମନେ କରା ଯାଉନାହିଁ । ଉଚ୍ଚ ବଂଶର ହୋଇ ମଧ୍ୟ ସଂଗୀତ ଶିଳ୍ପୀ ଜୀବନ କଟାଇ ଓଡ଼ିଆ ସଂଗୀତ ପ୍ରେମୀଙ୍କ ନିକଟରେ ସୁପରିଚିତ, ସୁପ୍ରତିଷ୍ଠିତ ନମେଇଁ ବାବୁ ଆମ ସବୁରି ନମସ୍ୟ ।

କେନ୍ଦ୍ର ନିର୍ଦ୍ଦେଶିକା, କଟକ ଦୂରଦର୍ଶନ କେନ୍ଦ୍ର
ତୁଳସୀପୁର, କଟକ

# ଦାଢ଼ୟତା ଭକ୍ତିର ଏକ ଅଧ୍ୟାୟ

ଶ୍ରୀ ଅଭୟ ମହାପାତ୍ର

ନିମାଇଁ ହରିଚନ୍ଦନ ନାମକ ଜଣେ ଭକ୍ତ ବିଂଶ ଶତାବ୍ଦୀରେ ଉତ୍କଳଖଣ୍ଡରେ ବାସ କରୁଥିଲେ । ସେ ଜଗନ୍ନାଥଙ୍କୁ ମୋକ୍ଷର ମାର୍ଗବୋଲି ଗ୍ରହଣ କରିନେଇ ଥିଲେ । ବ୍ୟକ୍ତିଗତ ଜୀବନରେ ଆନ୍ତରିକ ଶୁଦ୍ଧତା ତାଙ୍କର ପ୍ରଥମ ବ୍ରତ ଥିଲା । ସଂସାରୀ ହୋଇଥିଲେ ମଧ୍ୟ ଦୀକ୍ଷା ନେଇ ସେ ପ୍ରଭୁନାମ କୀର୍ତ୍ତନରେ ସମସ୍ତ ଅତିବାହିତ କରୁଥିଲେ । ସେହି ସମୟରେ ଭାରତବର୍ଷରେ ଇଂରେଜ ରାଜତ୍ୱ ଓ ତତ୍ ପରବର୍ତ୍ତୀ ସ୍ୱଦେଶୀ ଶାସନ ଚାଲୁଥିଲା । ଘୋର କଳିକାଳ ହେତୁ ଲୋକେ ଡପ, ଡ୍ରମ୍ସ, ଝାଞ୍ଜ ଇତ୍ୟାଦି ବାଦ୍ୟଧ୍ୱନିରେ ମସ୍ଗୁଲ ରହୁଥିଲେ । ଯୁବକ ଯୁବତୀମାନଙ୍କର ନଗ୍ନ ପ୍ରଣୟ ନିବେଦନ ସଂଗୀତର ବିଷୟବସ୍ତୁ ଥିଲା, ଚିତ୍ରରେ ଯୌନ ଉତ୍ତେଜନା ଆଣିଲି ପରି ସ୍ୱରରେ ଗୀତ ବୋଲା ଯାଉଥିଲା ଓ ଗୋଟିଏ ଷ୍ଟେଜ୍ ର ମଞ୍ଚ ଉପରେ କେତେଗୁଡ଼ିଏ ପୁରୁଷ ଓ ସ୍ତ୍ରୀ ବିଚିତ୍ର ଭଙ୍ଗୀରେ ଅଙ୍ଗଚାଳନା କରି, ଉଜ୍ଜ୍ୱଳ ଆଲୋକ ଜଳାଇ ଏହି ସଂଗୀତ ଗାନ କରୁଥିବା ବେଳେ ହଜାର ହଜାର ଦର୍ଶକ ଓ ଶ୍ରୋତା ତାଙ୍କ ସମ୍ମୁଖରେ ଉତ୍ତେଜନା ଲାଭ ଆଶାରେ ଉଦ୍ଗ୍ରୀବ ହୋଇ ରହିଁ ରହୁଥିଲେ । ସେହି ଘୋର କଳିରେ ନିମାଇଁ ସ୍ୱକୀୟ ଉତ୍କଳୀୟ ରାଗରାଗିଣୀରେ ଖୁବ୍ କମ୍ ବାଦ୍ୟଯନ୍ତ୍ର ବ୍ୟବହାର କରି ଭକ୍ତି ସଂଗୀତ ଗାନ କରୁଥିଲେ । ସେ ସମୟରେ ହିଜ୍ ମାଷ୍ଟର୍ସ ଭଏସ୍ ବୋଲି ଗୋଟିଏ ଗ୍ରାମୋଫୋନ ରେକର୍ଡ଼ କମ୍ପାନୀ ଲକ୍ଷ ଫଳକ ଉପରେ ଶବ୍ଦ ତରଙ୍ଗର ଗ୍ରୁପ ଖୋଳାଇ ଶବ୍ଦର ପୁନରାବୃତ୍ତି କରାଉ ଥିଲେ । ଭାରତରେ ଆକାଶବାଣୀ ପ୍ରଥମ ପ୍ରଚାର ହେବାର ମାତ୍ର ୭ ବର୍ଷ ପରେ ଉକ୍ତ କମ୍ପାନୀ ନିମାଇଁଙ୍କର ସଂଗୀତକୁ ରେକର୍ଡ କରାଇଲେ । ତାହା ବ୍ୟତୀତ ଆକାଶବାଣୀ କଲିକତା ଓ କଟକ କେନ୍ଦ୍ରରେ ନିମାଇଁଙ୍କର ଆକାଶବାଣୀର ନିଜସ୍ୱ ବ୍ୟବହୃତ ହେବା ପାଇଁ କେତେକ ଲାକ୍ଷା ଫଳକ ରେକର୍ଡ଼ ତିଆରି ହୋଇଥିଲା । ରାଜ୍ୟ ସରକାରଙ୍କ ଲୋକସଂପର୍କ ବିଭାଗ ତଦ୍ରୂପ କେତେକ ଗୀତ ରେକର୍ଡ଼ କରାଇଥିଲେ । ସେ ସବୁ ଗୀତର ସଂକଳନ କରାଯାଇ ନାହିଁ । ଉକ୍ତ ଗୀତି ସଂସ୍ଥାକୁ ଓ ଓଡ଼ିଶାର ରେକର୍ଡ଼ପ୍ରେମୀ ଜନସାଧାରଣଙ୍କୁ ଅନୁରୋଧ କରି ତାଙ୍କର ସମସ୍ତ ସଂଗୀତ ତାମ୍ର ଫଳକ ଉପରେ ଖୋଦିତ କରାଗଲେ ତାହା ଭବିଷ୍ୟତ ପାଇଁ ସମ୍ପଦ ହୋଇ ରହିବ ।

ଏହି ରେକର୍ଡ଼ କରାଯାଇ ଥିବା ସଂଗୀତ ବ୍ୟତୀତ ସେ ସହସ୍ରାଧିକ ଭକ୍ତି ସଂଗୀତ ବିଭିନ୍ନ ସ୍ଥାନରେ ଗାନ କରିଥିଲେ । ପୁରୀ ଶ୍ରୀମନ୍ଦିର, କେନ୍ଦ୍ରାପଡ଼ା, ଆଠଗଡ଼ ଓ କଟକର ବଙ୍ଗାଳୀସାହି ମଠରେ ସେ ମୁଖ୍ୟତଃ ପ୍ରଭୁନାମ ସଂକୀର୍ତ୍ତନ କରୁଥିଲେ । ସ୍ୱୀୟ ଭକ୍ତି ପାଇଁ ସେ ଶ୍ରୀମନ୍ଦିରରେ ସେବା ଅଧିକାର ପ୍ରାପ୍ତ ହୋଇଥିଲେ ଓ ପ୍ରତ୍ୟହ ଅବକାଶ ସମୟରେ ପ୍ରଭୁଙ୍କ ସମ୍ମୁଖରେ ଜୀବନର ଶେଷ କେତେବର୍ଷ ନାମକୀର୍ତ୍ତନ କରୁଥିଲେ । ସେ ଗୃହୀ ଓ ପୁତ୍ର କନ୍ୟା ବେଷ୍ଟିତ ହୋଇଥିଲେ ମଧ୍ୟ ବାନପ୍ରସ୍ଥରେ ରହି ଶ୍ରୀକ୍ଷେତ୍ରରେ ପବିତ୍ର ରଥଯାତ୍ରାରେ ପରଲୋକ ଗମନ କଲେ ।

ଶ୍ରୀକ୍ଷେତ୍ରରେ ରହୁଥିବା ସମୟରେ ପ୍ରାତଃ ଜଣାଣ ପରେ ସେ ମନ୍ଦିରରୁ ଗୃହକୁ ଫେରି ନୈଷ୍ଠିକ ବୈଷ୍ଣବମାନଙ୍କ ପରି ବସ୍ତ୍ର ମସ୍ତ ଧରି ଦୈନନ୍ଦିନ ନିତ୍ୟକର୍ମ ସେବା କରୁଥିଲେ । ପ୍ରଭୁଙ୍କର ଅଙ୍ଗଛଡ଼ା ସାମଗ୍ରୀରେ ନିଜକୁ ଭୂଷିତ କରି ଜପ କରୁଥିଲେ, ତିଳକ ଗ୍ରହଣ କରୁଥିଲେ ଓ ପରମଶାସ୍ତ୍ର ଭାଗବତ ପାଠ କରୁଥିଲେ । ଏ ସବୁ ପରେ ସେ ନିଜର ପ୍ରାତଃ ଭୋଜନ କରୁଥିଲେ । ଶ୍ରୀକ୍ଷେତ୍ରରେ ସେ ଯେଉଁ କ୍ଷୁଦ୍ର ଗୃହରେ ରହୁଥିଲେ, ତା'ର ଛାତ ଉପରେ କେତେଗୁଡ଼ିଏ ଆସ୍ବେଷ୍ଟସ୍ ପକାଇ ଗୋଟିଏ ଛୋଟ କୋଠରୀ ନିର୍ମାଣ କରିଥିଲେ । ଦିନେ ଜଣେ ବ୍ୟକ୍ତି ତାଙ୍କୁ ଭେଟିବାକୁ ଗଲାବେଳେ ସେ କହିଲେ, ଯଦି ଶେଷ ଜୀବନରେ ପ୍ରଭୁଙ୍କୁ ଦର୍ଶନ କରିବାକୁ ପାଦ କ୍ଷମ ନ ହୁଏ, ତେବେ ମୁଁ ଏହିଠାରେ ବସି ନୀଳଚକ୍ରର ଦର୍ଶନ କରି ଶେଷ ନିଶ୍ୱାସ ତ୍ୟାଗ କରିବି । କିନ୍ତୁ ପ୍ରଭୁ ତାଙ୍କର

ପାଦ ଦୁଇଟିକୁ ଶେଷଦାନ ପର୍ଯ୍ୟନ୍ତ ଚଳଚ୍ଚିତ୍ର ଦେଇଥିଲେ । ବିଂଶ ଶତାବ୍ଦୀର ଆରମ୍ଭରେ ଅନ୍ୟ ଜଣେ ଭକ୍ତ ଝଣ୍ଡାପଡ଼ାର ବିଶିଷ୍ଟ ବୈଜ୍ଞାନିକ ଚନ୍ଦ୍ରଶେଖର ସିଂହ ସାମନ୍ତ ଶ୍ରୀକ୍ଷେତ୍ରରେ ଏହିପରି ଇହଧାମ ତ୍ୟାଗ କରିଥିଲେ । ନିମାଇଁଙ୍କ ଦ୍ୱାରା ଗାନ କରାଯାଇଥିବା ରେକର୍ଡ ସଂଗୀତ ଗୁଡ଼ିକ ଏହି ପୁସ୍ତକର ଶେଷରେ ସନ୍ନିହିତ କରାଯାଇଛି । ସେଥିରୁ ଯେ କେହି ଜାଣି ପାରିବେ ଯେ ରାମ, କୃଷ୍ଣ ଓ ଜଗନ୍ନାଥଙ୍କ ମହିମା ଗାନରେ ସେ କିପରି ନିଜକୁ ଉତ୍ସର୍ଗୀକୃତ କରିଥିଲେ । ସେତେବେଳେ କେହି କେହି ନିନ୍ଦୁକ କହିବାର ଶୁଣାଯାଏ ଯେ, ଲୋକେ ଯେତେବେଳେ ଅଜ୍ଞାନ ଅନ୍ଧକାରରେ ବୁଡ଼ି ଭଗବତ ବିଶ୍ୱାସୀ ହୋଇଥିଲେ ଓ ପାଶ୍ଚାତ୍ୟ ଶିକ୍ଷା ଲାଭ କରି ନ ଥିଲେ ନିମାଇଁ ତାଙ୍କର ସୁଯୋଗ ନେଇ ରାମ, କୃଷ୍ଣ ଓ ଜଗନ୍ନାଥ ତତ୍ତ୍ୱ ସଂବଳିତ ସଂଗୀତ ଗାନ କରି ଅଧିକ ଅର୍ଥ ଉପାର୍ଜନ କରିଥିଲେ । କିନ୍ତୁ ଯେ ସମୟରେ ଅନ୍ୟାନ୍ୟ ବହୁ ସଙ୍ଗୀତଜ୍ଞ ବଙ୍ଗୀୟ ଶୈଳୀ ଅନୁକରଣ କରି ଦୈହିକ ପ୍ରେମର ଜୟଗାନ କରୁଥିବା ସଂଗୀତ ରେକର୍ଡ କରିଥିଲେ । କେବଳ ନିମାଇଁ ଓ ଅପନ୍ନା ତାଙ୍କର ବ୍ୟତିକ୍ରମ ଥିଲେ । ଆଠଗଡ଼ ରାଜା ନିମାଇଁଙ୍କର ପୃଷ୍ଠପୋଷକତା କରିଥିଲେ ଓ ପାରଳାଖେମୁଣ୍ଡି ମହାରାଜା ଉତ୍କଳର ପ୍ରଧାନମନ୍ତ୍ରୀ କୃଷ୍ଣଚନ୍ଦ୍ର ଗଜପତି ଅପନ୍ନାଙ୍କର ପୃଷ୍ଠପୋଷକତା କରିଥିଲେ ।

ନିମାଇଁ ଓଡ଼ିଶୀ ସଂଗୀତର ପ୍ରବକ୍ତା ବୋଲି ନିଜକୁ କେଉଁଠାରେ ପ୍ରମାଣିତ କରିବାକୁ ଚାହିଁ ନ ଥିଲେ । ଓଡ଼ିଶୀ ଶୈଳୀରେ ଗାଉଛନ୍ତି ବୋଲି କେଉଁଠି କହି ନ ଥିଲେ । କିନ୍ତୁ ୧୯୩୫ ମସିହା ଠାରୁ ତାଙ୍କର 'ବତଳକୁ ଅଲିଙ୍ଗନ' ରେକର୍ଡ ବାହାରିଗଲା ପରେ ଓଡ଼ିଶୀ ଗୀତ, ଚମ୍ପୂ ଇତ୍ୟାଦି ସଂପର୍କରେ ତଥାକଥିତ ପଣ୍ଡିତମାନଙ୍କର ତାତ୍ତ୍ୱିକ ଚର୍ଚ୍ଚା ବନ୍ଦ ହୋଇଗଲା । ସେ ଓ ଅପନ୍ନା ପାଣିଗ୍ରାହୀ ଯେଉଁ ରାଗରାଗିଣୀରେ ଗୀତ ବୋଲିଲେ ତାହା ଓଡ଼ିଶାର ନିଜସ୍ୱ ଶୈଳୀ ବୋଲି ପ୍ରମାଣିତ ହେଲା । ଏହି ପରମପୁରୁଷମାନେ ପ୍ରାଚୀନ ଚଳଣିରେ ଗୃହୀତ ରାଗ ରାଗିଣୀକୁ ସଂପୂର୍ଣ୍ଣ ଅନୁସରଣ କରିଥିଲେ । ବେତାର ଯନ୍ତ୍ର ଓ ରେକର୍ଡ, କ୍ୟାସେଟ୍ ଇତ୍ୟାଦିର ବହୁଳ ପ୍ରଚଳନ ଫଳରେ ଆଜି କୌଣସି ଏକ ସଂସ୍କୃତି ନିଜର ନିଜସ୍ୱ ରକ୍ଷା କରିବା କଷ୍ଟକର ହୋଇଛି । ଉତ୍କଳୀୟ ସଂଗୀତରେ ଅନ୍ୟ ଭାରତୀୟ ସଂଗୀତର ପ୍ରଭାବ ଏବେ ଏଡ଼ି ଦେବା ପାଇଁ ସଂଗୀତଜ୍ଞମାନେ ସମର୍ଥ ହେଉ ନାହାନ୍ତି । ନିମାଇଁ ଗୀତ ବୋଲୁଥିଲେ ମଧ୍ୟ ସଂଗୀତଜ୍ଞ ବୋଲି ପରିଚିତ ହେବାରେ ଗୌରବ ବୋଧ କରୁ ନ ଥିଲେ, ଜଣେ ଭକ୍ତ ରୂପେ ପ୍ରମାଣ ଦେବା ପାଇଁ ସେ ଚେଷ୍ଟା କରୁଥିଲେ । ତଥାପି ୬୦/୮୦ ବର୍ଷ ତଳେ ଯେଉଁ ସବୁ ରାଗରାଗିଣୀ ଓଡ଼ିଶାର ଗାଆଁ ଗହଳରେ ପ୍ରଚଳିତ ଥିଲା, ସେ ସବୁକୁ ଅବିକଳ ଭାବେ ସେ ରେକର୍ଡ କରିଦେଇ ଗଲେ । ସେହି ସଂଗୀତ ରେକର୍ଡ ଯେଉଁଠି ପରିବେଷଣ କରାଯାଉଥିଲା ସେଠାରେ କେବଳ ଉତ୍କଳୀୟ ସଂସ୍କୃତିକୁ ଭଲ ପାଉଥିବା ଭକ୍ତିଭାବାପନ୍ନ ଲୋକେ ବସୁଥିଲେ, କାରଣ ଅନ୍ୟମାନେ ହିନ୍ଦି ଚଳଚ୍ଚିତ୍ର ସଂଗୀତ ନିକଟରେ ଅନଳ ପତଙ୍ଗ ନ୍ୟାୟରେ ଝଟକି ରହୁଥିଲେ ।

ସେ ଓଡ଼ିଆ ଭାଷାକୁ ରକ୍ଷା କରୁଛନ୍ତି ବୋଲି କେବେ ଭାବୁ ନ ଥିଲେ ମଧ୍ୟ ଓଡ଼ିଆ ଭାଷା ସୁରକ୍ଷିତ ହେବା ପାଇଁ ତାଙ୍କର ଅବଦାନ କେବଳ ଉପାନ୍ତ ଅଞ୍ଚଳରେ କାର୍ଯ୍ୟ କରିଥିବା କର୍ମୀମାନେ ଜାଣି ପାରିବେ । ଯେଉଁ ବ୍ୟକ୍ତି ଆଗରେ ନିମାଇଁ ଓ ଅପନ୍ନାଙ୍କର ରେକର୍ଡ ସଂଗୀତ ବଜାଉଥିଲା, ଯେ ଜଣେ ଓଡ଼ିଆ ବୋଲି ଓଡ଼ିଆ, ତେଲୁଗୁ, ବଙ୍ଗାଳୀ ଓ ହିନ୍ଦୁସ୍ଥାନୀ ଲୋକେ ଜାଣିପାରୁ ଥିଲେ । କୋରାପୁଟ ଜିଲ୍ଲା ଜୟପୁର ସହର ମୁଖ୍ୟ-ରାସ୍ତାରେ ଅବସ୍ଥିତ ଆନନ୍ଦ ଷ୍ଟୋରସ୍‌ର ମାଲିକ ୩୦ ବର୍ଷ ତଳେ ପ୍ରଥମରୁ ଏହି ଭଜନ ଓ ଗୀତ ଚମ୍ପୂ

ଇତ୍ୟାଦି ମାଇକ୍ ଯୋଗେ ପ୍ରଚାର କରୁଥିଲେ ନିଜର ଓଡ଼ିଆତ୍ୱ ପ୍ରତିପାଦନ କରିବା ପାଇଁ । କିନ୍ତୁ ଏହା ସତ୍ୟ ଯେ ନିମାଇଁ ନିଜକୁ ବୈଷ୍ଣବ ରୂପରେ ପରିଚୟ ଦେବାକୁ ଯେତେ ସ୍ୱୀକାର ମଣୁଥିଲେ, ସଂଗୀତଜ୍ଞ ଅବା ଓଡ଼ିଆ ସଂସ୍କୃତିର ମୂଳାଧାର ରୂପେ ପରିଚିତ ହେବାକୁ ସେତେ ଇଚ୍ଛୁକ ନ ଥିଲେ । ୧୯୭୮ ମସିହାରେ କୋରାପୁଟ ସହରର ସୁବିଶାଳ ଜଗନ୍ନାଥ ମନ୍ଦିର ପ୍ରତିଷ୍ଠା ଉତ୍ସବରେ ଯୋଗ ଦେବା ପାଇଁ ସେ ନିମନ୍ତ୍ରିତ ହୋଇ ଯାଇଥିଲେ । ପୁରୀର ଗଜପତି ମହାରାଜା ଓ ପଣ୍ଡିତ ସଦାଶିବ ରଥଶର୍ମାଙ୍କ ସହ ନିମାଇଁ ଏହି ଉତ୍ସବରେ ଯୋଗ ଦେଇଥିଲେ । ଉତ୍କଳ ମାତା ଓ ଶ୍ରୀ ଜଗନ୍ନାଥଙ୍କ ସେବାର ଏହା ଶ୍ରେଷ୍ଠ ନିଦର୍ଶନ ।

ଉତ୍କଳଖଣ୍ଡରେ ନିମାଇଁଙ୍କର ଅନେକ ଭକ୍ତ ଅଛନ୍ତି । ଜଣେ ଗୁଣମୁଗ୍ଧ ବ୍ୟକ୍ତି ଉଚ୍ଚ ରକ୍ତଚାପ ରୋଗରେ ପୀଡ଼ିତ ହୋଇ ତାଙ୍କୁ ସାକ୍ଷାତ୍ କରିବାକୁ ଯାଇଥିଲା । ତା'ର କୁଶଳ ଜିଜ୍ଞାସା କରନ୍ତେ ସେ ରୋଗ ବିଷୟରେ କହିଲା । ନିମାଇଁ ଉତ୍ତର ଦେଲେ, ତୁମେ ପ୍ରତ୍ୟେକ ଦିନ ଏକାଦଶ ସ୍କନ୍ଧର ଗୋଟିଏ ଲେଖାଏଁ ଅଧ୍ୟାୟ ପଢ଼, ତୁମର ରକ୍ତଚାପ ସମ ଅବସ୍ଥାକୁ ଆସିଯିବ । ସେ ବ୍ୟକ୍ତି ଅକ୍ଷରେ ଅକ୍ଷରେ ତାହା ପାଳନ କରି ଅଶେଷ ଉପକୃତ ହୋଇଥିଲା । ଏହିପରି ବହୁ କଥା ତାଙ୍କ ଜୀବନର ଅନୁଭୂତି ।

ଉତ୍କଳବାସୀ ତାଙ୍କର ସମସ୍ତ ରେକର୍ଡ଼କୁ ତାମ୍ର ଫଳକରେ ଲିପିବଦ୍ଧ କରାଇବେ ବୋଲି ସଂକଳ୍ପ କରିଛନ୍ତି ।

ଡିଲତେଲେଙ୍ଗା ବଜାର,

୪୬-୯

# ବାହୁଡ଼ାରେ ଘର ବାହୁଡ଼ା

## ଶ୍ରୀମତୀ ମନୋରମା ମହାପାତ୍ର

ଶ୍ରୀକ୍ଷେତ୍ରରେ ପତିତପାବନ ଯାତ୍ରାର ଆଦ୍ୟ ଦିବସ ପ୍ରଖ୍ୟାତ ରଥଯାତ୍ରା । ଧବଳ, ଶାନ୍ତ ଭକ୍ତିରସରେ ଗଦ୍‌ଗଦ ହାସ୍ୟଦୀପ୍ତ ଉଦାରମୁଖ । ୮୬ ବର୍ଷର ବୃଦ୍ଧ । ଶ୍ୟମର ହସ୍ତରେ ତିନିରଥ ପାଖେ ଭକ୍ତିନମ୍ର ପ୍ରଣାମ କରି ଛୁଟି ଆସୁଛନ୍ତି ସୂଚନା ମଣ୍ଡପକୁ ।

ଦୀନବନ୍ଧୁ ଗୋପବନ୍ଧୁଙ୍କ ସ୍ମୃତିକୁଟୀରର ପାଦଦେଶରୁ ରଥ ଉପରେ ଜଗା ଚକାଡ଼ୋଳାଙ୍କ ଉଜ୍ଜ୍ୱଳ କଳା ଉଜ୍ଜ୍ୱଳ ନେତ୍ର ଦୁଇଟି ଦାଉଦାଉ ଝଟକି ଉଠି ବିଭୋର କରୁଛି ଦର୍ଶକ ମଣ୍ଡଳୀକୁ । ସେହି ଅପରୂପ ଅରୂପକୁ ଚାହିଁ ପ୍ରଭୁଙ୍କ ନାମ କୀର୍ତ୍ତନ କରୁଛନ୍ତି ଭକ୍ତଗଣ — ଗାୟକ-ଗାୟିକାଙ୍କ କଣ୍ଠରୁ ଝରୁଛି ଭକ୍ତି ସଂଗୀତ । ଅଗଣିତ ଜନତା ଚଉଦିଗ ଭକ୍ତିରସରେ ଆର୍ଦ୍ର କରି, ପତିତଜନଙ୍କୁ ପାବନ କରି ସେହି ସ୍ମୃତିପୀଠରୁ ସହସା ଝଙ୍କୃତ ହେଲା ଯେଉଁ ଚିରପରିଚିତ ସ୍ୱର ଜଣାଣ । ଯୋଡ଼ହସ୍ତ । ଗଳାରେ ଶିରକାପଡ଼ା ଲମ୍ବିଛି । ନେତ୍ର ଛଳଛଳ । ଅପୂର୍ବ ସେ କଣ୍ଠ ସ୍ୱର ।

ଜୀବନର ୮୬ ଟି ପାହାଚ ଅତିକ୍ରମ କରି ଏ ସାନ୍ଧ୍ୟ ଲଗ୍ନରେ ଏଭଳି ମାଧୁର୍ଯ୍ୟଭରା ସୁଲଳିତ କଣ୍ଠରେ ଭଜନ ଗାଇପାରନ୍ତି କେବଳ ଜଣେ, ସମଗ୍ର ଓଡ଼ିଶାରେ ଅଦ୍ୱିତୀୟ, ଏକକ, ସ୍ୱତନ୍ତ୍ର ସ୍ୱରଶିଳ୍ପୀ—ସେ ପଦ୍ମଶ୍ରୀ ନିମାଇଁ ଚରଣ ହରିଚନ୍ଦନ ।

ସେ ଭଜନ ଶବ୍ଦ ଅର୍ଥ ଭେଦ କରି ପରିପୂର୍ଣ୍ଣ ସମର୍ପଣର ମନ୍ତ୍ରନାଦରେ ମହାଶୂନ୍ୟର ପ୍ରତୀକ ସର୍ବଶକ୍ତିମାନ ପରମେଶ୍ୱରଙ୍କ କି ସୁଧାରସ ଦିଏ ଜାଣେନା । କିନ୍ତୁ କୋଟି କୋଟି ପିପାସୁ, ପତିତ, ସ୍ୱଚ୍ଛ ଭକ୍ତିପ୍ରାପ୍ତି ନିମନ୍ତେ ସତତ ବ୍ୟାକୁଳ ତାପକ୍ଲିଷ୍ଟ ଜନତା ଚିତ୍ତକୁ ଅନୁପମ ଭକ୍ତିରସରେ ସିକ୍ତ କରିବାରେ ଯେ ଏକାନ୍ତ ସମର୍ଥ, ଏ ସତ୍ୟ କିଏ ବା ଅସ୍ୱୀକାର କରିପାରିବ ? ଭାବମଗ୍ନ, ତନ୍ମୟ ସତ୍ତାରେ ପୁଲକିତ ବପୁ ସେ 'ବାଣୀକଣ୍ଠ' ।

କେନୋପନିଷଦର ଭାଷାରେ—'ଶ୍ରୋତ୍ରସ୍ୟ ଶ୍ରୋତ୍ରଂ ମନସୋ ମନୋ ଯଦ୍, ବାଚୋହ ବାଚଂ ସ ଉ ପ୍ରାଣସ୍ୟ ପ୍ରାଣ ।

ସେହି ପରମ ପୁରୁଷ ଜଗନ୍ନାଥ ଯିଏ ଶ୍ରୋତାର ଶ୍ରୋତ୍ର, ମନର ମନ, ବାଣୀର ବାଣୀ ଓ ପ୍ରାଣର ପ୍ରାଣ । ସେହି ପତିତପାବନ, ବାଣୀର ବାଣୀକୁ ଯେଉଁ ଦୁର୍ଲଭ ଲଗ୍ନରେ ଦାନ କରିଥିଲେ ନିମାଇଁ ହରିଚନ୍ଦନଙ୍କୁ କେଜାଣି — ସେ ମହାଦାନକୁ କଣ୍ଠରେ ଧାରଣ କରି ତା'ର ଅମର୍ଯ୍ୟାଦା କରି ନାହାନ୍ତି ଭକ୍ତ ହରିଚନ୍ଦନ । ଜନସେବାରେ ଲାଗିଛନ୍ତି ବାଣୀକଣ୍ଠ । ପ୍ରଭୁଙ୍କ ନାମ ଭଜନ, ଜଣାଣ, ସ୍ତୁତିରେ ନିରନ୍ତର ଝଙ୍କୃତ । ଅନାବିଳ ଆନନ୍ଦ ବିତରଣ କରି ସେ ପ୍ରଭୁଙ୍କ ବାଣୀକଣ୍ଠରୂପୀ ମହାଦାନକୁ ସାର୍ଥକ କରିବାର ଶୁଦ୍ଧ ଶପଥ ଆଜୀବନ ପାଳି ଆସିଛନ୍ତି—ଶେଷ ଲଗ୍ନ ପର୍ଯ୍ୟନ୍ତ ।

ଚଉଦ ବର୍ଷର ବାଳକ ନିମାଇଁ । କେନ୍ଦ୍ରାପଡ଼ାର ଦାନବୀର ନରେନ୍ଦ୍ର ବଂଶରେ ଜାତ ଧନଶୂନ୍ୟ ବାଳକ ନିମାଇଁ କି ଦାନ ଦେଇ ସେ ଅଭିଜାତ ବଂଶର ମର୍ଯ୍ୟାଦା, ପରମ୍ପରା ଓ ଐତିହ୍ୟର ସୁରକ୍ଷା କରି ପାରିବ ? ପ୍ରଶ୍ନବାଚୀ ! ଇଷ୍ଟଦେବତା ଶ୍ରୀ ଶ୍ରୀ ରାଧାଗୋବିନ୍ଦ ଜୀଉଙ୍କ ମନ୍ଦିର । ଆଳତି ଘଣ୍ଟା ବାଜୁଛି । ବାଳକ କଣ୍ଠରୁ ଝରୁଛି ଅମିୟ ଭକ୍ତିବୋଳା ସଙ୍ଗୀତ ଧାରା । ଏହି ଶ୍ରବଣାନନ୍ଦ ଦାନ କରି ସେ ପତିତଜନଙ୍କୁ ଉଦ୍ଧାରିବେ, ଏହି ଥିଲା ବୋଧେ ମହାପ୍ରଭୁଙ୍କର ଇଚ୍ଛା । ଜୀବନର ପଥ ଉନ୍ମୋଚିତ ହେଲା । ସର୍ବଶକ୍ତିମୟୀ ସଂଗୀତ । ତାହାରି ମାଧ୍ୟମରେ ବିଭୁପ୍ରାପ୍ତି ସମ୍ଭବ ।

ଶାସ୍ତ୍ରରେ ଅଛି—

ପଶୁର୍ବେତ୍ତି ଶିଶୁର୍ବେତ୍ତି
ବେତ୍ତି ଗୀତରସଂ ଫଣୀଃ ।

ଅର୍ଥାତ୍ ସଙ୍ଗୀତ ଯିଏ ଶିଶୁ, ପଶୁ ଓ ବିଷାକ୍ତ ସର୍ପକୁ ମଧ୍ୟ ବଶୀଭୂତ କରିପାରେ । ପୁଣି ସେହି ସଙ୍ଗୀତ ଯଦି ନିର୍ମଳ

ଭକ୍ତିଭାବରେ ସମାଭୂତ ନିଷ୍ଠା ଓ ସାଧନାରେ ପରିପୁଷ୍ଟ ହୁଏ, ତେବେ ସେ କଲ୍ୟାଣମୟୀ ଭକ୍ତିଧାରାରେ ପବିତ୍ର କରେ କଳୁଷିତ ଅନ୍ତର !

ଯୌଗୀ ପ୍ରତିଭା ପାଇଲା ପ୍ରେରଣା—ଝରିଲା ବିଭୁକୃପା, ସେ ଶିଖିଲେ ମୃଦଙ୍ଗ । ଗଙ୍ଗାଦାସ ସାଧୁ ଶିଖାଇଲେ ଢୋଲ । ଅପାର ଗଲା ଅବସାଦ ! ଆସିଲା ପବିତ୍ର ଲଗ୍ନ । କନିଷ୍ଠ ପିତୃବ୍ୟ ସଂଗୀତଜ୍ଞ ଗୋକୁଳ ଶ୍ରୀଚନ୍ଦନ ଅକସ୍ମାତ୍ ଏହି ଅପୂର୍ବ ସୁନ୍ଦର ଅନନ୍ୟ ସାଧାରଣ କଣ୍ଠର ଝଙ୍କାରରେ ବିମୋହିତ ହୋଇ ସଂଗୀତ ଶିକ୍ଷାର ଦାୟିତ୍ୱ ନେଲେ । ଗୋବିନ୍ଦ ସୁର ଦେଓଙ୍କ ରାସ ଦଳ ରାଧାକୃଷ୍ଣ ଭାବ ଦାସ୍ୟଭାବ ସଂସ୍ପୃଷ୍ଟ କଲା କଳାକାର ପ୍ରାଣରେ । ଏ ସମସ୍ତ ସୁଯୋଗ ଶିକ୍ଷା ପରିପୂର୍ଣ୍ଣତା ଲାଭ କଲା ନିପୁଣ କଳାକାର ଓସ୍ତାଦ ମାଧୋ ରାଓଙ୍କ ଆନ୍ତରିକ ଶିକ୍ଷାର ଯାଦୁ ସ୍ପର୍ଶରେ, ହିନ୍ଦୁସ୍ଥାନୀ ସଂଗୀତ । ସବୁଠାରେ ସେହି ବିଭୁ ପାଦପଦ୍ମରେ ନିବେଦନ ପ୍ରପତ୍ତି ନିମନ୍ତେ ଜାଗ୍ରତ । ପବିତ୍ର ନିର୍ମଳ ଭକ୍ତିସୁଧା ମିଶ୍ରଣରେ ଅନୁପମ କଣ୍ଠ ଦେଲା ଅପୂର୍ବ ସୁନ୍ଦର ସ୍ୱରମୟ । ସାଧକର କଣ୍ଠ ସ୍ୱର ମାଧୁର୍ଯ୍ୟ ଜନମନ ହରଣ କଲା ।

ଦୀର୍ଘ ଅର୍ଦ୍ଧ ଶତାବ୍ଦୀରୁ ଅଧିକ—ସେ ଶକ୍ତ ଅଲକ୍ଷ୍ୟ—ଏକ ସୁନ୍ଦର ସୁଖପ୍ରଦ ଅଜସ୍ର ସମ୍ଭାବନାରେ ଉଜ୍ଜ୍ୱଳ ମଧୁର ପ୍ରଭାତ । ୧୯୩୬ ମସିହା ।

ବିଭୁକୃପା ଝରିଗଲା । ତୁମର ଏ ଶରୀରରୂପୀ ରଥ ହବେ ଅଚଳ ହେବ । ଜନ୍ମ ମୃତ୍ୟୁର ପିଚ୍ଛିଳ ପଥରେ ଧାବମାନ ଏ ରଥର ବିଶ୍ରାମ କ୍ଷଣ ନିର୍ଦ୍ଧାରିତ କରିଥିବେ ରଥୀ—ଗତି ନିୟନ୍ତ୍ରଣ କରିବେ । ଶରୀରକୁ ସତ୍କର୍ମ ଦ୍ୱାରା ସୁସ୍ଥ ଓ କ୍ରିୟାଶୀଳ ରଖ, ବୁଦ୍ଧି ଓ ଭକ୍ତିରେ ଆତ୍ମାକୁ ଲାଭ କର । ସଂଗୀତ ସାଧନା କର, ପରମ କରୁଣା ଲାଭ ହେବ । ବିଭୁଦତ୍ତ କଳାରୂପୀ ପରମ ସମ୍ପଦ 'ବାଣୀକଣ୍ଠ'ଙ୍କୁ ମାନବ ସେବା ନିମନ୍ତେ ଶ୍ରୁତି ଦେଇ ଯାଅ । ଶୁଭ ଲଗ୍ନ ସମାଗତ ।

ହୁଏ ତ ଏ ଅଦୃଶ୍ୟ ବାଣୀ ସେଦିନ ସୁର ସାଧକଙ୍କ ଚିତ୍ତରେ ଆଲୋଡ଼ନ ସୃଷ୍ଟି କରିଥିବ । ପ୍ରତ୍ୟୟ ଜାଗ୍ରତ ହୋଇଥିବ ।

ବିଭୁ ପ୍ରେରିତ ସୁଯୋଗ ରୂପେ ଆସିଲେ ଗ୍ରାମୋଫୋନ କମ୍ପାନୀ, ନୂତନ ରେକର୍ଡରେ ଝଂକୃତ ହେଲା ଚମତ୍କାରକ ମନ୍ତ୍ର, ସାଧକ ପରମ ଭକ୍ତ ଉପେନ୍ଦ୍ର ଭଞ୍ଜଙ୍କ ମୁଖ ନିଃସୃତ ବୈଦେହୀଶ ବିଳାସର କେତୋଟି ପଦ୍ୟ । ବୀଣାପାଣିଙ୍କ ବୀଣାସ୍ୱର ସଂଯୁକ୍ତ ବାଣୀକଣ୍ଠରେ 'ବିଜୁଳିକୁ ଆଲିଙ୍ଗନ' ସମଗ୍ର ଦେଶର କୋଣ ଅନୁକୋଣରେ ତରଙ୍ଗାୟିତ ହେଲା ।

ବର୍ଷଟିଏ ନ ଯାଉଣୁ ଆସିଲା ଆମନ୍ତ୍ରଣ ।

ସଙ୍ଗୀତ ପରିବେଷଣ କରିବେ କଲିକତା ବେତାର କେନ୍ଦ୍ରରୁ ଓଡ଼ିଆ ସଙ୍ଗୀତ । କି ସଙ୍ଗୀତ ସେ, ଚିତ୍ତସ୍ପର୍ଶୀ ମଧୁର ଝଂକାର । ଏଥିରେ ଗ୍ରାମୋଫୋନ କମ୍ପାନୀ 'ବାଣୀକଣ୍ଠ' ଉପାଧି ନ ଦେଲେ ଋଦ୍ଧତା କଅଣ ? ଆଉ ନାମର ପ୍ରୟୋଜନ ନାହିଁ । ସର୍ବଜନ ଆଦୃତ ଏ କଣ୍ଠ ଓଡ଼ିଶାର କୁନ୍ଦେ କୁନ୍ଦେ — 'ବାଣୀକଣ୍ଠ' ନାମରେ ପରିଚିତ ହେଲା । ସେ କଣ୍ଠସ୍ୱରକୁ ଯୁଗ ଯୁଗ ପାଇଁ ଗ୍ରାମୋଫୋନ ମାଧ୍ୟମରେ ଆତ୍ମିଜନର ତୃପ୍ତି-ନିମନ୍ତେ ରଖିଦେବାର ସୁଯୋଗ ମିଳିଲା । ଆନନ୍ଦ ଦାନର ମହାମନ୍ତ୍ର ଗ୍ରହଣ କରି ବାଣୀକଣ୍ଠ ଅନୁକ୍ଷଣ ସାଧନାରତ ହେଲେ ।

ସମ୍ମାନ ଆସିଲା ବହୁବାର । ୧୯୩୪ ମସିହା ଉତ୍କଳ ସାହିତ୍ୟ ସମାଜର ପୃଷ୍ଠ ମଞ୍ଚରୁ ସ୍ୱର୍ଣ୍ଣପଦକ ରୂପରେ ଆସିଲା ବିଶିଷ୍ଟ ବ୍ୟକ୍ତିଙ୍କ ଠାରୁ ପ୍ରଶଂସାପତ୍ର ରୂପରେ, ଆଉ ଆସିଲା କୋଟି କୋଟି ସଙ୍ଗୀତପ୍ରେମୀଙ୍କ ନେତ୍ରରୁ ଅବାରିତ ପ୍ରେମାଶ୍ରୁ ରୂପରେ ସମ୍ମାନ ସମ୍ବର୍ଦ୍ଧନା ।

ଦୀର୍ଘ ୫୦ ବର୍ଷରୁ ଊର୍ଦ୍ଧ୍ୱ ହେବ ମନ୍ତ୍ରମୁଗ୍ଧ କରି ଭକ୍ତି ସଙ୍ଗୀତରେ ଓଡ଼ିଶା ତଥା ଓଡ଼ିଶା ବାହାରର ଅଗଣିତ ଜନତାକୁ ସେ ବାନ୍ଧି ରଖିଥିଲେ । ତାହାର ସ୍ୱୀକୃତି, ୧୯୭୬ରେ ପଦ୍ମଶ୍ରୀ ଉପାଧି ଲାଭ !

ଉତ୍କଳ ସାହିତ୍ୟ ସମାଜରେ ପ୍ରତିକୃତି ଉନ୍ମୋଚନ ମହୋତ୍ସବ । ଅଗଣିତ ବାଣୀକଣ୍ଠ ଭକ୍ତ ସାହିତ୍ୟିକ, ସଙ୍ଗୀତଜ୍ଞ ଜନତା ଅର୍ପଣ କଲେ ପ୍ରଣାମ, କାମନା କଲେ ସଙ୍ଗୀତମୁଖର ଦୀର୍ଘ ଜୀବନ । ଗାଉଥିଲେ ଜୀବନ ଦୀପ ଲିଭିବା ଯାଏଁ 'ବାହୁଡାରେ ମୋତେ ବାହୁଡ଼ାଇ ନିଅ' ତାଙ୍କ ନିବେଦନ ।

ପ୍ରଭୁ ଡାକ ଶୁଣିଲେ । ନ ଶୁଣିବେ କିପରି ? ଚକା-ଡୋଳା କିଆଁ ଡାକ ନ ଶୁଣେ । ସଙ୍ଗୀତ ଯେ ଶୁଣୁଛି ସେ

ଅନୁଭବ କରିଛନ୍ତି ଏ ଜାତିର ପ୍ରେମ ବିହ୍ୱଳ ଭକ୍ତି ଭାବରେ ଉଚ୍ଛ୍ୱସିତ ଅପୂର୍ବ ନିଦର୍ଶ ରତ୍ନବେଦୀରେ ନ ପହଞ୍ଚି ରହି-ପାରିବ ନାହିଁ । ୧୯୮୩ ମସିହା, ବଡଦାଣ୍ଡ ମୁଖରିତ କରି ତାଙ୍କ ଭକ୍ତିପ୍ଲାବିତ କଣ୍ଠ ଶେଷଥର ପାଇଁ । ରଥ ଚାଲୁଛି— ଝରୁଛି ଭକ୍ତିସଙ୍ଗୀତ, ଗାଉଛନ୍ତି ବାଣୀକଣ୍ଠ । ଜନତା ମୁଗ୍ଧ ବିହ୍ୱଳ, ଜନ ସ୍ରୋତ ଆଗେଇ ପାରୁନି ।

ସେହି ମୋର ଶେଷ ଦର୍ଶନ ଓ ପ୍ରଣାମ । ସିଂହଦ୍ୱାରକୁ ଆସି ନାହାନ୍ତି ପ୍ରଭୁ ଜଗନ୍ନାଥ । ହୁଏତ ଅପେକ୍ଷାରତ । ଭକ୍ତ ପାଇଁ ଘର ବାହୁଡ଼ା ଡ଼ାକ ଆସିଛି । ସେ ବାହୁଡ଼ି ଯାଇ ପରମପୀଠକୁ ବାଟ ଛାଡ଼ି ଦେଲେ ସେ । ପ୍ରବେଶ କରିବେ ତା' ପରେ ସେ ବଡ଼ଦେଉଳରେ । ଅନୁକ୍ଷଣ ବିଭୁ ନାମ ଉଚ୍ଚାରଣ କରୁ କରୁ କଲ୍ୟାଣ ବିତରଣ କରି ଶ୍ରେଷ୍ଠ ସ୍ୱର-ସାଧକ ବାଣୀକଣ୍ଠ ବିଦାୟ ନେଲେ, ହେଲେ ସେ କଣ୍ଠସ୍ୱର ଯୁଗ ଯୁଗ ଧରି ପାପ ତାପ ଦଗ୍ଧ ମାନବକୁ ପଥ ଦର୍ଶାଉଥିବ, ଉତ୍ତର ସାଧକଙ୍କୁ ପଥ ନିର୍ଦ୍ଦେଶ କରିବ ।

ବାହୁଡ଼ାର ପୁଣ୍ୟତିଥିରେ କର୍ମମୁଖର ସାଧନାସିଦ୍ଧ ଜୀବନ ଅଫୁରନ୍ତ ଗୌରବ ଓ ଦୀପ୍ତିରେ ଉଦ୍‌ଭାସିତ ହୋଇ ବିଲୟ ଭଜିଲା । ସେ ସାର୍ଥକ ସ୍ୱରଶିଳ୍ପୀଙ୍କ ଚରଣରେ କୋଟି କୋଟି ବିମୁଗ୍ଧ ଜନତାର ଭକ୍ତିପୂତ ପ୍ରଣତି !



ଅଧ୍ୟାପିକା, ଅର୍ଥନୀତି ବିଭାଗ
ରେଭେନ୍ସା କଲେଜ, କଟକ

# ବାଣୀକଣ୍ଠ ସ୍ମରଣେ

## ଶ୍ରୀ ଲୋକନାଥ ପୃଷ୍ଟି

କବି ମରେ । ତା'ର କବିତା ମରେ ନାହିଁ । ଶିଳ୍ପୀ ରହେ ନାହିଁ, ମାତ୍ର ଶିଳ୍ପ ଶିଳ୍ପୀର ନାମକୁ ଯୁଗ ଯୁଗ ଧରି ରଖେ । ଜଣେ ଗାୟକ ମରିଯାଏ ସତ, କିନ୍ତୁ ତା'ର ଅମୃତ ସଙ୍ଗୀତ ତାଙ୍କୁ ଅମର କରି ରଖେ । ସେହିପରି 'ବାଣୀକଣ୍ଠ' ନିମାଇଁ ହରିଚନ୍ଦନ ଜଣେ ଅମର କଳାକାର । ମାଟି ଦେହ ତାଙ୍କର ମାଟିରେ ମିଶିଯାଇଛି ପରନ୍ତୁ ଯଶୋଦେହରେ ସେ ଚିର ସ୍ମରଣୀୟ, ସେ ମୃତ୍ୟୁଞ୍ଜୟୀ ।

'ମର୍ତ୍ତ୍ୟ ମଣ୍ଡଳେ ଦେହ ବହି
ଦେବତା ହୋଇଲେ ମରଇ
ସର୍ବେ ଚଳିବେ କାଳ ବଳେ
କଥା ରହିବ ମହୀ ତଳେ ।' (ଭାଗବତ)

'ବାଣୀକଣ୍ଠ'ଙ୍କର ନିଜ କଣ୍ଠରୁ ସାବଲୀଳ ସଙ୍ଗୀତ ଝଙ୍କାର ଚିରଦିନ ପାଇଁ ନୀରବ ହେଲା । ସଙ୍ଗୀତ ଜଗତରେ ଶୋକର ଛାୟା ଖେଳିଗଲା । ବିଶ୍ୱ ପ୍ରସିଦ୍ଧ ପୁରୀ ବାହୁଡ଼ା ଯାତ୍ରା ସେଦିନ । ବାହୁଡ଼ା ରଥରେ ସେ ବାହୁଡ଼ି ଗଲେ । ପ୍ରଭୁ ଜଗନ୍ନାଥ ଭକ୍ତର ସାକ୍ଷ୍ୟମୟ ଭାବାବେଗ ସଙ୍ଗୀତ ଶ୍ରବଣ କରିବାକୁ ପାଖକୁ ନେଇଗଲେ । ଆଉ ପାଇଁ ରହିଗଲା ଖାଲି ତାଙ୍କର ବାଣୀକଣ୍ଠର ସେହି କୀର୍ତ୍ତିର ରେକର୍ଡ ଗୁଡ଼ାକ ।

ସେ ଅର୍ଦ୍ଧ ଶତାବ୍ଦୀ ବ୍ୟାପି ସଫଳ ଭକ୍ତି ସଙ୍ଗୀତ, ଭଜନ କୀର୍ତ୍ତନ, ଜଣାଣ, ଚମ୍ପୂ ଆକାଶବାଣୀର ସୌଜନ୍ୟରେ, ଚଳଚ୍ଚିତ୍ର ଜଗତରେ ତଥା ବହୁ ସଙ୍ଗୀତ ଆସରରେ ଖ୍ୟାତି-ନାମା ଶିଳ୍ପୀ ହିସାବରେ ସଙ୍ଗୀତ ପରିବେଷଣ କରିଥିଲେ । ନଗର, ପୁର-ପଲ୍ଲୀରେ ଭକ୍ତି ସ୍ରୋତ ବୁହାଇ ପାରିଥିଲେ । ତାଙ୍କର ସଙ୍ଗୀତ ଗାନ ଆବାଳ ବୃଦ୍ଧ ବନିତା ସମସ୍ତଙ୍କୁ ବିମୁଗ୍ଧ କରି ପାରିଥିଲା । ୰ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କ ନିମନ୍ତ୍ରଣରେ ସେ ଯେଉଁ ସଙ୍ଗୀତ ଦିଲ୍ଲୀରେ ପରିବେଷଣ କରିଥିଲେ, ତାହା ତାଙ୍କୁ ଅଭିଭୂତ କରି ଦେଇଥିଲା । ହରିଚନ୍ଦନଙ୍କ ଦୀର୍ଘ ଝଙ୍କାର ମଧୁର ସଙ୍ଗୀତ, ସ୍ୱର ଲହରୀ ଅନନ୍ୟ ସାଧାରଣ କହନ୍ତେ ଲୋକେ । ସେ ଓଡ଼ିଶା ସଙ୍ଗୀତର ମୂର୍ତ୍ତିମନ୍ତ ପ୍ରତୀକ ଥିଲେ ।

ପ୍ରଭୁ ଜଗନ୍ନାଥ ବହୁ ଭକ୍ତର ଭକ୍ତି ପରୀକ୍ଷା କରିଛନ୍ତି । ଭକ୍ତ ସାଲବେଗ ଆବେଗପୂର୍ଣ୍ଣ ଗଳାରେ ଗାଇଥିଲେ —

'ଜଗବନ୍ଧୁ ହେ ଗୋସାଇଁ
ସାରଣୀ' ମଝାରେ ନୋହି ଚଳି ନ ପାରଇ ।
ମୋହ ଯିବାଯାଏ ନନ୍ଦିଘୋଷ ଥିବ ରହି ।'

ଭକ୍ତ ଆସିବା ପର୍ଯ୍ୟନ୍ତ ନନ୍ଦିଘୋଷ ଚଳି ନ ଥିଲା । ଭଗବାନଙ୍କ ଦର୍ଶନ ପାଇଁ ଭକ୍ତ ବ୍ୟସ୍ତ — ଭକ୍ତ ପାଇଁ ପ୍ରଭୁ ମଧ୍ୟ ରହିଗଲେ । ଭକ୍ତ ସାଲବେଗ ଆସିଲେ । ପ୍ରଭୁଙ୍କୁ ଦର୍ଶନ କରି ଗାଇ ଉଠିଥିଲେ —

'ଆହେ ନୀଳଗିରି
ତୁମ୍ଭ ଶ୍ରୀଭୁଜେ ଦସ୍ତଣା ନେଉ ନେଉ ।'

ତା' ପରେ ରଥ ଚାଲିଲା, ଧନ୍ୟ ପ୍ରଭୁ ! ଧନ୍ୟ ତୁମର ମହିମା ।

ଭକ୍ତର କି ଆକୁଳ ନିବେଦନ । କି ମହାନ ପରୀକ୍ଷା ? ଭକ୍ତ କବି ବଳରାମ ଦାସ ଦୋଷୀ ସାବ୍ୟସ୍ତ । ସର୍ବସମ୍ମୁଖରେ ଅପଦସ୍ତ, ଅପମାନିତ । ଭକ୍ତ ଅଚଳ, ଅଟଳ, ନିର୍ବିକାର । ସମୁଦ୍ର କୂଳରେ ବାଲିଯାତ୍ରା, ରଥଯାତ୍ରା । ରଥ ଏଣେ ଅଚଳ ହୋଇଗଲା । ସୈନ୍ୟ, ସାମନ୍ତଙ୍କ ସମସ୍ତ ଚେଷ୍ଟା ବୃଥା । ଭକ୍ତର ନାଦରେ ଭକ୍ତର ଭକ୍ତ ପ୍ରଭୁ ବିହ୍ୱଳ । ପ୍ରଭୁ ଭକ୍ତର । ଗଜପତି ପରାସ୍ତ । ପରୀକ୍ଷା ସମାପ୍ତ ହେଲା । ରଥ ଚାଲିଲା । ଶୂନ୍ୟ ବାଣୀ ଶୁଭିଥିଲା ।

ହରିଜନ ଦାସିଆ ବାଉରୀ, ଅସ୍ପୃଶ୍ୟ । ତା' ଭୋଗ ଲଗାଇବ କିଏ ? ପ୍ରଭୁ ସ୍ୱୟଂ ଶ୍ରୀହସ୍ତରେ ଗ୍ରହଣ କଲେ । ତା'ର ଆମ୍ବ, ନାରିକେଳ ଶୂନ୍ୟରେ ଉଭାନ ହେଲା । ପ୍ରଭୁ

ପାଟରେ ପଦ୍ମହସ୍ତ ଗଲା । ଏତ କମିଆ, ସାଧୁ । ଭକ୍ତର ଭକ୍ତିର ପରାକାଷ୍ଠା ପ୍ରମାଣିତ ହେଲା । ଉଚ୍ଛନ୍ନଟର ପ୍ରାଚୀର ଭାଙ୍ଗିଥିଲା ସେଦିନ ।

ଆଜି ସେଦିନର ବାଣୀକଣ୍ଠଙ୍କର ଆକୁଳ ନିବେଦନ ପ୍ରଭୁ ଶୁଣିଲେ । ବାହୁଡ଼ା ରଥରେ ସଙ୍ଗରେ ଭକ୍ତକୁ ନେଇଗଲେ ।

ଭକ୍ତ ଅନେକ । ଭକ୍ତି ଅନେକ ପ୍ରକାର । ମାତ୍ର ନବଧା ପ୍ରଧାନ ।

"ସ୍ମରଣଂ ଚନ୍ଦନଂ ବନ୍ଦେୟା ଅର୍ଚ୍ଚନଂ ପଦ ସେବନଂ
ଭଜନଂ, କୀର୍ତ୍ତନଂ, ଦାସ୍ୟ, ସାଖ୍ୟଂ ଆତ୍ମ ନିବେଦନଂ"

ଆତ୍ମ ନିବେଦନ ଭକ୍ତି ସର୍ବତ୍ର ସର୍ବଦା ପ୍ରଧାନ । ସୁର ଦାସ, ତୁଳସୀ ଦାସ, ମୀରା, ଶ୍ରୀରାଧା, ସତୀ ସୀତାଙ୍କର ଆତ୍ମନିବେଦନ ଭକ୍ତି ଥିଲା । ସାଲବେଗଙ୍କର ଆତ୍ମନିବେଦନ ଭକ୍ତି ଥିଲା । ସେହିପରି ଆଧୁନିକ ସାଲବେଗ 'ବାଣୀକଣ୍ଠ'ଙ୍କର ଆତ୍ମନିବେଦନ ଭକ୍ତି ତାଙ୍କୁ ଶାନ୍ତି ମୁକ୍ତି ଦେଇଛି ।

୧୯୬୬ ମସିହାରେ 'ଉତ୍କଳ ସାହିତ୍ୟ ସମାଜ'ର ସଙ୍ଗୀତ ପ୍ରତିଯୋଗିତାରେ ସେ ପ୍ରଥମ ସ୍ଥାନ ଅଧିକାର କରିଥିଲେ । ସ୍ୱର୍ଣ୍ଣ ପଦକ ପାଇଥିଲେ । ୧୯୭୦ରେ ଭାରତ ସରକାର ତାଙ୍କୁ 'ପଦ୍ମଶ୍ରୀ' ଉପାଧି ପ୍ରଦାନ କରିଥିଲେ । ବାଣୀକଣ୍ଠଙ୍କର 'ହିଜ୍ ମାଷ୍ଟର ଭଏସ୍' କମ୍ପାନୀରେ ତାଙ୍କର ୧୨୭ଟି ଭଜନ ଜଣାଣର ରେକର୍ଡ଼ ପ୍ରକାଶିତ ହୋଇଛି । ସେ ଶାସ୍ତ୍ରୀୟ ସଙ୍ଗୀତ ସମ୍ବନ୍ଧ ପରିବେଷଣ କରନ୍ତି । ସେ ରାଜବଂଶର ରାଜପରିବାରର ଲୋକ । କେନ୍ଦ୍ରାପଡ଼ାର ସୁନାମଧନ୍ୟ ରାଜା ରାଧାଶ୍ୟାମ ନରେନ୍ଦ୍ରଙ୍କର ସେ ନାତି ଥିଲେ । ସ୍ୱର୍ଗରେ ଇନ୍ଦ୍ର—ମର୍ତ୍ତ୍ୟରେ ରାଧାଶ୍ୟାମ ନରେନ୍ଦ୍ର ତାଙ୍କର ଏପରି ଖ୍ୟାତି ଥିଲା । ଡା° ମଧୁସୂଦନ ଦେବଙ୍କ ଜାମାତା ଗୋବିନ୍ଦଚନ୍ଦ୍ର ସୁଧାଂଶୁ ଦେବଙ୍କ ଗୀତ ଦଳରେ ସେ ସଙ୍ଗୀତ ପରିବେଷଣ କରୁଥିଲେ । ୧୯୬୩ ରେ ବିଶିଷ୍ଟ ନାଟ୍ୟକାର ସ୍ୱର୍ଗତ ମୋହନ ଗୋସ୍ୱାମୀଙ୍କ ଯାତ୍ରା ଦଳରେ ସେ ଯୋଗ ଦେଇଥିଲେ ।

ମୋହନ ଗୋସ୍ୱାମୀଙ୍କ ଯାତ୍ରାପାର୍ଟି, ତତ୍କାଳୀନ ଯାଜପୁରର କୃଷ୍ଣ ପ୍ରସାଦ ବସୁଙ୍କ ଅପେରା ଓ ଶଙ୍ଖଚିଲ ଖମରେ ଓଡ଼ିଆରେ ବାବାଜୀ ଚରଣ ପୃଷ୍ଟିଙ୍କ ଜଗନ୍ନାଥ ନାଟ୍ୟ-ସଂଘ'ରେ ରହି ସେ ଓଡ଼ିଶାର ବିଭିନ୍ନ ଗଡ଼ଜାତରେ ଏବଂ ଓଡ଼ିଶା ବାହାରେ ସଙ୍ଗୀତ ନାଟ୍ୟକଳା ପ୍ରଦର୍ଶନ କରୁଥିଲେ ।

ଶ୍ରୀ ହରିଚନ୍ଦନଙ୍କ ଜନ୍ମ କେନ୍ଦ୍ରାପଡ଼ାରେ । ତାଙ୍କ ପିତାଙ୍କ ନାମ ବୃନ୍ଦାବନ ଚନ୍ଦ୍ର ହରିଚନ୍ଦନ । ଅଠଗଡ଼ ରାଜବଂଶର ଶ୍ରୀନାଥ ସାମନ୍ତଙ୍କ କନ୍ୟାଙ୍କୁ ସେ ବିବାହ କରିଥିଲେ । ତାଙ୍କର ବାଲ୍ୟକାଳ କେନ୍ଦ୍ରାପଡ଼ାରେ, ଯୌବନ ଆଠ-ଗଡରେ ଓ ବାର୍ଦ୍ଧକ୍ୟ ପୁରୀରେ ଅତିବାହିତ ହୋଇଥିଲା । ପୁରୀର ମାଟି ପାଣି ପବନ ସାଥିରେ ୧୨ ବର୍ଷ କାଳ ରହିଥିଲେ । ଶ୍ରୀଜଗନ୍ନାଥଙ୍କ ନିକଟରେ ଭଜନ ଗାନ କରିବାକୁ ଶ୍ରୀଜଗନ୍ନାଥ ମନ୍ଦିର ସଂସ୍ଥା ତରଫରୁ ସ୍ୱୟଂର ସେବା କରିବାକୁ ତାଙ୍କୁ ଅନୁମତି ମିଳିଥିଲା । ଧନ୍ୟ ତାଙ୍କ ଜୀବନ ।

ବାଣୀକଣ୍ଠ ଯଥାର୍ଥରେ ଭକ୍ତ । ଜଗନ୍ନାଥଙ୍କ ସେବକ, ଅଦ୍ୱିତୀୟ ଗାୟକ, ବିମୁଗ୍ଧ କବି, ସୁରକ, ଦାର୍ଶନିକ, ଖିବ ବିହ୍ୱଳ ତନ୍ମୟ ସାଧକ ଓ କଳାକାର । ସେ ପୁଣ୍ୟାତ୍ମା । ଠିକ୍ ଜଗନ୍ନାଥଙ୍କର ବାହୁଡ଼ା ଯାତ୍ରାର ପ୍ରାତଃକାଳରେ ଅମୃତ ପୁର୍ଣ୍ଣ ଲୋକରେ ଇହଧାମ ତ୍ୟାଗ କରିଛନ୍ତି । ସେ ବ୍ୟକ୍ତି ନୁହନ୍ତି, ଏକ ଅନୁଷ୍ଠାନ ।

କିଏ କହେ ବାଣୀକଣ୍ଠଙ୍କ ଅମୃତ ସଙ୍ଗୀତ ଲହରୀ ଚିରଦିନ ଶାନ୍ତ ହୋଇଗଲା ? ଓଡ଼ିଆ ଚଳଚ୍ଚିତ୍ର ଜଗତରେ 'ଶ୍ରୀ ଜଗନ୍ନାଥ'ଙ୍କ ପ୍ରଥମ ଦର୍ଶନରେ 'ନୀଳସିନ୍ଧୁ ତୀରେ ନୀଳ ଅଚଳ, ନୀଳ ସିନ୍ଧୁ ଘେରା ବଡ ଦେଉଳ' କେବେ ଲୁଚି ଯିବ ନାହିଁ । 'ଅନା ମନ ଗୁଲ ଏଥର, ବହୁ ଦୂର ନୁହେ ଶିଖି କ୍ଷେତର' ଭୁଲି ଯିବାର ନୁହେଁ ।

ପ୍ରୀତି ସଂଗୀତ ମରିପାରେ । ମାତ୍ର ଭକ୍ତି ସଙ୍ଗୀତ ମରେନା । ଆସକ୍ତି କ୍ଷଣିକ । ମମତା ଚିରନ୍ତନ । ବର୍ତ୍ତମାନ ପ୍ରୀତିର ଯୁଗ ହୋଇପାରେ । ଅଶ୍ଳୀଳ ସଙ୍ଗୀତ, ଅଶ୍ଳୀଳ ନଗ୍ନ ସାହିତ୍ୟ ଚର୍ଚ୍ଚା ଗ୍ରହଣ ପାରେ । କେତେକଙ୍କ ପକ୍ଷେ 'ସିନେମା ତେ ପିତା ମାତା, ଫିଲ୍ମୀ ତୋ ଗୁରୁ, ଫିଲ୍ମୀକୁ ଶିଖି ରୁହ କେତେ ରୂପ ଧରୁ'—ଲୋକ ଭକ୍ତ ସାଲବେଗଙ୍କ 'ଭକତ ତୋ ପିତାମାତା ଭକତ ତୋ ଗୁରୁ—ଭକତ ନିମନ୍ତେ ତୁହି କେତେ ରୂପ ଧରୁ' ଇତ୍ୟାଦିକୁ ଅନର୍ଥ କଦର୍ଥ କରି ପାରନ୍ତି—ମାତ୍ର ସମାଜରେ ସେ ପ୍ରକାର ଲୋକ 'କାକୋଦୃଷ୍ଟିକ ବାନରଃ' ଦଶା ହେବେ ।

ଭକ୍ତଂ ଭକ୍ତି ଚିର କାଳଜୟୀ । ଚିର ମହାସ୍ଥାନ । ଜୀବନ ମହାନ୍, ଅବିନଶ୍ୱର, ଚିର ଅମର, ଏଥିରେ ସନ୍ଦେହ ନାହିଁ । ସେ ଭକ୍ତି ସଙ୍ଗୀତ ସାଗର । ବାଣୀକଣ୍ଠଙ୍କ ଏକନିଷ୍ଠ ସାଧନା ସିଦ୍ଧି ଓ ଭକ୍ତି ଚିର ସ୍ମରଣୀୟ ।

ଶିକ୍ଷକ, ଝିଙ୍କୁଲା ହାଇସ୍କୁଲ, ଶଙ୍ଖଚିଲ, କଟକ ।

# ବାଣୀକଣ୍ଠ ନିମାଇଁ ଚରଣ

## ଶ୍ରୀ ବିଷ୍ଣୁ ଚରଣ ମହାନ୍ତି

୧୯୮୩ ଖ୍ରୀଷ୍ଟାବ୍ଦ ଜୁଲାଇ ମାସ ୨୦ ତାରିଖ ବୁଧବାର ଶୁକ୍ଳପକ୍ଷ ସର୍ବସମ୍ମତ ଏକାଦଶୀ । ପ୍ରତ୍ୟୁଷରୁ କଟକ ରେଡ଼ିଓ ଷ୍ଟେସନ ଘୋଷଣା କଲା ବାଣୀକଣ୍ଠ ନିମାଇଁ ଚରଣ ହରିଚନ୍ଦନ କାଲି ସନ୍ଧ୍ୟା ଦର୍ଶନ ଶେଷ କରି ସମ୍ପୂର୍ଣ୍ଣ ସୁସ୍ଥ ଥାଇ ଆଜି ସକାଳେ ପ୍ରାଣତ୍ୟାଗ କଲେ । ହରିଶୟନ ଏକାଦଶୀରେ ଚିରଶୟନ ଭାଗ୍ୟବାନ ଲୋକଙ୍କୁ ମିଳେ ।

ଚମ୍ପୂ-ଚନ୍ଦ୍ରିକା ଗ୍ରନ୍ଥ ରତ୍ନାକର ବାଣୀକଣ୍ଠ ନିମାଇଁ ଚରଣଙ୍କ ଅବଦାନ । ତାଙ୍କ କୋକିଳ କଣ୍ଠରୁ ରସାଳ ସଙ୍ଗୀତର ମଧୁର ଝଙ୍କାର ଖ୍ରୀ ୧୯୩୮ରୁ ମୃତ୍ୟୁ ପର୍ଯ୍ୟନ୍ତ ଓଡ଼ିଆ ପ୍ରାଣରେ ନବଜାଗରଣ ଓ ପୁଲକ ଆଣୁଥିଲା । ସେ ପ୍ରଥମ କଣ୍ଠଶିଳ୍ପୀ ଯେ ସଙ୍ଗୀତକୁ ଜୀବିକାର୍ଜନର ପନ୍ଥା ରୂପେ ଗ୍ରହଣ କରି ମଧ୍ୟ, ଭକ୍ତିସଙ୍ଗୀତ କୃଷ୍ଣ ପ୍ରେମଲୀଳା ବ୍ୟତୀତ ନାନା ପ୍ରଲୋଭନ ସତ୍ତ୍ୱେ ଅନ୍ୟ ଗୀତ ବୋଲିବାକୁ ପ୍ରତ୍ୟାଖ୍ୟାନ କରିଥିଲେ । ସେ ଲେଖିଥିଲେ, 'ଫୁଲ ପରି ଜୀବନ ଯେପରି ଆସେ ସେହିପରି ଚାଲିଯାଏ । କେତେ ଫୁଲ ବନରେ ଫୁଟି ମଉଳି ଯାଏ, କେହି ତାକୁ ଜାଣେ ନାହିଁ । ଯେଉଁ ଫୁଲଟି ଜନସମାଜର ଉପଭୋଗ୍ୟ ହୁଏ କିମ୍ବା ଦେବ ଅର୍ଚ୍ଚନାରେ ବିନିଯୋଗ ହୁଏ, ତାହାର ଜୀବନ ସାର୍ଥକ ହୁଏ । ଭଗବାନଙ୍କ କୃପାରୁ ଏ ଜୀବନରେ ସେହି ସୁଯୋଗ ପାଇ ମୁଁ ନିଜକୁ ଧନ୍ୟ ମନେ କରୁଛି ।'

ଢେଙ୍କାନାଳ ପ୍ରଖ୍ୟାତ ଦାନବୀର ପୁଣ୍ୟାତ୍ମା କେନ୍ଦୁପଡ଼ାର ଜମିଦାର ଶ୍ରୀ ରାଧାଶ୍ୟାମ ନରେନ୍ଦ୍ରଙ୍କର ନାତି ଶ୍ରୀ ବୃନ୍ଦାବନ ଚନ୍ଦ୍ର ହରିଚନ୍ଦନଙ୍କର ସେ ଥିଲେ ପୁତ୍ର । ନରେନ୍ଦ୍ରଙ୍କର ନାମ ସର୍ବାଦୌ ଧରି ପ୍ରାତଃ ସ୍ମରଣୀୟ ଥିଲା । କୌଣସି ବ୍ୟସ୍ତକୁଣ୍ଠ କୁଖ୍ୟାତ ବ୍ୟକ୍ତିଙ୍କର ନାମ ଧରି ପକାଇଲେ ତା'ର ପ୍ରତିକାର ନିମିତ୍ତ ରାଧାଶ୍ୟାମ ନରେନ୍ଦ୍ରଙ୍କର ନାମ ଉଚ୍ଚାରଣ କରିଦେଲେ ସେ ଦିନ ଅନ୍ନ ସଂସ୍ଥାନରେ ତ୍ରୁଟି ଘଟେ ନାହିଁ ବୋଲି ଲୋକମାନଙ୍କର ବିଶ୍ୱାସ ଥିଲା । ଅଚଳାଚଳ ସମ୍ପତ୍ତିର ମାଲିକ ଥାଇ ନରେନ୍ଦ୍ର ବୃନ୍ଦାବନ ବାସ କରୁଥିଲେ ।

୧୯୦୧ ଖ୍ରୀଷ୍ଟାବ୍ଦ ଜୁଲାଇ ୯ ତାରିଖ ଦିନ ନିମାଇଁ ଜନ୍ମ ହେଲା ବେଳକୁ ବଂଶ ପରିବାରର ଦୁର୍ଦ୍ଦିନ ପଡ଼ିଗଲାଣି । ଦେବତା ଅର୍ଚ୍ଚନ, କୀର୍ତ୍ତନ, ଯାତ୍ରା ଓ ମହୋତ୍ସବ ମରି ଆସିଲାଣି । ବୃନ୍ଦାବନ ହରିଚନ୍ଦନ ପାଗଳ ହୋଇଗଲେ । ଚିକିତ୍ସା ପାଇଁ ବାହାରକୁ ଗଲେ । ମାଇନର ଶ୍ରେଣୀ ଉପରକୁ ନିମାଇଁ ପଢ଼ିପାରିଲେ ନାହିଁ । ପିତୃବ୍ୟ ଗୋକୁଳଚନ୍ଦ୍ର ଶ୍ରୀଚନ୍ଦନ ପ୍ରତିଷ୍ଠିତ ସଙ୍ଗୀତଜ୍ଞ । ସଙ୍ଗୀତ ପ୍ରତି ଆଗ୍ରହ ଦେଖି ନିମାଇଁଙ୍କୁ ହାରମୋନିୟମ୍ ଗୋଟିଏ ଦେଲେ ସଙ୍ଗୀତ ଶିକ୍ଷା ପାଇଁ । ଆଶୀର୍ବାଦ ଦେଲେ 'ଏ ବଂଶର ଗୌରବ ଲୋପ । ସେ ଗୌରବୋଜ୍ଜ୍ୱଳ ସ୍ମୃତିକୁ ସଙ୍ଗୀତ ମାଧ୍ୟମରେ ଜୀବନ୍ତ କରିବୁ' । ନିମାଇଁଙ୍କୁ ବୟସ ଚଉଦ ବରଷ । ଓଡ଼ିଶୀ ହିନ୍ଦୁସ୍ତାନୀ ଓସ୍ତାଦମାନଙ୍କଠାରୁ ସେ ସଙ୍ଗୀତ ଶିକ୍ଷା କଲେ । ସ୍ୱର ଲାଳିତ୍ୟ ତାଙ୍କୁ ସବୁଠାରେ ଲୋକପ୍ରିୟ କଲା । ସେ ଅଠଗଡ଼ରେ ବିବାହ କଲେ ୧୯୨୪ ଖ୍ରୀଷ୍ଟାବ୍ଦରେ । ରାଜା ସଙ୍ଗୀତପ୍ରେମୀ । ତାଙ୍କର ଭରଣପୋଷଣ ନିମିତ୍ତ ରାଜ ପ୍ରାସାଦର ଏକ ଅଂଶ ଏକଶହ ଏକର ଭୂମି ଓ ମାସିକ ୩୦ ଟଙ୍କା ଭତ୍ତା ମଞ୍ଜୁର କଲେ । ରାଜ ଦରବାରରେ ରାଜ ସଙ୍ଗୀତଜ୍ଞ ଉପାଧିରେ ଭୂଷିତ କଲେ । ପ୍ରଥମ ଓଡ଼ିଆ ରେକର୍ଡ଼ ସଙ୍ଗୀତ କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କର 'ଟଟଳକୁ ଅଳଙ୍ଗନ କରି କାହ୍ନୁଆ ଶୋଭନ' ତାଙ୍କୁ ୧୯୩୩ ଖ୍ରୀଷ୍ଟାବ୍ଦରେ ଓଡ଼ିଶାର ପୁରପଲ୍ଲୀରେ ପହଞ୍ଚାଇ ଦେଲା—'ହିଜ୍ ମାଷ୍ଟରସ୍ ଭଏସ୍ ରେକର୍ଡ଼ କମ୍ପାନୀ । ସେ ରେକର୍ଡ଼ ଝଙ୍କାରରେ ଅପ୍ରତ୍ୟାଶିତ ଲାଭ ଉଠାଇଲେ । ତାଙ୍କର ଅନୁରୋଧରେ ଲୁପ୍ତପ୍ରାୟ ବହୁ ଓଡ଼ିଶୀ ସଙ୍ଗୀତ ସେ ଗାଇବାରେ ଲାଗିଲେ । ତାଙ୍କୁ ବାଣୀକଣ୍ଠ ଉପାଧି ମିଳିଲା । ସେହି ନାମରେ ସେ ଓଡ଼ିଶାରେ କୁଜଙ୍ଗରୁ କଳାହାଣ୍ଡି, କୋରାପୁଟରୁ କେନ୍ଦୁଝର ସର୍ବତ୍ର ପରିଚିତ ହେଲେ । ୧୯୩୮ ଖ୍ରୀଷ୍ଟାବ୍ଦରେ କଲିକତା ରେଡ଼ିଓ ଷ୍ଟେସନରୁ ପ୍ରଥମ ଓଡ଼ିଆ ଗୀତ ସେ ଗାଇଥିଲେ । ପୁଣି ୧୯୪୭ ଖ୍ରୀଷ୍ଟାବ୍ଦ ଡିସେମ୍ବର ମାସରେ ଯେତେବେଳେ କଟକରେ ରେଡ଼ିଓ ଷ୍ଟେସନ ପ୍ରଥମେ ଉଦ୍‌ଘାଟନ ହେଲା;

# ବାଣୀପୁତ୍ର 'ବାଣୀକଣ୍ଠ'

## ଶ୍ରୀ କ୍ଷୀରୋଦ ଚନ୍ଦ୍ର ପୋଥାଲ

କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ବାଣୀ ସାଧନାକୁ ବଧାଇ ଦେଇ ପଣ୍ଡିତ ଗୋପବନ୍ଧୁ ଲେଖିଥିଲେ—

ଜନ୍ମି ରାଜକୁଳେ,
ବଇଭବ କୋଳେ
ଅତୁଳ ସୁଖ ସଦନେ ।
ତେଜି ରାଜ ଭୋଗ
ଆଚରିଲ ଯୋଗ
ବୀଣାପାଣି ଆରାଧନେ ।

ଏହି ଉକ୍ତିଟି ଆଜୀବନ ବାଣୀସାଧକ ଓଡ଼ିଶା ସଙ୍ଗୀତ-ରାଜ୍ୟର ମୁକୁଟମଣି 'ସଙ୍ଗୀତ କଳ୍ପତରୁ' ବାଣୀକଣ୍ଠ ନିମାଇଁ-ଚରଣ ହରିଚନ୍ଦନଙ୍କ ପକ୍ଷେ ଅକ୍ଷରେ ଅକ୍ଷରେ ପ୍ରଯୁଜ୍ୟ ବୋଲି ମନେ ହୁଏ ।

ନିମାଇଁ ବାବୁ ୧୯୦୮ ମସିହା ଜୁଲାଇ ୯ ତାରିଖରେ କେନ୍ଦ୍ରାପଡ଼ା ସହରର ବିଖ୍ୟାତ ନରେନ୍ଦ୍ର ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ବୃନ୍ଦାବନ ହରିଚନ୍ଦନ ଓ ମା'ଙ୍କ ନାମ ଚନ୍ଦ୍ରମଣି ଦେବୀ । ଉଚ୍ଚବଂଶର ଜନ୍ମ ନେଇ ସୁଦ୍ଧା ସେ ଐଶ୍ୱର୍ଯ୍ୟ ଭିତରେ ବୁଡ଼ି ନ ରହି ନିଜର ଦାଦା ଓଡ଼ିଶାର ତତ୍କାଳୀନ ବିଶିଷ୍ଟ ସଙ୍ଗୀତଜ୍ଞ ଗୋକୁଳ ଶ୍ରୀଚନ୍ଦନଙ୍କ ସଙ୍ଗୀତ ପ୍ରତିଭାରେ ପ୍ରଭାବିତ ହୋଇ ତାଙ୍କଠାରୁ ସଙ୍ଗୀତ ଶିକ୍ଷା କରିବାକୁ ଲାଗିଲେ । ନିଜର କୁଳଦେବତା 'ରାଧାଗୋବିନ୍ଦ ଦେବ'ଙ୍କ ଆଗରେ ପ୍ରତିଦିନ ଭକ୍ତି ସଙ୍ଗୀତ ଗାଇ ସେ ଭାବ ବିହ୍ୱଳ ହୋଇ ଯାଉଥିଲେ ।

୧୯୩୩ ମସିହାରେ କଲିକତାର ବିଖ୍ୟାତ ରେକର୍ଡ଼ କମ୍ପାନୀ 'ହିଜ ମାଷ୍ଟରସ୍ ଭଏସ୍'ରେ 'ଚିତଲ ଲୁ ଆଲିଙ୍ଗନ' ଛାନ୍ଦକୁ ରେକର୍ଡ଼ କରିଥିଲେ ଓ ତାହା ବହୁଳ ପ୍ରସାରିତ ହୋଇ ବିଶେଷ ଲୋକପ୍ରିୟ ହେବାରୁ କମ୍ପାନୀ ନିମାଇଁ ବାବୁଙ୍କୁ 'ବାଣୀକଣ୍ଠ' ଉପାଧିରେ ଭୂଷିତ କରିଥିଲେ ।

କଲିକତା ବେତାର କେନ୍ଦ୍ରରୁ ପ୍ରସାରିତ ଓଡ଼ିଆ କାର୍ଯ୍ୟକ୍ରମରେ ନିମାଇଁ ବାବୁ ୧୯୩୪ ମସିହାରେ ଓଡ଼ିଆ ଭକ୍ତି ସଙ୍ଗୀତ ଗାନ କରି ଖୁବ୍ ଲୋକପ୍ରିୟ ହୋଇଥିଲେ । ପରେ ୧୯୪୮ ମସିହାରେ କଟକଠାରେ ଆକାଶବାଣୀ କେନ୍ଦ୍ର ପ୍ରତିଷ୍ଠା ହେବାରୁ ସେ କେନ୍ଦ୍ରରୁ ପ୍ରଥମ କଣ୍ଠଶିଳ୍ପୀ ଭାବେ 'ଶ୍ରୀ ରାଧା ବାତୁଳ ପ୍ରେମ ରସାତୁଳ' ଛାନ୍ଦଟି ପ୍ରଥମେ ପରିବେଷଣ କରିଥିଲେ ।

ଭାରତ ସରକାର ନିମାଇଁ ବାବୁଙ୍କୁ ୧୯୭୬ ମସିହାରେ 'ପଦ୍ମଶ୍ରୀ' ଉପାଧି ପ୍ରଦାନ କରିଥିଲେ । ବାର୍ଦ୍ଧକ୍ୟ-ଦୁର୍ବଳତା ସତ୍ତ୍ୱେ ସେ ନିଜର ଆରାଧ୍ୟ ଦେବତା ଶ୍ରୀ ଜଗନ୍ନାଥଙ୍କ ସେବାରେ ନିଜକୁ ନିୟୋଜିତ କରିବା ଲାଗି ପୁରୀର ମାଟି-ମଣ୍ଡପ ସାହିରେ ସସ୍ତ୍ରୀକ ଅବସ୍ଥାନ କରୁଥିଲେ ।

୧୯୬୧ ମସିହାରୁ ଶ୍ରୀ ଜୀଉଙ୍କ ଶ୍ରୀସମ୍ମୁଖରେ ଚନ୍ଦନ ଅର୍ଗଳି ନିକଟରେ, ଚାପ ଉପରେ ଓ ରଥ ଉପରେ ଚାମର ସେବା ଅଧିକାର ନିମାଇଁ ବାବୁଙ୍କୁ ମିଳିଥିଲା ।

ଗ୍ରାମୋଫୋନ୍ ରେକର୍ଡ଼ ଯୋଗେ ତାଙ୍କର ବହୁ ଭକ୍ତି-ସଙ୍ଗୀତ, ଓଡ଼ିଶୀ, ଛାନ୍ଦ, ଚମ୍ପୂ ଓ ଲୋକଗୀତ ବିଶେଷ ଲୋକପ୍ରିୟ ।

ଓଡ଼ିଆ ଚଳଚ୍ଚିତ୍ର 'ଶ୍ରୀ ଜଗନ୍ନାଥ'ରେ ନିମାଇଁ ବାବୁ ଗୋଟିଏ ଭକ୍ତ ଚରିତ୍ରରେ ଅବତୀର୍ଣ୍ଣ ହୋଇ 'ଚକାଡୋଳା କମ୍ପା ଡକା ନ ଶୁଣ' ଓ 'ନୀଳସିନ୍ଧୁ ତୀରେ ନୀଳ ଅଚଳ' ସଙ୍ଗୀତ ଗାଇ ଗାଇ ଯାଉଥିବାର ଦୃଶ୍ୟ ଅଦ୍ୟାପି ଓଡ଼ିଆ ଜାତିର ମନୋରାଜ୍ୟରୁ ଅପସରିତ ହୋଇ ନ ଥିବ ।

ନିମାଇଁ ବାବୁଙ୍କ ତ୍ୟାଗପୂତ ଜୀବନ, ଆଜୀବନ ସଙ୍ଗୀତ ସାଧନା, ଆଜିର ସଙ୍ଗୀତ ସାଧକଙ୍କର ପଥପ୍ରଦର୍ଶକ ହେଉ ।

କାଠଗଡ଼ା ସାହି, କଟକ

ରେଡ଼ିଓରେ ପ୍ରଥମ ଗାନ ବିଦଗ୍ଧ ଚିନ୍ତାମଣିରୁ 'ଶ୍ରୀ ରାଧା-ବାତୁଳୀ ପ୍ରେମ ରସାତୁଳୀ' ଗାଇବାର ଗୌରବ ସେହି ଅର୍ଜନ କରିଥିଲେ । ୧୯୩୪ ଖ୍ରୀଷ୍ଟାବ୍ଦରେ ଉତ୍କଳ ସାହିତ୍ୟ ସମାଜ ଆନୁକୂଲ୍ୟରେ ଗୀତ ପ୍ରତିଯୋଗିତାରେ ପ୍ରଥମ ସ୍ଥାନ ଲଭ କରିବାରୁ ପୁରୀର ଗଜପତି ମହାରାଜା ତାଙ୍କୁ ସୁବର୍ଣ୍ଣ ପଦକ ପୁରସ୍କାର ଦେଇଥିଲେ । ଉତ୍କଳ ସଂଗୀତ ସମାଜ, ପ୍ରଜାତନ୍ତ୍ର ପ୍ରଚାର ସମିତି, ଜାମସେଦପୁର ଉତ୍କଳ ବାନ୍ଧବ ସମିତି ପ୍ରଭୃତି ବହୁ ଅନୁଷ୍ଠାନରୁ ସେ ମାନପତ୍ର ପାଇଥିଲେ । ୧୯୬୦ ଖ୍ରୀଷ୍ଟାବ୍ଦରେ ଅନୁଗୁଳ ସର୍ବୋଦୟ ସମ୍ମିଳନୀରେ ସେ ଏକ ଜଣାଣ ଗାଇଥିଲେ ।

୧୯୭୨ ମସିହାରେ ତାଙ୍କୁ ପଦ୍ମଶ୍ରୀ ଉପାଧିରେ ଭୂଷିତ କରାଯାଇ ଥିଲା । ପ୍ରଖ୍ୟାତ ମନସ୍ୱୀ କାକା କାଲେଲକର ତାହା ଶୁଣି ଲେଖିଲେ ( ତାଙ୍କ ଗାନରେ ) ମଧୁର କଣ୍ଠ, ଶୁଦ୍ଧ ରାଗ, ଭାବଗ୍ରାହୀ ସଙ୍ଗୀତ—ଏମାନେ ମିଶି ଭକ୍ତିର ବାୟୁମଣ୍ଡଳକୁ ସୁବାସିତ କଲେ ।' କେନ୍ଦ୍ର ସଙ୍ଗୀତ ନାଟକ ଏକାଡେମୀ ୧୯୫୪ ଖ୍ରୀଷ୍ଟାବ୍ଦରେ ତାଙ୍କୁ ଅଭିନନ୍ଦିତ କରିଥିଲେ । ଶେଷ ଜୀବନରେ ସେ ପୁରୀଠାରେ ଅବସ୍ଥାନ କରୁଥିଲେ । ୧୯୭୧ ଖ୍ରୀଷ୍ଟାବ୍ଦରେ ପୁରୀରେ ନିଜର ବାସ ଭବନ ଛେଦ କଲେ । ପ୍ରଭୁ ଚକାଡୋଳାଙ୍କୁ ଜଣାଣ ଶୁଣାଇବାକୁ ପ୍ରତ୍ୟହ କବି ନିତ୍ୟାନନ୍ଦଙ୍କର 'ଆରତ ଧ୍ୱଂସନ'ର ୧୦ ଗୋଟି ଗୀତ ସେ ବଡ଼ଦେଉଳରେ ବୋଲି ଶୁଣାଉଥିଲେ । 'କୃପାସିନ୍ଧୁ ଦୀନବନ୍ଧୁ ଅଘତମ ଇନ୍ଦୁ ଆହେ ଆତଙ୍କନାଶନ'ରୁ ଆରମ୍ଭ ହୋଇ 'ଆହେ ଭଗବାନ ପତିତ ନାଶନ ଆରତ ଧ୍ୱଂସନ ବିଘ୍ନହର କହେ ନିତ୍ୟାନନ୍ଦ ହେ ପ୍ରଭୁ ! ଗୋବିନ୍ଦ ଜଣାଣ ଅପ୍ରାଧ କ୍ଷମା କର'ରେ ଶେଷ ହୁଏ ।

'ଧନ ଏ ଧୂଳି ଖେଳର ଭଙ୍ଗା ବାର ହେଲା ବେଳ ଅଜଣାରେ ଜଣେ ହଜିଯିବ କେଉଁଣେ ତୋ ଜଣାରେ ଆଉ ନୋହିବ ମେଳ' ଗାଇ ଗାଇ ସେ ପରମ ବୈଷ୍ଣବ ଧାମ ଲାଭ କଲେ । ତାଙ୍କର ଲଳିତ ସ୍ୱର, ମନୋରମ କଣ୍ଠ, ହରି-ଭକ୍ତି ନିମଜ୍ଜିତ ପ୍ରେମ ପୁଲକ ଶିହରଣ ଭକ୍ତର ହୃଦୟକୁ ରସାପ୍ଲୁତ କରିବ । ବାହୁଡ଼ା ଏକାଦଶୀରେ 'ରାଧେ ଗୋବିନ୍ଦ ଭଜ, ଭଜ ନନ୍ଦନନ୍ଦନ ବଂଶୀବଦନ ବୃନ୍ଦାବନଚନ୍ଦ୍ର ଭଜ' ଗାଇ ସେ ନିତ୍ୟ ଧାମକୁ ବାହୁଡ଼ିଲେ ।



# ଶ୍ରୀମନ୍ଦିରରେ ତାଙ୍କର ନିତ୍ୟଚର୍ଯ୍ୟା

**ଶ୍ରୀ ଲଳିତ କୁମାର ବାରିକ**

ପ୍ରାତଃ କାଳ ହେଉ ସନ୍ଧ୍ୟା ହେଉ ଯେତେବେଳେ ଦୁଆର ଫିଟା ହେବ, ସେ ନିମାଇଁ ଚରଣ ହରିଚନ୍ଦନ ବାଣୀକଣ୍ଠ ନିର୍ମିତ ଗ୍ରେଟେଇ ଗ୍ରେଟେଇ ଭିତରକୁ ମହାପ୍ରସାଦ ଆସିବା ପୂର୍ବରୁ ଆସି କୂର୍ମ ଚନ୍ଦନୀରେ ବସନ୍ତି । ବାଡ଼ଟି ପାଖରେ ଗୋଟିଏ କନା ମୁଣିରେ ଭାଗବତ ପାଠଚତୁଷ୍ଟୟ ଓ ସହସ୍ରନାମ ବି ପଠନୀୟ ଗ୍ରନ୍ଥ । ଶିରରେ ତିଳକ ହାତରେ ଡ଼େଉଁରିଆ ତାବିଜ, ଅଣ୍ଟାରେ ଗାମୁଛା ଚିନ୍ତା ବ୍ରହ୍ମବସ୍ତ୍ର ପାଟ, ଦାନ୍ତରେ ଗୁଆ ଖିଲ, ମୁହଁରେ ହସ ସଙ୍ଗୀତର ଭାବ ।

ସେଠାରୁ ଦୁଆର ଫିଟିଲେ ବାଇଶି ପାହାଚର ଆଠ ପାହାଚ ପର୍ଯ୍ୟନ୍ତ ଯାଇ ସେଠାରେ ସମାଭିଷେକ ପାଖରେ ବସନ୍ତି । ଭାଗବତ ଅଧ୍ୟାୟେ ପରେ ଆଳତି ବେଳକୁ ଭିତର ଦର୍ଶନକୁ ବିଜେ କରନ୍ତି । ବାଁ ପଟେ ସଦାଶିବ ରଥେ ଡ଼ାହାଣ ପଟେ ହରିଚନ୍ଦନ । ସେ ପରି କେନ୍ଦ୍ରାପଡ଼ା ବଳଦେବ ଜୀଉଙ୍କ ଭେଟ । ବଡ଼ ଠାକୁରଙ୍କ ପଟେ ତାଙ୍କ ଦର୍ଶନ । ସେଠାରୁ ଆଳତି ସରିଲେ ଭିତରଛୁଙ୍କ ଠାରୁ ତୁଳସି ଗ୍ରହଣ କରି ହସ ହସ ମୁହଁରେ ମୁକୁଳ ଦ୍ୱାର ଦେଇ ଆସନ୍ତି ଜଗମୋହନକୁ । ଗରୁଡ଼ସ୍ତମ୍ଭ ପାଖରେ ରହିଲେ ପ୍ରଭୁଙ୍କର ସେବା, ପାଦରେ ନୃତ୍ୟ ଭଙ୍ଗୀ, ହାତରେ ଚାମର ମୁହଁରେ ଚକାଡୋଳା ହେ । ଝାଳ ବୋହି ଯାଉଥିବ । ୧, ୨, ୩, ମନ ମାନିବ । ସେ ମୁଣ୍ଡ ଟେକିଲେ । ନିଜେ ସାତ ପାହାଚ ଦେଇ ଭୀମସେନ ସାହୁ ଦୀପ ବିକ୍ରେତାଙ୍କ ପାଖକୁ । ତାଙ୍କ ଜୀବନରେ ସେ କେତେ ବ୍ୟକ୍ତି ସହିତ ବା ମିଳନାହାନ୍ତି ମାତ୍ର ନିତ୍ୟ ସମ୍ବନ୍ଧ କେତେଗୁଡ଼ିଏ ବ୍ୟକ୍ତିଙ୍କ ସଙ୍ଗେ ଥିଲା ତାଙ୍କ ପ୍ରାଣେଶ୍ୱରଙ୍କୁ କେନ୍ଦ୍ର କରି । ଏଠାରେ ସେପରି କେତେକ ନାମ ଆସିବ ଯେଉଁମାନଙ୍କ ନାଆଁ ସେ ସବୁଦିନ ଧରୁଥିଲେ । ତେଣୁ ସେପରି ଜଣଙ୍କ ନାମ ଭୀମ । ତାଙ୍କ ପାଖରେ ଚାମର ପୋଥିପତ୍ର ଗାମୁଛା ସବୁ ଦ୍ରବ୍ୟର ଭଣ୍ଡାର । ତାଙ୍କ ଦେହରୁ ଝାଳ ବୋହିଲେ ଭୀମ ଆପଣା ମୁହଁ ପୋଛେ । ସେ ଦୋକାନରେ ଅଧଘଣ୍ଟା ବୈଠକ । ତେଣେ ସତ୍ସଙ୍ଗ ସରେ । ଚରଣ ପିଲେ ରଥଶର୍ମାଙ୍କ ସହ ଆସି ଭୀମ ଦୋକାନ ପାଖେ ପହଞ୍ଚନ୍ତି । ସେଠାରେ କୋଳାକୋଳି ପାଦ ଛୁଆଁ ଛୁଇଁ । ଏଇଦୃଶ୍ୟ ଦେଖିବାକୁ ଗାଁ ବଣ୍ଟୁବାବୁ (ପୁଅର ନିଯୋଗ) ମହାପୁଆରେ କେତେଜଣ ଠିଆ ହୋଇଥାନ୍ତି, ଦୁହେଁ ଚାଲନ୍ତି ବାଇଶି ପାହାଚ ଆଡେ ପୋଡ଼ା ଦ୍ୱାର ଦେଇ । ହସରେ କୈବଲ୍ୟ କଣିକା । ବଳଭଦ୍ର ସେ ଛୁଆରେ ଠାରୁ ଅବକାଶ ଜଳ ଯେଉ ବାଇଶି ପାହାଚ ଦେଇ ଦୀର୍ଘ ତିନ ଘଣ୍ଟା ପରେ ବାହାରକୁ ଆସନ୍ତି । ମୋଡ଼ ହୁଏ ବଡ ଛତା ମଠକୁ । ସାଧୁ ଦର୍ଶନ ଲାଳସା ଯେନି, ଢ଼ାଳନ୍ତି ଚାମର, ବଜାନ୍ତି ଗିନି । ରଘୁନାଥଙ୍କୁ ଦର୍ଶନ କରି ଗୋପୀବାବୁଙ୍କ ଦୋକାନରେ ସାମାନ୍ୟ ବୈଠକ । ଲୁଗାପଟା କାଢ଼ିଦେଇ ସ୍ନାନ ବିଶ୍ରାମ ମାରି, ପଚାରିବେ—ଗଲେଣି ? ଗୋପୀନାଥ ପଣ୍ଡା ତରଫ ଗୋପୀବାବୁ ଶିଷ୍ଟ, ଗମ୍ଭୀର, ଧର୍ମପରାୟଣ ପାନ ଦୋକାନର କର୍ତ୍ତା ଜଗତ ସାହୁଙ୍କର ପରିଚିତ । ହସ ହସ ମୁହଁ । ଗୋପୀ କହନ୍ତି—ଏବେ ତ ଏତିକି ଧରେ ଖଣ୍ଡିଏ ପାନ ସାରି ଟିକେ ଯିବା । ସକାଳ ଘ ୪ । ୩୦ ରୁ ଘ ୯ । ୩୦ ପର୍ଯ୍ୟନ୍ତ ନିତ୍ୟ କାର୍ଯ୍ୟକ୍ରମ । କେତେ ବର୍ଷ ଧରି ଅବିକଳ ଚାଲିଥିଲା ।

ବରି ବର୍ଷା, ଝଡ଼, ଦୀର୍ଘ ବର୍ଷ ବର୍ଷ ଧରି ଏହି ନିର୍ଦ୍ଧାରିତ କାର୍ଯ୍ୟକ୍ରମ ତାଙ୍କର ଚାଲିଥିଲା । ତାକୁ ସେ ଜୀବନର ଶ୍ରେଷ୍ଠ ପରିଣତି ବୋଲି ଧରି ନେଇଥିଲେ । ଏଥିରେ ଥିଲା ଦିବ୍ୟ ଆନନ୍ଦ । ସାଂସାରିକ ସମ୍ବନ୍ଧ ଠାରୁ ବହୁଗୁଣରେ ଶ୍ରେଷ୍ଠ ବନ୍ଧୁ, ସେ ଚାଲି ଯାଇଛନ୍ତି, ମାତ୍ର ସେ ଦୃଶ୍ୟ ଏବେ ସିଂହଦ୍ୱାରରେ ସାକ୍ଷୀ ରହିଛି ଶତ ନେତ୍ରରେ । ତା' ମଧ୍ୟରେ ମୁଁ ଜଣେ ଗ୍ରେଟିଆ ।

# ଅନୁଭୂତି

॥ ଏକ ॥

## ଶ୍ରୀ ଦେବ ନାରାୟଣ ସିଂହ

ବାଣୀକଣ୍ଠ ଏକମାତ୍ର ଭକ୍ତ ସଙ୍ଗୀତ ଗାନ କରନ୍ତି । ଶ୍ରୀ ଜଗନ୍ନାଥଙ୍କର ଅନୁପାମ ଗୁଣ ଜଣାଣ ରଚନା କି ଗାନ-ରସିକମହଲରେ ଆଦୃତ ଥିବାରୁ ସେ ପ୍ରଙ୍କ ଅନୁରୋଧ କ୍ରମେ ସମୁଦାୟ ଆଠଟି ଗୀତ ରେକର୍ଡ଼ିଂ କରିବାକୁ ଗଲେ ।

ସାତଟି ଗୀତ ରେକର୍ଡ଼ିଂ ହେବା ପରେ ଅଷ୍ଟମ ଗୀତ ରେକର୍ଡ଼ିଂ ବେଳେ ଜଣାଗଲା ଦ୍ୱିତୀୟ ପଦର ଦୁଇଟି ଧାଡ଼ି ନାହିଁ, ତାହା ଅସମ୍ପୂର୍ଣ୍ଣ । ତେଣୁ ସେ ଥରେ ବିବ୍ରତ ହୋଇ ଆଖି ବୁଜିଲାବେଳେ ଶ୍ରୀଜଗନ୍ନାଥଙ୍କୁ ସ୍ମରଣା କରି ପାଦ ପୂରଣ କରି ରେକର୍ଡ଼ିଂ ଶେଷ କଲେ ।

ତାହା ପରର ହେବାର ପାଖ ଛଅମାସ ପରେ ଦେବ-ନାରାୟଣ କଟକରୁ ଶ୍ରୀଜଗନ୍ନାଥ ଦର୍ଶନକୁ ଯାଇଥିଲେ । ଦର୍ଶନ ସାରି ବାଣୀକଣ୍ଠଙ୍କୁ ସାକ୍ଷାତ କରିବା ପାଇଁ ମନ୍ଦି-ମଣ୍ଡପ ପାଖ ଜଗନ୍ନାଥ ବଲ୍ଲଭଙ୍କୁ ଦୁଇଜଣ ସଂଗୀତଜ୍ଞଙ୍କ ସହ ଏବଂ ପାଣ୍ଡୁଲିପି ସହ ଯାଇ ଭେଟିଲେ । ସାଥୀମାନେ ବସିବା ପରେ ସେ ତାଙ୍କର ଅନୁଭୂତିର ଅଧ୍ୟାୟ ଆରମ୍ଭ କଲେ—ପ୍ରାୟ ପଚିଶ ବର୍ଷ ସଙ୍ଗୀତ ପରିବେଷଣ କରି ଏପରି କେବେ ମୁଁ ଷଣ୍ଡିଆ ହୋଇ ନ ଥିଲି । ଏ ନବୀନ ଲେଖକମାନଙ୍କ ମନ ବଡ଼ ଚଞ୍ଚଳ ଏବଂ ଅସ୍ଥିର । ମୁଁ ମୋର ବିନାନୁମତିରେ ରେକର୍ଡ଼ିଂ ବେଳେ ଶ୍ରୀଜଗନ୍ନାଥଙ୍କୁ ସ୍ମରଣା କରି ତାଙ୍କ କରୁଣାରୁ ଏଇ ପାଦ ପୂରଣ କରିଅଛି । ତେଣୁ ଇଏ ଦୋଷୀ । ଏହି ବିଜ୍ଞମୂନା ସେପ୍ଟ ଶୁଣି ଦେବନାରାୟଣ ପାଟରେ ଥିବା ପାଣ୍ଡୁଲିପି ଖୋଲି ମିଳାଇଲେ ଯାହାକି ସଫଳ 'ଝ' ଅନୁପସ୍ଥ ଚରଣର ଅନୁରୂପ । 'ଅଇଲୁ କାଗଜ କହୁ ମୋତେ ଠାଣ ଅଛନ୍ତି ଜପଇ ନାଥ ଦେ ।'

ଜଣାଗଲା କବିଙ୍କ ଦ୍ୱାରା ଉପରୋକ୍ତ ଧାଡ଼ି ଲେଖା ନ ହୋଇ ପାଣ୍ଡୁଲିପିରେ ରହି ଯାଇଅଛି । ପାଣ୍ଡୁଲିପିରେ ଯାହା ଅଛି ପାଦ ପୂରଣ ମଧ୍ୟ ସେଇଆ ହୋଇଛି । ଏକଥା ଦେବ ନାରାୟଣ ପ୍ରଥମେ ଜାଣିପାରି ଅଶ୍ରୁ ଛଳ ଛଳ ନୟନରେ ପାଟି କରି କହି ଉଠିଲେ—କିଏ କହେ ସେ ଅନ୍ତର୍ଯ୍ୟାମୀ ନୁହନ୍ତି ?

"ସ୍ମର ଗରଳ ଖଣ୍ଡନଂ ମମ ଶିରସି ମଣ୍ଡନଂ
ଦେହି ପଦ ପଲ୍ଲବ ମୁଦାରମ୍ ।"

ସେ ଆବେଗ ବିହ୍ୱଳ ହୋଇ ବାଣୀକଣ୍ଠଙ୍କ ପାଦଯୁଗଳକୁ ଜାବୁଡ଼ି ଧରି କହି ଉଠିଲେ—ଆପଣ ମୋର ଜଗନ୍ନାଥ । ବାଣୀକଣ୍ଠ ମଧ୍ୟ ଅଶ୍ରୁ ଛଳଛଳ ନୟନରେ କୁଣ୍ଢାଇ କହି ଉଠିଲେ—ତୁ ମୋର ବାତ୍ସଲ୍ୟ ରୂପୀ ଜଗନ୍ନାଥ । ଉଭୟଙ୍କ ଆଖିରୁ ଶ୍ରାବଣର ଧାରା ପ୍ଳାବନ ବୋହି ଚାଲିଲା । ସମସ୍ତେ ସ୍ତମ୍ଭୀଭୂତ । ସେହିଦିନ ଠାରୁ ଉଭୟଙ୍କ ମଧ୍ୟରେ ମମତାର ନିବିଡ଼ ବନ୍ଧନ ବଢ଼ି ଚାଲିଲା । ତାହାର ପ୍ରମାଣ ଅଛି ମଠେଶ୍ୱରରେ ବାଣୀକଣ୍ଠ, ଯେ ଅମର ସୃଷ୍ଟି ଥିବା ପର୍ଯ୍ୟନ୍ତ ।

## ॥ ଦୁଇ ॥

ସନ ୧୯୯୩ ମସିହା ବାହୁଡ଼ା ପୂର୍ବଦିନ । ହଠାତ୍ ପୁରୀରୁ ଚିଠି ପାଇଲି ଯେ, ଭାଇ ଦେହ ଅସୁସ୍ଥ । ସହସା ଡାକଘର ଚାକିରୀରୁ ଛୁଟି ମଞ୍ଜୁରୀ କରି ସସ୍ତୀନ ରାତି ନଅଟାରେ ସମ୍ବଲପୁର ଏକ୍ସପ୍ରେସ୍ ବସ୍ ଫେଲ୍ ହୋଇ ଘଟ୍ଟୋଇ ବସ୍‌ରେ ରାତି ଦୁଇଟାରେ ପୁରୀରେ ପହଞ୍ଚିଲି । ସେତେବେଳେ ଭାଇଙ୍କର ପକ୍ଷାଘାତ ହୋଇ ଯାଇଥିଲା । ଯାହାହେଉ ନବମୀ ସନ୍ଧ୍ୟା ଦର୍ଶନ ଉପଲକ୍ଷେ ଆଡ଼ପ ମଣ୍ଡପ ମାହାର୍ଦ ଆସିଥିଲା । ତାହା ଆଗ୍ରହ ସହିତ ପାଇଲୁ ।

ରାତିରେ ପିତାଙ୍କ ସହିତ ଆଳାପ ଆଲୋଚନାରେ ସେ କହିଲେ ବାଣୀକଣ୍ଠ ଶରଧା ବାଲି ସଙ୍ଗୀତ ସମାରୋହ ଏବର୍ଷ ମଧ୍ୟ ଉନ୍ମୋଚନ କରିଥିଲେ ଏବଂ ଆଜି ରାତିରେ ମଞ୍ଚ ଉପରେ ଅଡ଼ପ ଦର୍ଶନ ବେଳେ ଦୁଇଟି ଜଣାଣ ବୋଲିଥିଲେ । ଭାରି ମର୍ମସ୍ପର୍ଶୀ ହୋଇଥିଲା । ତୁମେ ନ ଆସିବାରୁ କିଛିଦିନ ତଳେ ଦେଉଳରେ ଦେଖା ବେଳେ ତୁମ କଥା ପଚାରୁଥିଲେ ଏବଂ ଖୋଜୁଥିଲେ । ପୁଣି ବାଣୀକଣ୍ଠ କହିଲେ—ଦେବ ସହିତ ଦୀର୍ଘ ଆଠମାସ ହେବ ଦେଖା ହୋଇ ନାହିଁ । ସେ ଆସିଲେ ତାକୁ କହିବେ, ମୋ ସହିତ ସାକ୍ଷାତ କରିବ ।

ରାତି ପାହିଲା । ଆଜି ବାହୁଡ଼ା ଦଶମୀ । ପରିବାର ଅସୁସ୍ଥତା ଯେନ ଆସିଥିଲି ଭାଇଙ୍କୁ ଦେଖିବା ପାଇଁ, ଦେଖିଲି ଭଲ ଅଛନ୍ତି । ସେତିକିବେଳେ ମନେ ମନେ ଭାବିଲି ଶ୍ରୀଜଗନ୍ନାଥଙ୍କ ତୋଷ ମୋତେ ବାହୁଡ଼ା ଦର୍ଶନ କରିବା ପାଇଁ ବାଡ଼ମୂନା କରି ଟାଣି ଆଣିଲା ।

ପ୍ରାୟ ସକାଳ ସାଢ଼େ ଆଠଟା ବେଳେ ବାହାରିଲି ବଡ଼ଦାଣ୍ଡକୁ ଦର୍ଶନ କରିବ ଏବଂ ବାଣୀକଣ୍ଠଙ୍କୁ ସାକ୍ଷାତ କରିବ । ସେତେବେଳେ ପବନ ସହ ଝିପି ଝିପି ଲଗାଣ ବରଷା ଲାଗି ରହିଥାଏ । ଦାଣ୍ଡ ଦୁଆରେ ହଠାତ୍ ଜଣେ ଭଦ୍ରମହିଳାଙ୍କ ସହିତ ସାକ୍ଷାତ ହୁଏ । ସିଏକି ପୁରୀ ସଦର ଡାକ୍ତର-ଖାନାରେ ସେବିକା କାର୍ଯ୍ୟ କରନ୍ତି ଏବଂ ମୋର ପରିଚିତ । ରାତି ଡିଉଟି ଶେଷକରି ଫେରିଲା ବେଳେ ପଚାରିଲେ—ଦାଦା ନମସ୍କାର, କେବେ ଆସିଛନ୍ତି, କୁଆଡ଼େ ବାହାରିଲେ ? ପ୍ରତି ନମସ୍କାର ଜଣାଇ ଉତ୍ତର ଦେଲି—ଗତ ରାତି ସମୟ ଦୁଇଟାରେ ଆସି ପହଞ୍ଚିଲି, ବର୍ତ୍ତମାନ ଦର୍ଶନକୁ ଏବଂ ବାଣୀକଣ୍ଠଙ୍କୁ ସାକ୍ଷାତ କରିବା ପାଇଁ ବାହାରିଲି ।

ଭଦ୍ର ମହିଳା ହଠାତ୍ ପାଟି କରି କହିଲେ—କେଉଁ ବାଣୀକଣ୍ଠ, ସେତ ରାତି ସାଢ଼େ ଚାରିଟା ସମୟରେ ଇହଧାମ ତ୍ୟାଗ କଲେ । ଆମେ ଆଉଟ୍‌ଡୋରରେ ପରୀକ୍ଷା-କରି ତାଙ୍କ ଶବକୁ ତାଙ୍କ ଘରକୁ ପଠାଇ ଦେଇ ବର୍ତ୍ତମାନ ଫେରୁଛୁ ।

ଏହି ବିଷାଦପୂର୍ଣ୍ଣ ବାର୍ତ୍ତା ଶୁଣି ଅସହାୟ ହୋଇ ଛୁଟି ଚାଲିଲି ବଡ଼ ଦାଣ୍ଡକୁ ବରଷା, ପବନ ଭେଦ କରି । ବଳଗଣ୍ଡି ପାଖରେ ମୋର ସଙ୍ଗୀତଜ୍ଞ ବନ୍ଧୁ ଗଣେଶ ବାବୁଙ୍କୁ ଭେଟି ଏହି ମର୍ମସ୍ପର୍ଶୀ ବିଷୟ ପଚାରିବାରେ ସେ କିଛି ଏ ପର୍ଯ୍ୟନ୍ତ ଖବର ପାଇ ନାହାନ୍ତି ବୋଲି କହିଲେ । ସେଠାରୁ ଉଭୟେ ବରଷା ପବନ ଭେଦ କରି ମାଟିମଣ୍ଡପ ସାହି 'ଜଗନ୍ନାଥ ନିବାସ'କୁ ଛୁଟିଲୁ । ପହଞ୍ଚିଲା ବେଳକୁ ଶ୍ରୀଜଗନ୍ନାଥ ଗବେଷକ ମାନ୍ୟବର ରଥଶର୍ମା ମହାଶୟ ଏବଂ ଆଉ ଜଣେ ଭଦ୍ରସଜ୍ଜନ ତାଙ୍କ ଦୁଆରୁ ଓହ୍ଲାଇ ଆସୁଛନ୍ତି । ଆମେ ବାରଣ୍ଡା ଅତିକ୍ରମ କରି ଦାଣ୍ଡଘରେ ପଦାର୍ପଣ କଲା-ମାତ୍ରେ ଦେଖିଲୁ ବାଣୀକଣ୍ଠଙ୍କର ମରଶରୀରକୁ ରଥଶର୍ମା ମହାଶୟ ଶ୍ରୀ ଶ୍ରୀ ଜଗନ୍ନାଥଙ୍କର ପଦ୍ମମାଳରେ ଆଚ୍ଛାଦିତ କରି ଯାଇଛନ୍ତି ।

ସେତେବେଳେ ସମୟ ପ୍ରାୟ ଦିବା ଦଶଘଣ୍ଟା ହେବ, କେହି ଆଗନ୍ତୁକ ଆସି ନାହାନ୍ତି । ବାଣୀକଣ୍ଠଙ୍କର ପରିବାର ହିଁ ଉପସ୍ଥିତ ଅଛନ୍ତି । ଆମକୁ ଦେଖି ହଠାତ୍ 'ମାମା ବାଣୀ-କଣ୍ଠଙ୍କର ସହଧର୍ମିଣୀ ଏବଂ ଗଜେନ୍ଦ୍ର ବାବୁ ତାଙ୍କର ମଧ୍ୟମ ପୁଅ ଏବଂ ପୁତ୍ରବଧୂ ସମସ୍ତେ ଏକ କରୁଣ ସ୍ୱରରେ କହି ଉଠିଲେ—ତୁମେ ଦେବ ବାବୁନା, ତୁମେ କିପରି ଆସିଲ ? ତୁମେ ତ କଟକରେ ଡାକଘରେ ଚାକିରି କର । ପୁଣି କହିଲେ—ତୁମକୁ କିଛି ଦିନ ତଳେ ଭାରି ଖୋଜୁଥିଲେ । ଆଜି ସେଇ ଖୋଜିବାର ବା ଭଲ ପାଇବାର ଫଳ କେନେ ଅଙ୍ଗରେ ଉପଲବ୍ଧି କରିଛୁ ଯେ କିପରି ତୁମେ ଅନ୍ତିମ ସମୟରେ କଟକରୁ ଆସି ପହଞ୍ଚିଲ । ମୋ ଆଖିରୁ ଲୁହ ଗଡ଼ି ପଡ଼ିଲା ।

\+ \+ \+

ଆଜି ଆମେ ତାଙ୍କୁ ହରାଇଛୁ ସତ, କିନ୍ତୁ ତାଙ୍କ ଭାବ-ଧାରାକୁ ଭୁଲିବୁ ନାହିଁ । ସଙ୍ଗୀତ ଥିଲା ତାଙ୍କର ଜୀବନ, ନ ଥିଲା ତାଙ୍କର ଜୀବିକା । ●

ରାମଚଣ୍ଡୀ, ବୃନ୍ଦାବନଚୌକ, କଟକ-୨

# ସର୍ବେ ଚଳିବେ

**ଶ୍ରୀ ବିଷ୍ଣୁଚରଣ ବିଶ୍ୱାଳ**

ସମସ୍ତ ବଳବାନ, ମନୁଷ୍ୟ ବଳବାନ ନୁହେଁ । ଏହା ପ୍ରମାଣ ହୋଇଥିଲେ ମଧ୍ୟ ନିମାଇଁ ବାବୁଙ୍କ ପକ୍ଷେ ଏହା ହୋଇ ନାହିଁ । ସେ ନିଜ ବଳରେ ଚାଲିଗଲେ । ପୁରୁଷୋତ୍ତମ ଧାମରେ ଇହଲୀଳା ସାଙ୍ଗ କରିବା ନିମନ୍ତେ ବହୁ ସାଧକ ପୁରୀକୁ ଆସିଛନ୍ତି. କିଛୁନା କିଛୁ ଅଲୌକିକ ଶକ୍ତି ପ୍ରକଟ କରି ଯାଇଛନ୍ତି । କାଳ ବଳରେ କେହି ରହିବେ ନାହିଁ ; କିନ୍ତୁ ନିମାଇଁ ବାବୁ ନିଜ ଇଚ୍ଛାରେ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଠାରୁ ସମସ୍ତ ସୁବିଧା ଦେଖି ବିଦାୟ ନେଲେ । ଏପରି ବିଦାୟ ମାଗି ଆଣି ନିଜ ଇଚ୍ଛାରେ, ଚାଲିଯିବା ବ୍ୟକ୍ତି ଖୁବ କମ୍ ଦେଖାଯାନ୍ତି । ସେପରି ସାଧନା ନ ଥିଲେ, ଏହା ହୋଇ ପାରିବ ନାହିଁ ।

ପାଖ ୧୨ ବର୍ଷ ହେବ ଯେପରି ମୋ ସାଥିରେ, ଚଳି ଆସିଥିଲେ, ତାହା କେବଳ 'ମା', ନିମାଇଁ ବାବୁଙ୍କ ସ୍ତ୍ରୀ ଓ ଗଦାଧର ଭାଇନାଙ୍କୁ ଜଣା । ପୁରୀକୁ ଆସିବା ପରେ କେତୋଟି ଘଟଣା ଲେଖୁଛି । ପୌଷ ମାସରେ ଶ୍ରୀଜଗନ୍ନାଥଙ୍କର ପହିଲି ଭୋଗ ଖୁବ ସକାଳୁ ହୁଏ । ନିମାଇଁ ବାବୁ ଦୈନିକ ପହିଲି ଭୋଗ ସେବା କରିବା ସଙ୍ଗେ ସଙ୍ଗେ ତାଙ୍କର ପ୍ରିୟମାନଙ୍କୁ ଡାକି ତାଙ୍କ ଘରେ ପ୍ରସାଦ ଖୁଆନ୍ତି । ଗତ ଦଶବର୍ଷ ହେବ ଆମେ ପାଞ୍ଚଜଣ । ଯଥା—ପୂଜ୍ୟ ଗୁରୁଜୀ ରାମଚନ୍ଦ୍ର ଦାସ ( ରାମଦାସ୍ତା ପରିଷଦ ) ସାମନ୍ତ ସୋମନାଥ ପୂଜା ପଣ୍ଡା, ଗୋପୀନାଥ ପତି, ଗୋପୀନାଥ ପାଣି ଓ ଏଇ ଲେଖକ ଏକାଠି ପହିଲି ଭୋଗ, ସେବା କରୁ । ଦୈବାତ୍ ଗୋଟିଏ ବର୍ଷ ନିମାଇଁ ବାବୁ ଅଠଗଡ଼ ଚାଲିଗଲେ । ପ୍ରାୟ ପୂଷ ମାସକି ବିତି ଯିବାକୁ ଦୁଇ ତିନିଦିନ ଥାଏ । ଆମେ ସମସ୍ତେ ଅପେକ୍ଷାରେ ଥାଉ ନିମାଇଁ ବାବୁ ଆସନ୍ତୁ ପହିଲି ଭୋଗ ଖାଇବା । ହଠାତ୍ ଖଣ୍ଡିଏ ଚିଠି, ନଗଦ ଦଶଟଙ୍କା ଜଣେ ବ୍ୟକ୍ତି ଅଠଗଡ଼ରୁ ଆସି ସିଂହଦ୍ୱାର ଗୋପୀନାଥଙ୍କ ଦୋକାନରେ ଦେଲେ । ସେଥିରେ ଲେଖାଥିଲା ମେ ଭାଗ୍ୟରେ ତମମାନଙ୍କ ସହ ଏ ବର୍ଷ ପହିଲି ଭୋଗ ଖାଇବାକୁ ନାହିଁ ଇତ୍ୟାଦି ଇତ୍ୟାଦି । ବହୁ ପ୍ରକାର ଲେଖାର ଶେଷରେ ଥିଲା ତୁମେମାନେ ପହିଲି ଭୋଗ ଖାଇବ, ବନ୍ଦ କରିବ ନାହିଁ । ଏଥିରୁ ଜାଣିବେ ନିମାଇଁ ବାବୁଙ୍କ ଖିଆଲ କିପରି ଓ ତାଙ୍କର ନିଜ ସାଙ୍ଗ ସାଥିଙ୍କ ପ୍ରତି ମମତା କିପରି ?

ସବୁଦିନେ ସକାଳୁ ମଙ୍ଗଳ ଆଳତି ଦର୍ଶନକୁ ଆସି, ଭୀମ ସାହୁ ଦୀପ ଦୋକାନରେ ଚାମର ଓ ଝୋଲିମୁଣ୍ଡାଟି ରଖନ୍ତି । ଦୁଆର ଖୋଲିବା ସଙ୍ଗେ ସଙ୍ଗେ ଭଜନ ବୋଲି ଚାଲେ । ସେ ସାଧାରଣ, ଲୋକଦେଖା ଭଜନ ନୁହେଁ । ଆଖିରୁ ଧାର ଧାର ଲୁହ ବୋହି ଯାଉଥିବ । କଣ୍ଠ ରୁଦ୍ଧ ହୋଇ ଯାଉଥିବ । ଏପରି ଖୁବ୍ କମ୍ ବ୍ୟକ୍ତିଙ୍କୁ ଦେଖିବାକୁ ମିଳନ୍ତି ।

ମଙ୍ଗଳ ଆଳତିରୁ ଫେରିବା ପରେ ପରେ ମୋର ତ ଦେଖା ହୁଅନ୍ତି । କହନ୍ତି, ବିଷ୍ଣୁବାବୁ ମୋ ଫାଇଲ୍ ତ ବିଚାର ହେଲା ନାହିଁ । ମୁଁ କହେ— ସେ ଯେଉଁ ଦରବାର ସେଥିରେ ଯେଉଁ ରାୟ ମିଳିବ, ଠିକ୍ ରାୟ ମିଳିବ । ତମେ ତର-ବର ହୁଅ ନାହିଁ । ପ୍ରାୟ ସବୁ ଦିନେ ଏହି ବିଷୟ ଆଲୋଚନା ହୁଏ ।

ଗତ ଦୁଇ ବର୍ଷ ତଳେ ଏହି କଥା ଆଲୋଚନା ସମୟରେ, ମୁଁ କହିଲି—ବାବୁ ତମେ ପେସ୍କାରଙ୍କୁ ଏକଥା କହୁନା । ସେ କହିଲେ—ମୁଁ ଖୋଦ୍ ହାକିମଙ୍କୁ କହୁଛି । ପୁଣି ପେସ୍କାର କିଏ ? ମୁଁ କହିଲି—ତମେ ପେସ୍କାର ଚିହ୍ନିନା । ଏଣୁ ତୁମ ଦରଖାସ୍ତ ହାକିମଙ୍କ ନିକଟରେ ପହଞ୍ଚି ପାରିନାହିଁ ।

କାଲିଠାରୁ ପ୍ରଥମେ ଆସି ପେସ୍କାରଙ୍କ ପଛପଟେ ରହି ତମର ଦୈନିକ ଆପତ୍ତି ଜଣାଅ । ତା' ପରେ, ହାକିମଙ୍କୁ

ଦେଖା କରିବ । ଖୁବ୍ ହସିଲେ, କହିଲେ—ବୁଝିଗଲ, ଗରୁଡ଼, ଭଗବାନଙ୍କ ପଛରେ ଗୀତ ଗାଇବାକୁ ତମେ କହୁଛ ।

ସେହିଦିନ ଠାରୁ ଗରୁଡ଼ ଭଗବାନଙ୍କ ପଛରେ, ଦୁଇଟା ଭଜନ ଅଧିକ ବୋଲା ହେଲା ।

ସ୍ୱପ୍ନର ଶୀଘ୍ର ହୋଇଗଲା । ସ୍ୱପ୍ନ ଶୀଘ୍ର ପାରିଗଲେ । ଗତ ୧୯୮୭ ଜୁଲାଇ ୧୯ ତାରିଖ ଗୁଣ୍ଡିଚା ଘର (ଆଡପ ଦର୍ଶନ) ପରେ । ସକାଳ ପ୍ରାୟ ଦିନ ୮ ଘଣ୍ଟା ବେଳେ (ମଙ୍ଗଳ ଅଳଡ ଦର୍ଶନ) ସରିବା ପରେ ସମସ୍ତେ ବାହାରକୁ ବାହାରି ଆସୁଛନ୍ତି । ହଠାତ୍ ମୋ କାନ୍ଧରେ ହାତଟି ଯୋଡରେ ରଖିଦେଲେ କହିଲେ—ଆଜି ବହୁତ କରି କହୁଛି, ମୋ ପାଇଁ ସ୍ୱପ୍ନର କରିବା ନମସ୍ତେ । ତା' ପରେ ମଙ୍ଗଳ ଅଳଡ ମୋ ହାତକୁ ବଢାଇ ଦେଲେ । ତା' ପରେ ଆଉ ମୋ ସହ ସାକ୍ଷାତ ହୋଇ ପାରିଲା ନାହିଁ ।

ଜୁଲାଇ ୨୦ ତାରିଖ ବାହୁଡ଼ା ଯାତ୍ରା । ଦିଅଁ ଫେରିବେ ହେବେ ନିଜର ନିତ୍ୟକର୍ମ ପରେ । ଫିରିବାକୁ ବାହାରିବା ବେଳେ ଆକାଶବାଣୀ ସମ୍ବାଦରୁ ଶୁଣିଲି, ନିମାଇଁ ବାବୁଙ୍କ ସ୍ୱପ୍ନର ଶେଷ ହୋଇଛି । ବର୍ଷା ହେଉଛି, ସାଙ୍ଗେ ସାଙ୍ଗେ ମାଟିମଣ୍ଡପ ସାହି ବାସଭବନକୁ ଗଲି । ମୋ ପାଟିରୁ କିଛି କଥା ବାହାରୁ ନଥିଲା । କାହାକୁ କି ସାନ୍ତ୍ୱନା ଦେବି ? ପାଦ-ତଳେ ମୁଣ୍ଡଟି ଲଗାଇ ଲୁହରେ ନୀରବ ହୋଇ ଫେରିଲି ।

ନିମାଇଁ ବାବୁଙ୍କ, କଣ୍ଠସ୍ୱର ଯେ କେହି ଥରେ ଶୁଣିଛି, ତାଙ୍କୁ ନ ଦେଖି ମଧ୍ୟ ଚିହ୍ନି ପାରିଛି । ଓଡ଼ିଶାରେ ଘରେ ଘରେ ନିମାଇଁ ବାବୁଙ୍କୁ ସମସ୍ତେ ଜାଣନ୍ତି । ଅବଶ୍ୟ ସମସ୍ତେ ଦେଖି ପାରି ନ ଥିବେ ।

ବାଣୀକଣ୍ଠ ଅମର । ତାଙ୍କ ସ୍ୱର ଅମର । ତାଙ୍କ ସଙ୍ଗୀତ ଅମର । ତାଙ୍କ ଭକ୍ତି ଅମର । ଓଡ଼ିଆ ଜାତିକୁ ସେ ଯେଉଁ ବାଣୀ ଶୁଣାଇ ଗଲେ, ସେ ଅମର ଯୁଗେ ଯୁଗେ । ତାଙ୍କ ଭଜନ ଗାନ ଅମର ରହିବ ।

ଲେଦେବ ଭବନ
ଷ୍ଟେସନ ରୋଡ ପୁରୀ-୨

# ବାଣୀକଣ୍ଠ

## ଡାକ୍ତର ନକୁଳ ଚନ୍ଦ୍ର ଘୋଷ

ବାଣୀକଣ୍ଠଙ୍କୁ ମୁଁ ୧୯୨୫ ମସିହାରୁ ଜାଣିବାକୁ ସୁଯୋଗ ପାଇଥିଲି । ମୋର ବୟସ ସେତେବେଳକୁ ମାତ୍ର ୧୪ ବର୍ଷ । ମୁଁ ପ୍ୟାରୀମୋହନ ଏକାଡ଼େମୀ ସ୍କୁଲର ୭ମ ଶ୍ରେଣୀର ଛାତ୍ର । ସେହି ସମୟର କଥା—ପିଲାଦିନରୁ ସଙ୍ଗୀତ ବିଦ୍ୟା ପ୍ରତି ମୋର ଖୁବ ଶ୍ରଦ୍ଧା ଥିବାରୁ କେହି ଗାୟକ ଗୀତ ବୋଲିଲେ ମୁଁ ବିଶେଷ ମନ ଦେଇ ଶୁଣୁଥିଲି ଓ ମନେ ରଖିପାରୁଥିଲି । ସେଦିନ ନିମାଇଁ ନନାଙ୍କ ଗାନ ଶୁଣି ମୁଁ ବିଶେଷ ଖୁସି ହୋଇ ଗୀତଟିକୁ ସେହି ମୁହୂର୍ତ୍ତରେ ଶିଖିଲି । ସମୟ ସକାଳ ୭ଟା କି ୭-୩୦ ହେବ ବୋଧହୁଏ । ସେ ଗାଇଲେ—

'ଅନିଲ ତରଳ କୁବଳୟ ନୟନେନ,
ତପତି ନସା କିଶଲୟ ଶୟନେନ,
ସଖୀ ଯାରମିତା-ବନମାଳି ନା —'
(ଜୟଦେବଙ୍କ ରଚିତ—ଶ୍ରୀ "ଗୀତ ଗୋବିନ୍ଦ"ରୁ)

"ମୋର ସେ ସମୟରେ ସ୍ମରଣ ଶକ୍ତି ପ୍ରଖର ଥିବାରୁ ମୁଁ ଯାହା ଥରେ ଶୁଣୁଥିଲି—ମୋର ମନେ ରହୁଥିଲା, ନିମାଇଁ ବାବୁ ବାଙ୍କାବଜାରସ୍ଥ ସ୍ୱର୍ଗୀୟ ରାଜକିଶୋର ଦାସଙ୍କ ଘରେ ମଝିରେ ମଝିରେ ଆସି ରହୁଥିଲେ ଓ ବଡ଼ି ସକାଳୁ ହାରମୋନିୟମ ବଜାଇ ଗୀତ ବୋଲୁଥିଲେ ।

କିଛିଦିନ ପରେ ମୁଁ ଜାଣିପାରିଲି ଯେ ସେ କେନ୍ଦ୍ରାପଡ଼ା ରାଜପରିବାରର ଜଣେ ସ୍ୱର୍ଗୀୟ ରାଜା ରାଧାଶ୍ୟାମ ନରେନ୍ଦ୍ରଙ୍କର ଅଣନାତି କି ପଣନାତି ହୁଅନ୍ତି ।

ପରେ ମୁଁ ଜାଣି ପାରିଲି ସେ ମୋର ଜଣେ ଗୁରୁଭାଇ । ସ୍ୱର୍ଗୀୟ କୀର୍ତ୍ତନାଚାର୍ଯ୍ୟ ଶ୍ରୀ ରାମ ଦାସ ବାବାଜୀ ମୋର ଦୀକ୍ଷା ଗୁରୁ, ନିମାଇଁ ନନାଙ୍କର ମଧ୍ୟ ଗୁରୁ । ପରେ ପରେ ଶୁଣିଲି କେନ୍ଦ୍ରାପଡ଼ା ଲାଇନରେ ତାଙ୍କର ମୋଟର ବସ୍ ଚାଲୁଛି । ନିମାଇଁ ନନା ମୋଟର ବସ୍ ଦାୟିତ୍ୱରେ ରହି ପ୍ରତିଦିନ କଟକ ଓ କେନ୍ଦ୍ରାପଡ଼ାକୁ ଯିବା ଆସିବା କରି ମଟର ଚେକିଂ କରୁଛନ୍ତି । କଣ୍ଡକ୍ଟରଠାରୁ ହିସାବ ନେଉଛନ୍ତି ।

ଏମିତି କିଛିଦିନ ଗଲା—ପରେ ଜାଣି ପାରିଲି ଯେ ନିମାଇଁ ନନା କଲିକତାସ୍ଥ ପାଠବାଡ଼ୀ ଆଶ୍ରମରେ ଗୁରୁଦେବ ଶ୍ରୀ ରାମ ଦାସ ବାବାଜୀଙ୍କ କୀର୍ତ୍ତନ ଦଳରେ ଯୋଗ ଦେଇ ସେହିଠାରେ ରହୁଛନ୍ତି । ଏଣେ ଘରେ କେନ୍ଦ୍ରାପଡ଼ାରେ ତାଙ୍କର ବାପ-ମାଆ ନିମାଇଁ ବାବୁଙ୍କ ଖବର ନ ପାଇ ଖୋଜା ଖୋଜି କରି ଜାଣିପାରିଲେ ଯେ କଲିକତାସ୍ଥ 'ପାଠବାଡ଼ୀ' ଆଶ୍ରମରେ ଗୁରୁଦେବଙ୍କ ପାଖରେ ଅଛନ୍ତି । ସେ ଖବର ପାଇ ବାବା ଓ ମାଆ ଦୁଇଜଣ ଯାଇ ଗୁରୁଦେବଙ୍କୁ କହିଲେ, ଅଜ୍ଞା ନିମାଇଁ ଆମର ଏକମାତ୍ର ସନ୍ତାନ, ସେ ଯଦି ବିବାହ ନ କରି ସଂସାରୀ ନ ହୁଏ, ଆମ ବଂଶ ଆଉ ରକ୍ଷା ହେବ ନାହିଁ । ଗୁରୁଦେବ ଏକଥା ଶୁଣି ସେହି ମୁହୂର୍ତ୍ତରେ ନିମାଇଁ ନନାଙ୍କୁ ଡ଼ାକାଇ କହିଲେ—"ଆରେ ନିମାଇଁ, ତୁଇ ନା କି ତୋର୍ ମା ବାବାକେ କାନ୍ଦିଏ ଅଶ୍ରମେ ଏସେଛିସ—ତୋର ଏଟା ଅନ୍ୟାୟ—ଶୁଧୁ ଅନ୍ୟାୟ ଘୋର ପାପ—ଶୋନ, ତୋର ଏଖନ ସମୟ ହୟନି—ତୁଇ ଘରେ ଫିରେ ବିଏ କରେ ମାଆ ବାବାକେ ସେବା କର । ଓଦେର ଆଶୀର୍ବାଦ୍ ନିଏ ତା'ର ପରେ ଏଇ 'ପାଠବାଡ଼ୀ' ଆଶ୍ରମେ ଆସବି । ଯାଓ ଘରେ ଫିରେ ଏଖୁନି ।" ଏ କଥା ଶୁଣି ନିମାଇଁ ନନା ନୀରବ ସ୍ଥାଣୁ ପରି ଛିଡ଼ା ହୋଇ କାନ୍ଦିବାକୁ ଲାଗିଲେ—ସେ ଭାବି ନ ଥିଲେ ଏମିତି ଘଟିବ ବୋଲି—ବର୍ତ୍ତମାନ କଅଣ କରିବେ ସେ ? ପୁଣି ଫେରିଯିବେ ଘରକୁ ? ଏଇ ସମୟରେ ବାବାଜୀ ମହାଶୟ କହିଲେ—"ଆରେ ନିମାଇଁ ତୁଇତ ଭାଲ ଗାନ ଗାଇତେ ପାର, ତୋର ଗଳାର ସ୍ୱର ଖୁବ୍ ମଧୁର ସବାଇ ବଲେ । ଏଇ କଥା କହି 'ବାବାଜୀ ମହାଶୟ ତାଙ୍କ ଅଣ୍ଟାରୁ ଚୋଟିଏ

ଅଧିକ ଦେଇ କହିଲେ ନେ, ଏଇଟା ତୋର କାଛେ ରହିବ— ତୁଇ ଉଡ଼ିଶାତେ ଏକଦିନ ବିଖ୍ୟାତ ଗାୟକ ହବେ ପରିଚିତ ହଇବି—ଯା, ଆମିତୋକେ ଏଇ ଆଶୀର୍ବାଦ କରଛି ।

ଏହାପରେ ଯାହା ଘଟିଲା ସେସବୁ କେବଳ ଗୁରୁ କୃପା ଛଡ଼ା ଆଉ କିଛି ନୁହେଁ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଏହାର କିଛି ଦିନ ପରେ କଟକରେ ସୁପ୍ରତିଷ୍ଠିତ 'ହିଜ ମାଷ୍ଟରସ୍ ଭଏସ୍' କମ୍ପାନୀର ଏଜେଣ୍ଟ ଜେ. ବି. ମୁର୍ଖାର୍ଜୀ (ମସ୍ତାନ ବାବୁ) କେନ୍ଦ୍ରାପଡ଼ାରେ ପହଁଚି କହିଲେ— ନିମାଇଁ ବାବୁ, ମୁଁ କଲିକତା ଗ୍ରାମ୍‌ଫୋନ କମ୍ପାନୀରୁ ଗୋଟିଏ ଚିଠି ପାଇ ଆପଣଙ୍କୁ ଦେଖା କରି ଏ ଚିଠି ଦେବାକୁ କମ୍ପାନୀ ମୋତେ ଲେଖିଛି । ଆପଣଙ୍କର କେତେଖଣ୍ଡି ଗୀତ ସେମାନେ ରେକର୍ଡ କରିବାକୁ ଚାହୁଁଛନ୍ତି । ଆପଣଙ୍କ ଯାତାୟତ ଖର୍ଚ୍ଚ, ଖାଇବା ରହିବାର ସୁବନ୍ଦୋବସ୍ତ କରାଯାଇଛି । ଆପଣ କେଉଁ ଦିନ ଯାଇ ପାରିବେ ମୋତେ ଜଣାଇଲେ ମୁଁ ହେଡ୍-ଅଫିସ୍‌କୁ ଲେଖି ଜଣାଇବି ।

ନିମାଇଁ ବାବୁ କଲିକତା ଗଲେ । ତାଙ୍କର ପ୍ରଥମ ରେକର୍ଡ ହେଲା, (୧) ଆଜ ମୁଁ ଦେଖିଲି ଘନଶ୍ୟାମକୁ ସଖୀ । (୨) ଶ୍ୟାମଳକୁ ଆଲିଙ୍ଗନ କରି ଜାହ୍ନବୀ ଶୋଭନ । ଏ ଦୁଇଟି ଗୀତ କ୍ରମାଗତ ପ୍ରସିଦ୍ଧି ଲାଭ କଲା ଯେ 'ହିଜ୍‌ମାଷ୍ଟରସ୍ ଭଏସ୍' ଗ୍ରାମ୍‌ଫୋନ କମ୍ପାନୀ ପ୍ରିଣ୍ଟ ପରେ ରିପ୍ରିଣ୍ଟ କରି ମଧ୍ୟ ଜନସାଧାରଣଙ୍କୁ ଯୋଗାଇ ପାରିଲେ ନାହିଁ । ସେହି ସମୟରେ ଆଠଗଡ଼ ରାଜା, ଆଠଗଡରେ କିଛି ଭୂମିଜମି ଦେଇ ତାଙ୍କ ଘର କରାଇ ତାଙ୍କୁ କୋର୍ଟ ମ୍ୟୁଜିସିଆନ ଭାବେ ନିଜ ରାଜ୍ୟରେ ରଖିଲେ ଓ ସେ ଓଡ଼ିଶାର ଘରେ ଘରେ ବାଣୀକଣ୍ଠ ନିମାଇଁ ଚରଣ ହରିଚନ୍ଦନ ନାମରେ ପରିଚିତ ହେଲେ ହେଁ ସେ ଜଣେ ଗାୟକ ଭକ୍ତ—ସେଥି ପାଇଁ ପୁରୀର 'ଗଜପତି ମହାରାଜା' ତାଙ୍କୁ ଶ୍ରୀ ମନ୍ଦିରରେ ଭ୍ରମର ସେବା ପ୍ରଦାନ କରିଥିଲେ । ତାଙ୍କ ଭଳି ଜଣେ ବିଦଗ୍ଧ ଓ ବିମୁଗ୍ଧ ଗାୟକ ଭକ୍ତ, ଆମ ସମସ୍ତଙ୍କର ଚିରକାଳ ପୂଜ୍ୟ ହୋଇ ରହିବେ ।

●

ସ୍ୱରଲିପି ଭବନ
କଟକ-୨

# ବାଣୀକଣ୍ଠର ଝଙ୍କାର

ଶ୍ରୀ ବାଇଧର ପାଠୀ

୧୯୪୫ ମସିହାର ଶେଷାର୍ଦ୍ଧରେ ଏକ ପର୍ବ ଅବସରରେ ମୁଁ ଆଠଗଡ଼ ଜଗନ୍ନାଥ ମନ୍ଦିରକୁ ଯାଇଥାଏ । ମନ୍ଦିର ଭିତରକୁ ଯାଉ ଯାଉ ଏକ ଭକ୍ତ ଗୀତକାର ମଧୁର ଝଙ୍କାର ମୋ କାନରେ ପଡ଼ିଲା । ସେଇ କଣ୍ଠ ସେ ମୃଦୁ ସ୍ୱର ଝଙ୍କାରର ଆକର୍ଷଣ ମୋତେ ଗାୟକଙ୍କ ନିକଟକୁ ଟାଣି ନେଲା । ଠାକୁରଙ୍କୁ ମୁଣ୍ଡିଆ ମାରିବା କଥା ଭୁଲିଯାଇ ମୁଁ ମନ୍ତ୍ରମୁଗ୍ଧ ପରି ଗାୟକଙ୍କ ଠାରୁ ଅଳ୍ପ ଦୂରରେ ଠିଆ ହୋଇ ଭଜନଟି ଶୁଣିବାକୁ ଲାଗିଲି । ଗାନ ଶେଷ ହେବା ପରେ ଗୀତଟିର ଗାୟନ ଶୈଳୀ, ବିଶେଷତଃ ଗାୟକଙ୍କ କଣ୍ଠସ୍ୱରର ମାଧୁର୍ଯ୍ୟରେ ଆକୃଷ୍ଟ ହୋଇ ଆଉ କିଛି ସମୟ ଅଟକା ହୋଇ ଠିଆ ହେଲି । ଗାୟକ ମନ୍ଦିରରୁ ବିଦାୟ ନେଲେ । ମୁଁ ମଧ୍ୟ ବସାକୁ ଫେରିଗଲି । ରାତିରେ ନିଦ ଆସିବା ପର୍ଯ୍ୟନ୍ତ ସେ ଭକ୍ତି ସଙ୍ଗୀତର ମୂର୍ଚ୍ଛନା ମୋର ମନ ମଧ୍ୟରେ ଅନୁରଣିତ ହେଉଥାଏ । ପରଦିନ ଜାଣିଲି ଯେ ସେ ଗାୟକ ହେଉଛନ୍ତି, 'ବାଣୀକଣ୍ଠ' ନିମାଇଁ ଚରଣ ହରିଚନ୍ଦନ । ନାମର ପୂର୍ବରେ ଯୁକ୍ତ ବାଣୀକଣ୍ଠ ଉପାଧିଟି ତାଙ୍କ ପକ୍ଷରେ ସାର୍ଥକ ହୋଇଥିବା ଅନୁଭବ କଲି । ତାଙ୍କ ସହ ପରିଚିତ ହେବାର ଇଚ୍ଛା ବଳବତୀ ହେଲା ।

ମୁଁ ସେତେବେଳେ ଆଠଗଡ଼ ବିଶ୍ୱନାଥ ବିଦ୍ୟାପୀଠରେ ଶିକ୍ଷକ ଥାଏ । ସ୍କୁଲରେ ବାଣୀକଣ୍ଠଙ୍କର ଦୁଇଟି ପୁଅ ପଢ଼ୁଥା'ନ୍ତି । ତାଙ୍କର ମଧ୍ୟମ ପୁଅ ରାଜେନ୍ଦ୍ରଙ୍କ ସହ ସାକ୍ଷାତ ହେଲା । ବାଣୀକଣ୍ଠଙ୍କ ସଙ୍ଗେ ସାକ୍ଷାତ ଓ ପରିଚୟ ଉଦ୍ଦେଶ୍ୟରେ ମୁଁ ରାଜେନ୍ଦ୍ରଙ୍କ ସହ ତାଙ୍କ ଘରକୁ ବାହାରିଲି । ସ୍କୁଲ ଫାଟକ ଠାରୁ ଅଳ୍ପ ଦୂରରେ ବାଣୀକଣ୍ଠଙ୍କ ସଙ୍ଗେ ହଠାତ ସାକ୍ଷାତ ହେଲା । ରାଜେନ୍ଦ୍ର ମୋତେ ତାଙ୍କ ବାପାଙ୍କ ସଙ୍ଗେ ପରିଚିତ କରାଇ ଦେଲେ । ଭାବିଲି "ପଥ ମଧ୍ୟରେ କୃଷ୍ଣ ଦେଖା, ଆଉ ନ ଯିବି ବୃନ୍ଦାବନେ ।"

ସଡ଼କ ଉପରେ ଠିଆ ହୋଇ ଆମେ ଦୁହେଁ କିଛି ସମୟ କଥାବାର୍ତ୍ତା ହେଲୁ । ସେଇ ପ୍ରଥମ ଦର୍ଶନରେ ତାଙ୍କର ମିଷ୍ଟାଳାପ ମୋତେ ବିଶେଷ ପ୍ରଭାବିତ କଲା । ତାଙ୍କର ଗୀତ ଯିମିତି ମିଠା, ତାଙ୍କର କଥା ମଧ୍ୟ ସିମିତି ମିଠା । ତାଙ୍କର ବିନମ୍ର ମଣ୍ଡିତ ମିଠା କଥା ପିଲାଦିନେ ବର୍ଣ୍ଣବୋଧରେ ପଢ଼ିଥିବା ଭକ୍ତ କବିଙ୍କର ମଧୁର ରଚନା ସ୍ମୃତି ପଟରେ ଭାସି ଉଠିଲା—

'ଅମୃତ ବିନମ୍ର ବଚନ,
କହୁ ତୋଷିବ ଜନମନ ।'

ଅନେକ ଥର ତାଙ୍କ ସଙ୍ଗେ ଦେଖା ହେଲା । ତାଙ୍କ ଗୀତ ଶୁଣିବାର ବହୁ ସୁଯୋଗ ମଧ୍ୟ ମିଳିଲା । କାଳକ୍ରମେ ସେ ମୋର ଜଣେ ହିତାକାଂକ୍ଷୀ ବନ୍ଧୁ ହୋଇଗଲେ । ମୁଁ ସଙ୍ଗୀତଜ୍ଞ ନ ଥିଲି, କିନ୍ତୁ ସଙ୍ଗୀତ ପ୍ରତି ମୋର ଅନୁରାଗ ଥିଲା । ସେ ଜଣେ ସଙ୍ଗୀତଜ୍ଞ ଏବଂ ମୁଁ ସଙ୍ଗୀତ ପ୍ରେମୀ । ତେଣୁ ଆମର ବନ୍ଧୁତା କ୍ରମେ ଅଧିକ ଘନିଷ୍ଠ ହେଲା । ଥରେ ଏକ ପତ୍ରିକାରେ ପ୍ରକାଶିତ ମୋର ଏକ ରଚନା ବାଣୀକଣ୍ଠଙ୍କ ନଜରକୁ ଆସିଲା । ତା'ପରେ ଦିନେ ସନ୍ଧ୍ୟାରେ ସେ ମୋର ହାତୀଶାଳପଡ଼ା ବସାକୁ ବିଜେ କଲେ । ଦାଣ୍ଡ ଘରେ ବସି କଥାବାର୍ତ୍ତା ହେଲୁ । ସେ ଖଣ୍ଡେ କାଗଜ ମୋ ଆଗରେ ରଖିଦେଲେ । ସେଥିରେ ପଦେ ଗୀତ ଲେଖାଥିଲା—

'ଭଜମନ ସବୁରି ଦୁଃଖ ହରି ହରିଙ୍କି,
ହରି କରିବେ ଭବୁ ପାରିକି ।'

ଗୀତ ପଦକ ମନେ ମନେ ପଢ଼ିସାରି ତାଙ୍କ ଆଡ଼କୁ ଚାହିଁବା ବେଳକୁ ସେ କହିଲେ—'ଏଇ ଗୀତର ବୃତ୍ତରେ ମହାତ୍ମା ଗାନ୍ଧୀଙ୍କର ଉପଦେଶ ସମ୍ବଳିତ ଗୀତଟିଏ ଲେଖି ଦିଅନ୍ତୁ । ସେଇ ରାତିରେ ମୁଁ କେତେଥର ଲେଖି ଆଉ କେତେଥର କାଟି ଭଜମନ ବୃତ୍ତରେ ଗୀତଟିଏ ଲେଖି ଶୋଇଲି । ପରଦିନ ସକାଳେ ତାକୁ ପୁଣି କାଟଛାଣ୍ଟ କରି ଖଣ୍ଡେ କାଗଜରେ ଉତାରି ରଖିଲି । ସନ୍ଧ୍ୟାରେ ବାଣୀକଣ୍ଠ ମୋ ବସାରେ ହାଜର ହେଲେ । କାଗଜ ଖଣ୍ଡିକ ତାଙ୍କ ହାତକୁ ବଢ଼ାଇ ଦେଲି । ସେଥିରେ ଲେଖିଥିବା ଗୀତଟିର ପ୍ରଥମ

ଧାଡ଼ି—'ହେଉ, ମୋହନ ସାଧୁ ବାଣୀକ' । ସେ ଗୀତଟିକୁ ଧୀର ସ୍ୱରରେ ଦୁଇଥର ବୋଲିଲେ । ଛନ୍ଦ ଓ ମାତ୍ରା ବଗୁର ଏବଂ ଶ୍ରବଣସୁଖ ଦୃଷ୍ଟିରୁ ତାଙ୍କ ପରାମର୍ଶ କ୍ରମେ ଦୁଇ ତିନୋଟି ଶବ୍ଦ ବଦଳାଇବାକୁ ପଡ଼ିଲା । ଦୁଇ ତିନ ଦିନ ପରେ ସେ ପୁଣି ମୋ ବସାକୁ ଆସି ସେ ଗୀତଟି ବୋଲି ଶୁଣାଇଲେ ।

ତାଙ୍କ ପ୍ରେରଣାରେ ମହାତ୍ମା ଗାନ୍ଧୀଙ୍କ ସମ୍ପର୍କରେ ଆଉ ଗୋଟିଏ ଗୀତ ଲେଖିଲି ଏବଂ ସେଥିରେ ସେ ସ୍ୱର ସଂଯୋଜନା କଲେ—

'ସେ ତ ଲୋ ବସିଥିଲେ ଶୁଆ ଶାଙ୍ଗ,
ଶୁଆଟିର ନାମ ମୋହନ ସୁନ୍ଦର
ଶାରୀ ନାମଟି କସ୍ତୁରୀ ।'

ସରକାରଙ୍କର ତତ୍କାଳୀନ ପ୍ରଚାର ବିଭାଗ ଦ୍ୱାରା ଉକ୍ତ ଗୀତ ଦୁଇଟିର ରେକର୍ଡ଼ ପ୍ରସ୍ତୁତ ହୋଇଥିଲା ଏବଂ ଉତ୍କଳ ପ୍ରସଙ୍ଗରେ ମଧ୍ୟ ତାହା ପ୍ରକାଶିତ ହୋଇଥିଲା ।

୧୯୪୮ ମସିହା ଜାନୁଆରୀ ତିରିଶ ତାରିଖ । ମୁଁ ବସାରେ ଥାଏ । ହରିଚନ୍ଦନ ମହାଶୟ ସନ୍ଧ୍ୟାରେ ମୋ ବସାକୁ ଆସି ବିଷର୍ଣ୍ଣ ବଦନରେ ଠିଆ ହେଲେ । ତାଙ୍କ ଆଖି ଲୁହ ଛଳଛଳ ହୋଇଥାଏ । ତାଙ୍କ ଠାରୁ ସେତେବେଳେ ମହାତ୍ମା ଗାନ୍ଧୀଙ୍କର ବିୟୋଗ ବାର୍ତ୍ତା ପ୍ରଥମେ ଶୁଣିଲି । ଶୋକ ଜର୍ଜରିତ କଣ୍ଠରେ ଦୁଃସମ୍ବାଦଟି ଶୁଣାଇବା ପରେ ଗାନ୍ଧିଜୀଙ୍କର ତିରୋଧାନ ବିଷୟରେ ଗୀତଟିଏ ଲେଖିବା ପାଇଁ ବାଣୀକଣ୍ଠ ମୋତେ ସୂଚନା ଦେଲେ । ତେଣୁ ଗୀତ ରଚନା ପାଇଁ କହିବା ସଙ୍ଗେ ସଙ୍ଗେ ସେ ଅନ୍ତିମ ଚଉତିଶାର ( କୃପାସିନ୍ଧୁ ବଦନ କର ଅବଲୋକନ କେଉଁ କରମ ହିନ ଜନ ) ପ୍ରଥମ ପଦଟି ଡାକ ଦେଲେ ଏବଂ ମୁଁ ତାହା ଟିପି ରଖିଲି । ସେ ବିଦାୟ ନେଲେ । ତା' ପରେ ମୁଁ ବାହାରକୁ ଯାଇ ରେଡ଼ିଓ ରଖିଥିବା ଲୋକଙ୍କଠାରୁ ଗାନ୍ଧୀଜୀଙ୍କ ମର୍ମନ୍ତୁଦ ହତ୍ୟାକାଣ୍ଡର ବିବରଣୀ ସଂଗ୍ରହ କଲି । ଜଣେ ବ୍ୟାଧର ଶାଣିତ ଶରରେ ପ୍ରେମାବତାର ଶ୍ରୀକୃଷ୍ଣଙ୍କର ନିଧନ ପରି ସତ୍ୟାଶ୍ରୟୀ ମହାମାନବ ବାପୁଜୀ ଜଣେ ନିଷ୍ଠୁର ଆତତାୟୀର ଗୁଳିରେ ଧରାବକ୍ଷରୁ ବିଦାୟ ନେଇଥିବା ଦୁର୍ଘଟଣାରେ ବିଶ୍ୱବାସୀ ଶୋକାକୁଳ ହୋଇ ପଡ଼ିଲେ । ଇଂଲଣ୍ଡର ବିଖ୍ୟାତ ମନୀଷୀ ଜର୍ଜ ବର୍ଣ୍ଣାଡ଼ଶ୍ କହିଲେ — 'କେତେ ଅତି ଉତ୍ତମ ଲୋକ ହେବେ, ତାଙ୍କର ବିପଦ ଯେ କେତେ, ତାହା ଏଇ ଘଟଣାରୁ ଜଣାଯାଏ ।' ଯାପାନର ସମ୍ରାଟ ହିରୋହିତୋ କହିଲେ—ବର୍ତ୍ତମାନ ଯୁଗର ସର୍ବାଧିକ ମର୍ମନ୍ତୁଦ ଘଟଣା ଆଜି ସଂଘଟିତ ହେଲା ।' ଅଷ୍ଟ୍ରେଲିଆରୁ ଡ଼. ଭେଲେରି କହିଲେ— 'ଭାରତ ଆଜି ସତରେ ସର୍ବସ୍ୱାନ୍ତ ହୋଇଗଲା ।' ମୋ ବସା ପାଖ ରାସ୍ତା ଉପରେ ପାଗଳୀଟି ଅଙ୍କା ମଧ୍ୟ କହି କହି ବୁଲୁଥାଏ—'ବାପୁ ଜର୍ଣ ମରିଗଲେ ସେ ସମସ୍ତେ କାନ୍ଦୁଛନ୍ତି ।

ମୋ ମନ ଭିତରେ ବାଣୀକଣ୍ଠଙ୍କର ହୃଦୟସ୍ପର୍ଶୀ ବାଣୀ ଆଘାତ କରୁଥାଏ—'ବାପୁଜୀଙ୍କ ବିୟୋଗ ଉପଲକ୍ଷେ ଅନ୍ତିମ ଚଉତିଶା ବୃତ୍ତରେ 'ଶୋକ ଗୀତିକା' ଲେଖ ।'

ସେ ରାତରେ ଖାଇବା ରୁଚିଲା ନାହିଁ । ବିଶ୍ୱବ୍ୟାପୀ ଶୋକୋଚ୍ଛ୍ୱାସରେ ଅଧୀର । ନିଦ୍ରାଦେବୀ ସତେ ଅବା ପାତାଳ ପୁରୀକୁ ପଳାୟନ କଲେ। ଅନ୍ତିମ ଚଉତିଶାର ପ୍ରଥମ ପଦଟି ଗୁଣି ହୋଇ ଶୋକ ଗୀତିକା ଲେଖିଲି—

'ମୁକ୍ତ କାନ୍ତ ଗଗନେ ଇନ୍ଦ୍ରନୀଳ ବିତାନେ
ବଜ୍ର ବାଟୁଳି ଚମକିଲା,
ଦିଗନ୍ତ ଆକାଶର ଶାନ୍ତ ଜ୍ୟୋତି ମଧୁର
ତାମସୀ ରାକ୍ଷସୀ ନାଶିଲା—।'

ଗୀତ ଲେଖା ସରିଲା । ସିନ୍ଦୂର ଫାଟିଲା । ସେ କାଳରାତି ଭୂତ କାଳରେ ପ୍ରବେଶ କରି ଇତିହାସ ହୋଇଗଲା ।

Indian States ( ଭାରତୀୟ କରଦ ରାଜ୍ୟ ) ନାମକ ଗ୍ରନ୍ଥରେ ପ୍ରକାଶନ ଉଦ୍ଦେଶ୍ୟରେ ଅଠଗଡ଼ ଗଡ଼ଜାତର ସଂକ୍ଷିପ୍ତ ଇତିହାସ ଲେଖିବା ପାଇଁ Political Agentଙ୍କ ଠାରୁ ପତ୍ର ପାଇ ଦେଓ୍ୱାନ୍ ମହାଶୟ ବିଶ୍ୱନାଥ ବିଦ୍ୟାପୀଠର ପ୍ରଧାନ ଶିକ୍ଷକଙ୍କୁ ନିର୍ଦ୍ଦେଶ ଦେଲେ । ମୁଁ ଉଚ୍ଚଶ୍ରେଣୀରେ ଇତିହାସ ଅଧ୍ୟାପନା ଦାୟିତ୍ୱରେ ଥିବାରୁ ପ୍ରଧାନ ଶିକ୍ଷକ ମହୋଦୟ ଉକ୍ତ ଅଠଗଡ଼ର ଇତିହାସ ଲେଖିବାକୁ ମୋତେ ନିର୍ଦ୍ଦେଶ ଦେଲେ । ସ୍କୁଲ ଓ କଲେଜରେ ଭାରତ, ଗ୍ରେଟବ୍ରିଟେନ ଓ ଇଉରୋପର ଇତିହାସ ପଢ଼ିଥିଲି, ତେଣୁ ସ୍କୁଲରେ ମଧ୍ୟ ପଢ଼ାଉଥିଲି ; କିନ୍ତୁ ଅଠଗଡ଼ର ଇତିହାସ ବିଷୟରେ ମୋର କିଛି ଧାରଣା ନ ଥିଲା । ହାଇସ୍କୁଲ ଲାଇବ୍ରେରୀରେ ମଧ୍ୟ ସେ ବିଷୟରେ କୌଣସି ପୁସ୍ତକ ନ ଥିଲା । ତେଣୁ ମୁଁ ବିଶେଷ ଅସୁବିଧାର ସମ୍ମୁଖୀନ ହେଲି ।

ଶେଷରେ ଆଠଗଡ଼ର ଇତିହାସ ଲେଖା ମୋ ଦ୍ୱାରା ହୋଇ ପାରିବ ନାହିଁ ବୋଲି ପ୍ରଧାନ ଶିକ୍ଷକଙ୍କୁ ଜଣାଇ ଦେବାକୁ ସ୍ଥିର କଲି । ସେଦିନ ସନ୍ଧ୍ୟାରେ ହରିଚନ୍ଦନ ମହାଶୟଙ୍କ ସଙ୍ଗେ ସାକ୍ଷାତ ହେଲା ଏବଂ ତାଙ୍କୁ ସେ ବିଷୟ କହିଲି । ସେ ମୋତେ ଉତ୍ସାହିତ କରି ଓ ସହାୟତାର ପ୍ରତିଶ୍ରୁତି ଦେଇ ଲେଖା ଆରମ୍ଭ କରିବାକୁ ପରାମର୍ଶ ଦେଲେ । ଆଠଗଡ଼ ରାଜବଂଶାବଳୀ ବିଭିନ୍ନ ରାଜାଙ୍କର କୀର୍ତ୍ତି-କଳାପ ସମ୍ପର୍କୀୟ ତଥ୍ୟ ସେ ଯୋଗାଇ ଦେଲେ । ଆଠଗଡ଼ର କେତେଜଣ ଜାଣିବା ଶୁଣିବା ପୁରୁଖା ଲୋକଙ୍କ ସଙ୍ଗେ ମୋତେ ପରିଚିତ କରାଇ ଦେଲେ । ସେମାନଙ୍କ ଠାରୁ ଆଠଗଡ଼ର ମନ୍ଦିର ଓ ବିଶିଷ୍ଟ ସ୍ଥାନ ବିଷୟରେ ବହୁ ତଥ୍ୟ ଓ କିମ୍ବଦନ୍ତୀ ପାଇଲି । ଦୈନିକ ସନ୍ଧ୍ୟାରେ ମୋ ବସାକୁ ଆସି ନିମାଇଁ ବାବୁ ଇତିହାସ ଲେଖାର ଅଗ୍ରଗତି ବିଷୟ ବୁଝୁଥିଲେ ଏବଂ କିଛି ନୂତନ ତଥ୍ୟ ପାଉଥିଲେ, ତାହା ମୋତେ ଜଣାଉ ଥିଲେ । ତାଙ୍କର ସହଯୋଗ ଓ ପରାମର୍ଶରେ ଉଦ୍‌ବୁଦ୍ଧ ହୋଇ ମୁଁ ଇଂରାଜୀରେ ଆଠଗଡ଼ର ଇତିହାସ ବିଷୟରେ ଏକ ପରିଚ୍ଛେଦ ଲେଖି-ଦେଲି ଏବଂ ତାହା ଯଥାକ୍ରମେ ପ୍ରେରିତ ହୋଇ Indian States ପୁସ୍ତକରେ ପ୍ରକାଶିତ ହେଲା । ଏ ସମ୍ବାଦରେ ବାଣୀକଣ୍ଠ ସନ୍ତୋଷ ପ୍ରକାଶ କରି ଆନନ୍ଦିତ ହୋଇଥିଲେ । ପ୍ରକୃତରେ ସେ ସାହାଯ୍ୟ କରି ନ ଥିଲେ, ଲେଖାଟି ଯଥା ସମୟରେ ସଂପୂର୍ଣ୍ଣ ହୋଇ ପାରି ନ ଥାନ୍ତା । ଅନ୍ତତଃ ମୋ ଦ୍ୱାରା ତାହା ମଧ୍ୟ ସମ୍ଭବ ହୋଇ ନ ଥାନ୍ତା ।

ବାଣୀକଣ୍ଠ ନିମାଇଁ ଚରଣ ହରିଚନ୍ଦନଙ୍କୁ ଅନେକେ କେବଳ ଜଣେ ସୁକଣ୍ଠ ଗାୟକ ରୂପେ ଜାଣନ୍ତି । ତାଙ୍କର କଣ୍ଠ-ସ୍ୱର ଓ ଗାୟନ ଶୈଳୀ ଯେ ଶ୍ରୁତି ପ୍ରିୟ ଥିଲା, ଏଥିରେ ସନ୍ଦେହର ଅବକାଶ ନାହିଁ । କିନ୍ତୁ ତାଙ୍କର ଅନ୍ୟାନ୍ୟ ବହୁ ବୈଶିଷ୍ଟ୍ୟ ମଧ୍ୟ ଥିଲା । ସେ ଉତ୍ତମ ତବଲା ବାଦକ ଥିଲେ । ଓଡ଼ିଶାର ପ୍ରାଚୀନ ସଙ୍ଗୀତ ଓ ସାଂସ୍କୃତିକ ପରମ୍ପରା ପ୍ରତି ତାଙ୍କର ଗଭୀର ଅନୁରାଗ ଥିଲା । ଉତ୍ତମ କାର୍ଯ୍ୟରେ ସହଯୋଗ କରିବା ଦିଗରେ ସେ ବିଶେଷ ଆଗ୍ରହୀ ଥିଲେ । ତାଙ୍କର ଭଗବତ୍ ଭକ୍ତି ଉଚ୍ଚକୋଟୀର ଥିଲା । ତାଙ୍କର ସରଳ ଜୀବନ-ଯାପନ ପ୍ରଣାଳୀ, ବିନମ୍ର ମଧୁର ବ୍ୟବହାର ଓ ସାଧୁଭାବ ଆଦର୍ଶସ୍ଥାନୀୟ ଥିଲା । ମହାପୁରୁଷ-ମାନଙ୍କର ଜୀବନୀ ଓ ବାଣୀ ପ୍ରତି ତାଙ୍କର ଶ୍ରଦ୍ଧା ଓ ସମ୍ମାନ ଥିଲା । ଏ ସମସ୍ତ ଭାବ ଓ ଗୁଣରେ ମଣ୍ଡିତ ହୋଇ ସେ ଜଣେ ଆଦର୍ଶ ବ୍ୟକ୍ତି ରୂପେ ପ୍ରତିଷ୍ଠିତ ହୋଇଥିଲେ ।

ତାଙ୍କ କଣ୍ଠର ମଧୁ ଝଙ୍କାର 'ହିଜ୍ ମାଷ୍ଟରସ୍ ଭଏସ୍'ର ରେକର୍ଡ଼ରେ ଓ ଆକାଶବାଣୀର ଟେପ୍‌ରେ ସୁରକ୍ଷିତ । ବାଣୀକଣ୍ଠଙ୍କର ବାଣୀ ଓ ସ୍ୱର ଅଗଣିତ ଶ୍ରୋତାଙ୍କର ହୃଦୟ ଓ ମନରେ ଝଂକୃତ ହୋଇ ତାଙ୍କୁ ଅମର କରିଅଛି ।

ସତ୍‌ସଙ୍ଗ କୁଟୀର
ଜଗତପୁର, କଟକ

# ପୂଜ୍ୟ ଗୁରୁଭ୍ରାତା

## ଶ୍ରୀ ସହଦେବ ମହାରଣା

ବାଣୀକଣ୍ଠ ନିମାଇଁ ବାବୁ କଟକ ବଙ୍ଗାଳି ସାହିସ୍ଥ ନିତାଇ ଗୌରାଙ୍ଗ ମଠର ଜଣେ (ସ୍ୱର୍ଗତ ରାମ ଦାସ ବାବାଜୀଙ୍କ) ଶିଷ୍ୟ ଥିଲେ । ସେ ଆମ୍ଭର ପୂଜ୍ୟ ଜ୍ୟେଷ୍ଠ ଗୁରୁଭ୍ରାତା । ବଙ୍ଗାଳି ସାହି ମଠରେ ସେ ପ୍ରାୟ ପ୍ରତ୍ୟେକ ମହୋତ୍ସବ ଓ ଗୁରୁ ପୂଜା ଆଦିରେ ଯୋଗଦାନ କରି ଗୌରାଙ୍ଗ ମହାପ୍ରଭୁଙ୍କର ଭଜନ କୀର୍ତ୍ତନ କରିବା ସଙ୍ଗେ ସଙ୍ଗେ ପ୍ରଭୁ ଜଗନ୍ନାଥଙ୍କର ଜଣାଣ ଭଜନ ଦ୍ୱାରା ସମସ୍ତଙ୍କୁ ମୁଗ୍ଧ କରୁଥିଲେ । ନିମାଇଁ ବାବୁ ପ୍ରଭୁଙ୍କ ଭକ୍ତ ।

ନିମାଇଁ ବାବୁ ଓଡ଼ିଶାର ପୁରପଲ୍ଲୀରେ ସର୍ବତ୍ର ତାଙ୍କର ଓଡ଼ିଶୀ ଭଜନ, ଜଣାଣ ଓ ଚମ୍ପୂ ଆଦି ସଙ୍ଗୀତ ଗ୍ରାମ୍ଫୋନ୍ ରେକର୍ଡ଼ ଦ୍ୱାରା ପରିବେଷଣ କରି ସମସ୍ତଙ୍କର ଅତି ପ୍ରିୟପାତ୍ର ହୋଇ ଥିଲେ । ତାଙ୍କର କଣ୍ଠ ସଙ୍ଗୀତ ଏପରି ପର୍ଯ୍ୟାୟରେ ଓଡ଼ିଶାର ପୁରପଲ୍ଲୀରେ ପରିଚିତ ଥିଲା ଯେ, ତାଙ୍କ ସଙ୍ଗୀତର ରେକର୍ଡ଼ ବାଜିବା ସଙ୍ଗେ ସଙ୍ଗେ ଶ୍ରୋତାମାନେ ନିମାଇଁ ବାବୁଙ୍କୁ ମନେ ପକାଉଥିଲେ ।

ତାଙ୍କର କଣ୍ଠ ସଙ୍ଗୀତ ଦ୍ୱାରା ସେ ଓଡ଼ିଶାକୁ ଯାହା ଦାନ ଦେଇଯାଇ ଅଛନ୍ତି, ତାହା ଯୁଗ ଯୁଗ ଲାଗି ଅବିସ୍ମରଣୀୟ । ତାଙ୍କର କଣ୍ଠ ଏତେ ସୁସ୍ପଷ୍ଟ ଯେ, ଯାହା ଅତି କମ୍ ସଙ୍ଗୀତଜ୍ଞଙ୍କର ଥାଏ ବା ଅଛି ।

ବହୁଦିନ ତଳର ଘଟଣା ।

ନିମାଇଁ ବାବୁ ଥରେ (କୋରାପୁଟ) ଜୟପୁର ଆକାଶବାଣୀ କେନ୍ଦ୍ରକୁ ସଙ୍ଗୀତ ପ୍ରୋଗ୍ରାମ ନିମନ୍ତେ ଯାଇଥିଲେ । ତାଙ୍କ ସହିତ ଓଡ଼ିଶାର ସୁନାମଧନ୍ୟ ସଙ୍ଗୀତ ସୁଧାକର ବାଳକୃଷ୍ଣ ଦାଶ ଓ ଆଉ ତିନିଜଣ ସଙ୍ଗୀତଜ୍ଞ ମଧ୍ୟ ଥିଲେ । ଜୟପୁର ଆକାଶବାଣୀ କେନ୍ଦ୍ରରୁ ପ୍ରୋଗ୍ରାମ ଶେଷ କରି ସେ ପରଦିନ ସକାଳ ବେଳା ଅଠଟା ବସ୍‌ରେ ବିଜୟନଗର ରେଳ ଷ୍ଟେସନକୁ ଆସି ରେଳଗାଡ଼ିରେ କଟକ ଆସିବାର ସିଦ୍ଧାନ୍ତ ହୋଇଥାଏ । ସେ ସମୟରେ କଟକ ବଙ୍ଗାଳି ସାହି ନିବାସୀ ବିଶିଷ୍ଟ ତବଲା ବାଦକ ଶ୍ରୀମାନ ଶଙ୍କର ଚନ୍ଦ୍ର ଦାସ ଜୟପୁର ଶ୍ରମ ମଙ୍ଗଳ କେନ୍ଦ୍ରର ଅର୍ଗାନାଇଜର୍ ଥାଆନ୍ତି । ନିମାଇଁ ବାବୁଙ୍କ ଅନୁରୋଧ କ୍ରମେ ଶ୍ରୀମାନ ଶଙ୍କର ବାବୁ ବସ୍‌ଷ୍ଟାଣ୍ଡର ଷ୍ଟେସନ ମାଷ୍ଟରଙ୍କୁ ଅନୁରୋଧ କରି ବିଜୟ ନଗର ରେଳଷ୍ଟେସନ ପର୍ଯ୍ୟନ୍ତ ଆସିବାକୁ ବସ୍‌ରେ ୫ଟି ସ୍ଥାନ ସଂରକ୍ଷଣ କରାଇ ଥିଲେ ।

ବସ୍ ଛାଡ଼ିବା ଟାଇମ୍ ଠିକ୍ ଆଠଟା ।

ଏପରି ଅବସ୍ଥାରେ ନିମାଇଁ ବାବୁ ତାଙ୍କ ଜୟପୁର ରହଣି ସ୍ଥାନରେ ବସି ପ୍ରାୟ ସକାଳ ସାଢ଼େ ଆଠଟା ପର୍ଯ୍ୟନ୍ତ ପାନ ଖାଇବାରେ ବ୍ୟସ୍ତ, କିନ୍ତୁ ସେ କେବେ ତରବର ନ ଥିଲେ ଯେ ଗାଡ଼ି ଟାଇମ୍ ଗଡ଼ିଗଲା ଓ ଗାଡ଼ି ଚାଲିଯିବ । କିନ୍ତୁ ଶଙ୍କର ବାବୁ ବଡ ଉଚ୍ଛନ୍ନ ଭାବେ କହିଲେ—ସାର୍, ଗାଡ଼ି ଚାଲିଯିବ, କାରଣ ଗାଡ଼ି ଛାଡ଼ିବା ସମୟରୁ ଅଧଘଣ୍ଟାଏ ଅଧିକ ହୋଇ ଗଲାଣି । ଆଉ ଗାଡ଼ି ମିଳିବନି । କିନ୍ତୁ ନିମାଇଁ ବାବୁ ବଡ ଦମ୍ଭରେ କହିଲେ—ଶଙ୍କର, ତୁମେ ଏତେ ବ୍ୟସ୍ତ କାହିଁକି ହେଉଛ ? ଜଗନ୍ନାଥ ମୋତେ ସେଇ ଗାଡ଼ିରେ ନେଇ ଯିବେ । ଏପରି କହି ପାନ ଖାଇ, ବଟା ସଜାଡ଼ି ଓ ଖଣ୍ଡିଏ ପାନ ପାଟିରେ ପୂରାଇ ଦେଇ ଚଦରକୁ କୁଞ୍ଚି କରି କାନ୍ଧରେ ପକାଇ ଅନ୍ୟ ସଙ୍ଗୀତଜ୍ଞ ବନ୍ଧୁମାନଙ୍କୁ ଧରି ବସ୍ ଷ୍ଟାଣ୍ଡରେ ପହଞ୍ଚି ଦେଖିଲା ବେଳକୁ କେତେକ ଅସୁବିଧା ଯୋଗୁଁ ବସ୍‌ଟି ଦଣ୍ଡାୟମାନ ଅବସ୍ଥାରେ ରହିଛି ।

ଏ ଘଟଣା ଦେଖି ନିମାଇଁ ବାବୁ, ଶଙ୍କର ବାବୁଙ୍କୁ କହିଲେ – ଶଙ୍କର ଦେଖିଲ, ବସ୍ ଏପର୍ଯ୍ୟନ୍ତ ଆମ ଅପେକ୍ଷାରେ ଦଣ୍ଡାୟମାନ ଅବସ୍ଥାରେ ଅଛି । କିନ୍ତୁ ଏ ମହାଶୟମାନଙ୍କ ନିମନ୍ତେ ଯେଉଁ ପାଞ୍ଚଟି ସ୍ଥାନ ବସ୍‌ରେ ସଂରକ୍ଷଣ କରାଯାଇ ଥିଲା, ସେ ସ୍ଥାନମାନ ଅନ୍ୟ ବସ୍‌ଯାତ୍ରୀଙ୍କ ଦ୍ୱାରା ପୂରଣ ହୋଇ ଯାଇଛି । ଏ ସମ୍ବାଦଟି ଷ୍ଟେସନ ମାଷ୍ଟର ଜାଣିବା ମାତ୍ରେ କହିଲେ—ମୁଁ ନାଚାର, କଅଣ ଆଉ କରିବ ?

ଆପଣ ତ ପ୍ରାୟ ଏକ ଘଣ୍ଟା ସମୟ ବିଳମ୍ବ କରିଦେବା ଦ୍ୱାରା ଆପଣମାନଙ୍କ ସ୍ଥାନ ଅନ୍ୟ ବସ୍ ଯାତ୍ରୀଙ୍କ ଦ୍ୱାରା ପୂରଣ କରିବାକୁ ବାଧ୍ୟ ହେଲୁଁ । ଏହା କହି ଶେଷରେ ବସ୍ ଛାଡ଼ିବା ପୂର୍ବରୁ ସେ ଷ୍ଟେସନ ମାଷ୍ଟର ମହାଶୟ, ବସ୍ ଯାତ୍ରୀମାନଙ୍କୁ ଯୋଡ଼ହସ୍ତରେ ନିବେଦନ କରି ତାଙ୍କ ବକ୍ତବ୍ୟରେ ନିମାଇଁ ବାବୁ ଓ ବାଳକୃଷ୍ଣ ବାବୁଙ୍କର ପରିଚୟ ସମସ୍ତ ବସ୍ ଯାତ୍ରୀମାନଙ୍କୁ ପ୍ରଦାନ କରି, ସମସ୍ତ କଥା କହିବାରୁ ଜଣେ ବସ୍ ଯାତ୍ରୀ ତାଙ୍କ ସ୍ଥାନରୁ ସ୍ୱ ଇଚ୍ଛାରେ ଉଠି ସେ ସ୍ଥାନଟି ନିମାଇଁ ବାବୁଙ୍କ ନିମନ୍ତେ ଛାଡ଼ି ଦେଲେ ଓ ଅନ୍ୟ ଜଣେ ବସ୍ ଯାତ୍ରୀ ବାଳକୃଷ୍ଣ ବାବୁଙ୍କ ନିମନ୍ତେ ସ୍ଥାନ ଛାଡ଼ି ଦେଲେ । ଅନ୍ୟ ତିନିଜଣ ଯୁବକ ଥିବାରୁ ସେମାନେ ଠିଆ ହୋଇ ଚାଲି ଯିବେ ବୋଲି କହିଲେ ଓ ବସ୍ ତା' ଗନ୍ତବ୍ୟ ପଥରେ ଅଗ୍ରସର ହେଲା । ନିମାଇଁ ବାବୁ ତାଙ୍କ ଆସନରେ ବସିବା ମାତ୍ରେ ସେ ବସ୍ ଯାତ୍ରୀମାନଙ୍କୁ ସନ୍ତୁଷ୍ଟ କରିବା ଉଦ୍ଦେଶ୍ୟରେ ଆରମ୍ଭ କରି ଦେଲେ ତାଙ୍କ କଣ୍ଠରୁ ଭଜନ ଓ ଜଣାଣ । ସେ ଏପରି ତନ୍ମୟ ଭାବେ ଜଣାଣ ଗାଉଥିବା ସମୟେ ବସ୍‌ର ସମସ୍ତ ଯାତ୍ରୀ ଏକ ପ୍ରକାର ପାଗଳ ହୋଇ ଗଲେ ଓ ଅନ୍ୟ ତିନିଜଣ ଯୁବକ ସଙ୍ଗୀତଜ୍ଞଙ୍କୁ ସ୍ଥାନ ମଧ୍ୟ ଛାଡ଼ି ଦେଲେ ।

ଆଉ ଗୋଟିଏ ଦିନର କଥା—ଥରେ ରାଉରକେଲାକୁ ଜଣେ ଓଡ଼ିଶାର ବିଶିଷ୍ଟ ସଙ୍ଗୀତଜ୍ଞ ନିମନ୍ତ୍ରିତ ହୋଇ ସେଠାରେ ସଙ୍ଗୀତ ପରିବେଷଣ କରୁଥା'ନ୍ତି । ଏହି ଅବସରରେ ସେଠାକାର ଜଣେ ବୃଦ୍ଧ, ସଙ୍ଗୀତଜ୍ଞଙ୍କୁ ଛାନ୍ଦ ପରିବେଷଣ କରିବା ନିମନ୍ତେ ସଭାରୁ ଅନୁରୋଧ କରନ୍ତେ, ସେ ସଙ୍ଗୀତଜ୍ଞ ମହାଶୟ ତାଚ୍ଛଲ୍ୟ ଭାବରେ କହିଲେ ଛାନ୍ଦ ଗୋଟିଏ କି ସଂଗୀତ ? ତାହା ସେ ଜାଣନ୍ତି ନାହିଁ । ତେଣୁ ସେ ବୃଦ୍ଧ ମହାଶୟ ପଚାରିଲେ—ହଇହେ ବାବୁ ! ଏତେ ସଙ୍ଗୀତ ପରିବେଷଣ କଲଣି, କିନ୍ତୁ ତୁମେ ଛାନ୍ଦ ଜାଣନି ? ତେବେ ତୁମେ ଓଡ଼ିଆ ପୁଅ ନୁହଁ । ଏହିପରି ସଭାରେ କହିବାରୁ ସେ ସଙ୍ଗୀତଜ୍ଞ ମହାଶୟ ନିଜକୁ ଅତି ଅପମାନିତ ମନେ କରି ସେ ସଭା ଛାଡ଼ି ଚାଲିଆସିଲେ । କିନ୍ତୁ ଦୁଇ ଦିନର ପ୍ରୋଗ୍ରାମ । ପ୍ରଥମ ପ୍ରୋଗ୍ରାମରେ ଏପରି ଏକ ଘଟଣା ଘଟିବାରେ ସଂଗୀତ ସଭାର ଆୟୋଜକମାନଙ୍କ ମନରେ ଭାବେଣି ପଡ଼ିଲା ଯେ, ଏ ପରିସ୍ଥିତିରେ ଓ ଏତେ ସ୍ୱଳ୍ପ ସମୟ ମଧ୍ୟରେ ଆଉ କେଉଁ ସଙ୍ଗୀତଜ୍ଞଙ୍କୁ ନିମନ୍ତ୍ରଣ କରିବେ ? ଶେଷରେ ଏକ ସିଦ୍ଧାନ୍ତରେ ପହୁଞ୍ଚିଲେ ଯେ ନିମାଇଁ ବାବୁଙ୍କୁ ଅନୁରୋଧ କରିବେ । ତା'ହେଲେ ତାଙ୍କର ଏ ଅସୁବିଧା ଦୂର ହେବ ।

ଏହି ଆଶା ନେଇ ଦୁଇଜଣ ଭଦ୍ରଲୋକ ସଙ୍ଗେ ସଙ୍ଗେ ନିମାଇଁ ବାବୁଙ୍କ ସନ୍ଧାନରେ କଟକ ବଂଗାଳି ସାହି ନିତାଇ ଗୌରାଙ୍ଗ ମଠରେ ପହଞ୍ଚି, ନିମାଇଁ ବାବୁଙ୍କୁ ରାଉରକେଲା ଯିବା ନିମନ୍ତେ ଅନୁରୋଧ କଲେ । ନିମାଇଁ ବାବୁ ରାଜି ହୋଇ ତତ୍‌କ୍ଷଣାତ୍ ତାଙ୍କ ସହ ବିଶିଷ୍ଟ ତବଲା ବାଦକ ଶ୍ରୀମାନ୍ ଭାସ୍କର ଚନ୍ଦ୍ର ଦାସଙ୍କୁ ସାଥିରେ ନେଇ ରାଉରକେଲା ଗଲେ । ସେଦିନ ସନ୍ଧ୍ୟାରେ ରାଉରକେଲାରେ ପ୍ରାୟ ରାତି ସାତ ଘଣ୍ଟା ସମୟକୁ ନିମାଇଁ ବାବୁ ମଞ୍ଚରେ ତାଙ୍କ ସଂଗୀତ ପରିବେଷଣ ଆରମ୍ଭ କରିବା ସଂଗେ ସଂଗେ ପ୍ରାୟ ରାତି ଗୋଟାଏ ପର୍ଯ୍ୟନ୍ତ ୪୪ ଟି ଭଜନ ଜଣାଣ ପରିବେଷଣ କରି, ସର୍ବଶେଷରେ 'କି ହେବ ଶୁଆ ପୋଷିଲେ, ହରିନାମ ନ ଭଜିଲେ' ଗୀତଟି ଗାଇ ସଭାରେ ଉପସ୍ଥିତ ଥିବା ହଜାର ହଜାର ଶ୍ରୋତାମାନଙ୍କୁ ମୁଗ୍ଧ କରି ଦେଇଥିଲେ । ତାଙ୍କ ପରେ ଏପରି କୌଣସି ସଂଗୀତଜ୍ଞ ନାହାନ୍ତି ଯେ କି ଏକ ସମୟରେ ଛଅ ଘଣ୍ଟା ମଧ୍ୟରେ ୪୪ ଟି ଭଜନ ଜଣାଣ ପରିବେଷଣ କରିବେ ।

ଆମ ସଙ୍ଗୀତ ଜଗତରେ ନିମାଇଁ ବାବୁ ଥିଲେ ଜଣେ ମହାରଥୀ । ତାଙ୍କ ପରେ ତାଙ୍କ ସ୍ଥାନଟି ଅପୂରଣୀୟ । କିନ୍ତୁ ଯେତେ ଦିନ ପର୍ଯ୍ୟନ୍ତ ତାଙ୍କ ସୁଲଳିତ କଣ୍ଠର ମହାପ୍ରଭୁ ଜଗନ୍ନାଥଙ୍କ ଭଜନ ଜଣାଣ ରେକର୍ଡ ଦ୍ୱାରା ପରିବେଷଣ କରାଯାଉ ଥିବ, ସେତେ ଦିନ ପର୍ଯ୍ୟନ୍ତ ସେ ଅମର ହୋଇ ଓଡ଼ିଶାର ପୁର ପଲ୍ଲୀରେ ଜୀବିତ ଥିବେ ।



ଭଗତପୁର, କଟକ-୯

# ବାହୁଡ଼ା

## ଶ୍ରୀ ବିପିନ ମହାପାତ୍ର

ବାହୁଡ଼ା...ବାହୁଡ଼ା....ବାହୁଡ଼ା — ବାହୁଡ଼ା ଓଡ଼ିଆ ଜାତିର ଏକ ମହାନ ଇତିହାସ । ଗାଁ ଗଣ୍ଡାରେ ପୂଜିତ ହୋଇ ଘରକୁ ଫେରେ, ତାକୁ କୁହାଯାଏ 'ଘର ବାହୁଡ଼ା' ଭାରତୀୟ ବିଦେଶରୁ ଫେରିବା 'ସ୍ୱଦେଶ ବାହୁଡ଼ା,' ଫକୀରମୋହନଙ୍କ 'ହାଟ ବାହୁଡ଼ା' । ଖାରବେଳ ମଗଧର ରାଜପ୍ରାସାଦକୁ ହାତୀଶାଳରେ ପରିଣତ କରି କଲେ 'କଳିଙ୍ଗ ବାହୁଡ଼ା' । ପୁଣ୍ୟଶ୍ଳୋକ 'ପୁରୁଷୋତ୍ତମ' ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ରାଜ୍ୟାଧିକାର କରି କଲେ 'ବିଜୟ ବାହୁଡ଼ା' ଭୁବନେଶ୍ୱରଙ୍କ ମଧୁମାସରେ 'ରୁକୁଣା ବାହୁଡ଼ା' । ପୃଥିବୀ ପ୍ରସିଦ୍ଧ 'ଶ୍ରୀ ଶ୍ରୀ ଗୁଣ୍ଡିଚା ବାହୁଡ଼ା ।'

ଜୀବନଧାରାର 'ବାହୁଡ଼ା'ଟା କିଛି ବିଚିତ୍ର ବା ଆଶ୍ଚର୍ଯ୍ୟ କିମ୍ବା ଅପ୍ରତ୍ୟାଶିତ ନ ହୋଇ ଏଇଟା ଧ୍ରୁବ ସତ୍ୟ ବୋଲି ସର୍ବସମ୍ମତ, କିନ୍ତୁ ଯେଉଁ ଅମର ପୁଣ୍ୟଶ୍ଳୋକ ମାନଙ୍କ 'ବାହୁଡ଼ା' ଇତିହାସ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୁଏ, ତନ୍ମଧ୍ୟରୁ ଆମର ଓଡ଼ିଶାର ମଧୁବାବୁ, ଗୋପବନ୍ଧୁ, ଗୋଦାବରୀଶ ଇତ୍ୟାଦି ।

କିନ୍ତୁ ୧୯୮୩ ଜୁଲାଇ ୨° ତାରିଖ ଶ୍ରୀ ଗୁଣ୍ଡିଚା ବାହୁଡ଼ା ପ୍ରଭାତରେ ଶୁଣିଲି 'ବାଣୀକଣ୍ଠ' ବାହୁଡ଼ିଲେ । ତାଙ୍କର ବାହୁଡ଼ା ଏପରି ହେବ ବୋଲି ମୁଁ ଅଳ୍ପ କେତେ ବର୍ଷ ପୂର୍ବରୁ ଜାଣି ସେହି ମହେନ୍ଦ୍ର ମୁହୂର୍ତ୍ତକୁ ଅପେକ୍ଷା କରିଥିଲି । ତେଣୁ, ଏ ସମ୍ବାଦ ଶୁଣି ମୁଁ ଚାଲିଲି ପୁରୀ 'ଶ୍ରୀ ଜଗନ୍ନାଥ ନିବା'ସ । ମୁଁ ସେଠାରେ ପହଞ୍ଚି ସ୍ୱର୍ଗୀୟ ମହାଶୟଙ୍କ ପଦ ସ୍ପର୍ଶ କରି ପ୍ରଣାମ କଲି ।'ରାମ-ନାମ' ସଂକୀର୍ତ୍ତନ ଚାଲିଥାଏ ଓ ହେତେବେଳକୁ ମରଣଶରୀରର ଶୁଦ୍ଧ ସ୍ନାନ ବି ସରିଥାଏ ।

ତା'ପରେ ତାଙ୍କ ମରଣଶରୀରକୁ ସସମ୍ମାନେ ନେଇ ଆଗେଇଲୁ ସ୍ୱର୍ଗଦ୍ୱାରକୁ । ବଡ଼ଦାଣ୍ଡରେ ଆମ୍ଭେମାନେ ଯିବା ସମୟରେ 'ଚକାଡ଼ୋଳା' ଥା'ନ୍ତି ଶ୍ରୀ ନନ୍ଦିଘୋଷରେ । ରଙ୍ଗ ଅଧରରେ ମନ୍ଦ ହସ । ବଡ଼ ବଡ଼ ଚକାଆଖି ସେହି 'ମହାବାହୁ' ଶରଧା ବାଲିରୁ ମୁଠିଏ ଭକ୍ତଙ୍କ ଶବାଧାରକୁ ଫିଙ୍ଗି ଦେଇ ପୁଣି ଟିକିଏ ହସି ଦେଲେ । ସତେ ଯେପରି ମନେ ହେଲା, ଭକ୍ତ ଓ ଭଗବାନ ଏକ । କେହି କାହା ଠାରୁ ପୃଥକ୍ ନୁହନ୍ତି । ବ୍ରହ୍ମ ମୁହୂର୍ତ୍ତରୁ ତ ଭକ୍ତ ପ୍ରଭୁଙ୍କ ଶ୍ରୀ ଅଙ୍ଗରେ ବିଲୀନ ହୋଇ ସାରିଛନ୍ତି ।

ସେହି ଝିପି ଝିପି ବର୍ଷାରେ ଆମ୍ଭେମାନେ ଆଗେଇ ଗଲୁ 'ସ୍ୱର୍ଗଦ୍ୱାର' । ସେଠାରେ ଯଥାବିଧି ସତ୍କାର । ଚିତା ଜଳୁଥାଏ, କେଳିହାନ ଶିଖାରେ ।

'ବାଣୀକଣ୍ଠ' ଥିଲେ କବିଲୁ, କୋଣ ଭୁଆସୁଣୀ ଠାରୁ ପ୍ରିୟଦର୍ଶିନୀ ଇନ୍ଦିରା ଗାନ୍ଧୀ ପର୍ଯ୍ୟନ୍ତ ସମସ୍ତଙ୍କ ପରିଚିତ ଓ ପ୍ରିୟ । ତାଙ୍କ ପ୍ରତିଭାରେ ମୂର୍ଖଠାରୁ ପଣ୍ଡିତ ସମସ୍ତେ ମୁଗ୍ଧ ।

ତାଙ୍କ ସଂପର୍କରେ ଦୁଇପଦ କହୁଛି—ସେ ମତେ ବାରମ୍ବାର ପୁରୀ ଯିବା ପାଇଁ ଡ଼ାକନ୍ତି । ମୁଁ ସୁବିଧା ହେଲେ ଯାଏ, ନଚେତ ଲେଖେ । ଆପଣ ତ ଦ୍ୱିତୀୟ ଶ୍ରୀ ଚୈତନ୍ୟ, ଆପଣ 'ଜଗବନ୍ଧୁ'ଙ୍କ ଦର୍ଶନ କରୁଛନ୍ତି । ଶ୍ରୀମର ଡ଼ାକୁଛନ୍ତି । ମତେ ତ ତାଙ୍କର ଏତେ କୃପା ନାହିଁ । ତେଣୁ ମୁଁ ଯିବି କିପରି ?

ତାଙ୍କ ବାହୁଡ଼ାର ଦୁଇବର୍ଷ ପୂର୍ବରୁ ମତେ 'ହରିଦାସ' ଠାକୁର ବାଡ଼ିକୁ ପଠାଇ 'କଣ୍ଠିମନ୍ତ୍ର' ଦିଆଇ ଥିଲେ ଗୌର ଭକ୍ତଙ୍କ ଠାରୁ । ମୁଁ ସେଠାରୁ ଫେରି ଶ୍ରୀ ମନ୍ଦିରରେ

'ଚକାଡୋଳା' ଦର୍ଶନ କରି ପହଞ୍ଚିଲି ଓ ତାଙ୍କୁ ପ୍ରଣାମ କଲି । ସେ ଅତି ଆଦରରେ/ଆନନ୍ଦରେ ତାଙ୍କ ସାଥୀରେ ମଟର ଅବଢା ଖୁଆଇଲେ ।

ମୁଁ ଯେତେବେଳେ ପୁରୀ ଯାଏ, କିଛି ମହାପ୍ରସାଦ ନେଇ ଶ୍ରୀମନ୍ଦିରରୁ ତାଙ୍କୁ ଭେଟେ । ସେ ଏଥିରେ ପରମ ସନ୍ତୋଷ ପ୍ରକାଶ କରନ୍ତି ।

ସେ ଶ୍ରୀ ମନ୍ଦିରକୁ ଗଲେ, ଗୃମର ସେବା କରନ୍ତି ଓ ଜଣାଣ ଗାଆନ୍ତି । ମୁଁ ତାଙ୍କ ପାଖେ ପାଖେ ରହି ନୀରବରେ ଭକ୍ତିପୂତ ମାନସରେ ତାହା ଶୁଣେ ।

ଅନେକ ସମୟରେ ସେ ଜଗନ୍ନାଥ ମହାପ୍ରଭୁଙ୍କୁ ଭକ୍ତି ବିହ୍ୱଳ ଭାବେ ଦର୍ଶନ କରି ଅଶ୍ରୁ ବର୍ଷଣ କରନ୍ତି ଓ ଅନେକ ସମୟରେ ନିଜ ଲୋକ ପରି ଅଭିମାନ କରନ୍ତି ଓ ଗାଳି ଦିଅନ୍ତି । ନୀଳଚକ୍ର ଦର୍ଶନ କରି ତାଙ୍କ ଦୁଃଖ ଜଣାଇ ବହୁତ କାନ୍ଦନ୍ତି ।

ସେ କହନ୍ତି — ଜୀବନଟା ଏକ 'ଫୁଲ' । ଫୁଲ ଫୁଟିଛି, ଝଡ଼ିଯିବ । ତେଣୁ, ଏହାକୁ ଶୁଦ୍ଧପୂତ କରି ସେ ମହାପ୍ରଭୁଙ୍କ ଲାଗି କରାଇ ପାରେ, ଅର୍ଥାତ୍ ଫୁଲପରି କୋମଳ ହୋଇ ସେ ନରନାରୀମାନଙ୍କ ହୃଦୟର ଦୁଃଖ ବୁଝିବା । ଫୁଲ ପରି ସୁନ୍ଦର ହୋଇ ମାନବ ସମାଜର ଆବର୍ଜନା ଅସୁନ୍ଦରକୁ ପରିଷ୍କାର କରି ସୁନ୍ଦର କରି ପାରିଲେ, ସେ ହେବ ପ୍ରକୃତ ଈଶ୍ୱର ସେବା । ସତଚିନ୍ତା ଓ ସତ୍ କର୍ମରେ ବିସ୍ତାରିତ ହେବା ମନୁଷ୍ୟର ଧର୍ମ । ଏହାଦ୍ୱାରା ମନୁଷ୍ୟ ପ୍ରକୃତ ମନୁଷ୍ୟ ହୋଇ ମରିବ ।

ଯଥାର୍ଥରେ ସେ ଯାହା କହୁଥିଲେ ତା' ଆଚରଣ କରି 'ବାହୁଡାଇ ଦିଅ ମୋତେ' ବାହୁଡା ଦିବସେ କହି କହି ଚାଲିଗଲେ । ତାଙ୍କ ନରଦେହ ଦିନା ଆମକୁ ଛାଡ଼ି ଯାଇଛି, କିନ୍ତୁ ତାଙ୍କ ସଂଗୀତର ତାନରେ/ମାନରେ/ଅଭିମାନରେ ଆମ ପାଖରେ ଚିରକାଳ ଅଜସ୍ର/ଅକ୍ଷୟ ଓ ଅମର ହୋଇ ରହିଛନ୍ତି ଓ ରହିଥିବେ ।



ଯାଜପୁର, କଟକ



୧୯୭୭ ମସିହାରେ ଦିଲ୍ଲୀ ରାଷ୍ଟ୍ରପତି ଭବନରେ ତତ୍କାଳୀନ ରାଷ୍ଟ୍ରପତି ଫକରୁଦ୍ଦିନ ଅଲ୍ଲୀ ଅହମ୍ମଦ ବାଣୀକଣ୍ଠଙ୍କୁ ପଦ୍ମଶ୍ରୀ ଉପାଧିରେ ଭୂଷିତ କରୁଛନ୍ତି ।



୧୯୮୦ ମସିହାରେ ବାଣୀକଣ୍ଠଙ୍କୁ "ହିଜ୍ ମାଷ୍ଟରସ ଭଏସ୍" ପକ୍ଷରୁ ଷ୍ଟେରିଓ ଉପହାର ।

# ଯେ ପକ୍ଷୀ ଉଡ଼େ ଯେତେ ଦୂର

ଶ୍ରୀମତୀ ବୀଣାପାଣି ସିଂହ

ବାଳକ ନିମାଇଁଙ୍କ ସୁମଧୁର କଣ୍ଠରୁ ଭଜନ, ଜଣାଣଟିଏ ଶୁଣିଲେ, ବାଟର ବାଟୋଇ କାମ ଛାଡ଼ି ଘଡ଼ିଏ ଛିଡ଼ା ହୋଇ ଯାଉ ଥିଲା । ବାଳକ ନିମାଇଁ ଭଜନ ଗାଉଥିଲା ବେଳେ ତନ୍ମୟ ହୋଇଥିଲେ । ଚକ୍ଷୁ ଦ୍ୱୟରୁ ନିଗିଡ଼ି ଆସୁଥିଲା ବାଷ୍ପ-ଧାରା । ଭକ୍ତି ଭାବରେ ତନ୍ମୟ ହୋଇ ଶ୍ରୋତାଙ୍କର ଚକ୍ଷୁ ମଧ୍ୟ ଆର୍ଦ୍ର ହୋଇ ଉଠୁଥିଲା ।

ସେତେବେଳେ ଗୁରୁ ରାମ ଦାସ ବାବାଜୀ କଲିକତାରେ ଅବସ୍ଥାନ କରୁଥା'ନ୍ତି । ଶ୍ରୀ ଜଗନ୍ନାଥଙ୍କ ଦର୍ଶନ ପାଇଁ ପ୍ରତି-ବର୍ଷ ରଥଯାତ୍ରାକୁ ପୁରୀ ଆସନ୍ତି । ପୁରୀରୁ କେନ୍ଦ୍ରାପଡ଼ାର 'ଗୋବିନ୍ଦ ଜୀଉ ମନ୍ଦିର'କୁ ଯା'ନ୍ତି । ସେଠାରେ ଗୁରୁ ରାମ ଦାସଙ୍କ ସହ ନିମାଇଁଙ୍କର ଭେଟ ହୁଏ । ଠାକୁରଙ୍କ ନିର୍ଦ୍ଦେ-ଶରେ ନିମାଇଁ ଚୁମ୍ବକ ପରି ଗୁରୁଙ୍କ ନିକଟକୁ ଟାଣି ହୋଇ-ଗଲେ । ସେତେବେଳେ ନିମାଇଁ ଦଶ ବର୍ଷର ବାଳକ । ନିମାଇଁଙ୍କର ଭକ୍ତି ମନୋଭାବ ଗୁରୁ ରାମ ଦାସଙ୍କୁ ମୁଗ୍ଧ କରିଥିଲା । ଦୁହେଁ ଦୁହିଁଙ୍କୁ ଆପଣାର ମଣିଥିଲେ ।

ଦିନକର କଥା—ଗୁରୁ ଜାଣି ପାରିଲେ ନିମାଇଁଙ୍କ ମନ ଖରାପ । ତାଙ୍କ ପାଖରେ କାଣି କଉଡ଼ିଟିଏ ବି ନାହିଁ । ଆଦରରେ ପାଖକୁ ଡ଼ାକି ଅଧୁଲିଟିଏ ଦେଇ ଖର୍ଚ୍ଚ କରିବାକୁ କହିଲେ । ନିମାଇଁଙ୍କ ହୃଦୟରେ ଆନନ୍ଦର ଜୁଆର । ଗୁରୁ-କୃପାର କରୁଣା ବାରି ସ୍ପର୍ଶରେ ସେ ପୁଲକି ଉଠିଲେ । ସେହି ଦିନରୁ ଗୁରୁକୃପାର ଅମୀୟ ସୁଧା ସ୍ୱରୂପ ସେ ଅଧୁଲିଟିକୁ ପାଖରୁ ଅନ୍ତର କରନ୍ତି ନାହିଁ । ଅଣ୍ଟାରେ ଖୋସା ହୋଇ ସବୁବେଳେ ଥାଏ । ରାତିରେ ଶୋଇଲା ବେଳେ ବିଛଣାରେ ରଖି ଥା'ନ୍ତି । ଜୀବନର ଶେଷ ରାତିରେ ମଧ୍ୟ ଗୁରୁକୃପାର ନିଧିଟିକୁ ମୁଣ୍ଡ ତଳେ ରଖିଥିଲେ ।

ଶ୍ୱଶୁର ଘର ଆଠଗଡ଼ । ଆଠଗଡ଼ ରାଜା ସାହେବ ନିମାଇଁ-ଙ୍କର ସଙ୍ଗୀତରେ ମୁଗ୍ଧ ହୋଇ ଏକ ଏକର ଜମି ଉପରେ ଅବସ୍ଥିତ ୧୮ ବଖରା ବିଶିଷ୍ଟ ଦୁଇ ମହଲା କୋଠା ସହ ଶହେ ମାଣ ଜମି ଦାନ କରିଥିଲେ । ୧୯୩୩ ରେ ନିମାଇଁ କେନ୍ଦ୍ରାପଡ଼ା ଛାଡ଼ିଲେ । ରାଜଦରବାରର ସଙ୍ଗୀତ ଶିଳ୍ପୀ ହୋଇ ଆଠଗଡ଼ରେ ରହିଲେ । ରାଜାସାହେବ ଓ ନିମାଇଁ ଚରଣଙ୍କ ମଧ୍ୟରେ ଗଭୀର ସହୃଦୟତା ବଢ଼ି ଚାଲିଲା ।

ଜଗନ୍ନାଥଙ୍କ ଡ଼ୋରି ଲାଗିଲେ ସୁଦୂର ଯେ ଜଗତରୁ ବି ଭକ୍ତ ଟାଣି ହୋଇ ଆସେ । ନିମାଇଁ ଏତେ ଦୂରରେ ବା ରହି ପାରିବେ କେଉଁଠି ?

ତା'ପରେ ଆଠଗଡ଼ ଛାଡ଼ି ଦ' ପରଣୀ ଆସି ପୁରୀରେ ରହିଲେ । ଖରା, ବର୍ଷା, ଶୀତ, କାକରକୁ ଏଡ଼େଇ ନିତି-ସକାଳୁ ନିମାଇଁ ନିଜ ନିତ୍ୟକର୍ମ ସାରି ଧାଇଁ ଆସନ୍ତି ବଡ଼ ଦେଉଳକୁ... । ସିଂହଦ୍ୱାରରେ ପହଞ୍ଚି କରୁଣାବାରିଧିଙ୍କର ନୀଳଚକ୍ରକୁ ଚାହିଁ ଭଜନ ଗାଆନ୍ତି । ଆଖିରୁ ବହି ଯାଉଥାଏ ଆନନ୍ଦାଶ୍ରୁ । ସିଂହଦ୍ୱାର ଖୋଲା ହୁଏ । ମଙ୍ଗଳ-ଆଳତି ପରେ ଅବକାଶ ହୁଏ, ଅବକାଶ ଜଳ ପିଇ ବେଢ଼ା ପରି-କ୍ରମା କରି ଘରକୁ ଫେରୁ ଫେରୁ ଦିନ ଦଶଟା ହୁଏ । ଠାକୁରଙ୍କ ଭୋଗରେ ଘର ଭରସା । ଆଖି ଟିକେ ବୁଜି ଜଗା କାଳିଆକୁ ମନରେ ଆଣି ଖୁସି ମନରେ ମହାପ୍ରସାଦ ସେବା କରନ୍ତି । ଘରେ ଟିକେ ଭଲ ମନ୍ଦ ହେଲେ କହନ୍ତି—"ଯା, ନୀଳଚକ୍ର ପାଖରେ ଟିକେ ଦେଖେଇ ଆଣ ।"

ଜଗନ୍ନାଥ ତାଙ୍କ ପ୍ରାଣ । ସେ କହନ୍ତି— ସବୁଦିନ ସକାଳୁ ଯାଇ ଠାକୁରଙ୍କୁ ଦେଖା ନ କଲେ ତାଙ୍କ ହାଜିର ଖାତାରେ ନାଲି ଚକ ପଡ଼ିଯିବ । ନିଜର ଲୋକମାନଙ୍କ ପାଖକୁ ଚିଠି ଲେଖିଲା ବେଳେ, ଜଗନ୍ନାଥଙ୍କ ଭଲ-ମନ୍ଦ ଦୁଇ-ଧାଡ଼ି ଲେଖିଥା'ନ୍ତି । ଗାଁରୁ କେବେ ବନ୍ଧୁ-ବାନ୍ଧବ ଆସି ପହଞ୍ଚି ପ୍ରଣାମ କରୁ କରୁ କହିବେ— 'ଯା, ଆଗେ ତାଙ୍କୁ ଦେଖାକରି ଦି' ପଦ କଥା ଭାଷା ହେଇଥା—ତା' ପରେ ଏଠି ଘରେ ଯାହା ସଙ୍ଗେ ଯା' କଥା ହେବୁ ।'

ଦେବସ୍ନାନ ପୂର୍ଣ୍ଣିମୀ ବୁଗ ପାଞ୍ଚ ଦିନ ଥାଏ । କ'ଣ ମନ ହେଲା କେଜାଣି ଠାକୁରଙ୍କ ପଣ୍ଡା ମଦନ ମୋହନଙ୍କୁ ଡ଼ାକି କହିଲେ—''ଗଲା ଟିକେ ଜଗନ୍ନାଥଙ୍କୁ ଦେଖିବେ, ମୁଁ

କେବେ ଯିବ ?" ମଦନ ମୋହନ ଆଗ ପଛ ହେଲେ । ବାଣୀକଣ୍ଠଙ୍କର ଆତୁର ନିବେଦନ—"ଯା ପରୀକ୍ଷା ଦବ, ତମେ ଫେରିବା ଯାଏ ମୁଁ ଏଇଠି ବଇଚି ।" କିଛି ସମୟ ପରେ ମଦନ ଫେରି ଆସି କହିଥିଲେ—"ଆଉ ମାସେ ।"

ତା' ପରଦିନ ପଣ୍ଡାଙ୍କୁ ଅରୁଆ ଚାଉଳ କିଛି, ଟଙ୍କା ଦଶଟି ଦେଇ କହିଲେ—"କାଲିଆ ତ ଶ୍ରୀ ମନ୍ଦିରକୁ ଫେରିଲା ବେଳକୁ ମୁଁ ନଥିବି, ରଖିଥା—ମୋ ପାଇଁ କିଛି ଭୋଗ କରି ଦବ ।"

ସେଇ ଯୋଗଜନ୍ମା, କର୍ମଠ କର୍ମୀ, ଭକ୍ତ, ମହାପୁରୁଷ ଜମାଇଁ ଚରିତ ଆଜି ଆଉ ନାହାନ୍ତି ।

୧୯୮୩ ମସିହା—ଜୁଲାଇ ୧୧ ତାରିଖ । ପରଦିନ ବାହୁଡ଼ା ହେବ । କଟକରୁ ମଝିଆଁ ପୁଅ ରାଜେନ୍ଦ୍ର, ସ୍ତ୍ରୀ ପ୍ରେମଲତା, ଦୁଇପୁଅ ବାବୁଲୁ, ଟୁବୁଲୁଙ୍କୁ ସାଙ୍ଗରେ ନେଇ ଆସିଥି'ନ୍ତି । ବାହୁଡ଼ାରେ ଠାକୁରଙ୍କୁ ଦେଖିବେ—ବାପା, ବୋଉଙ୍କୁ ବି କିଛି ଦେଖିବେ ।

ବାଣୀକଣ୍ଠ ରାତିରେ ମାଉସୀ ମା' ଘରୁ ଠାକୁରଙ୍କ ପାଖେ ଭଜନ ଗାଇ ଫେରିଲେ । ହସ ହସ ମୁହଁ, ସତେକି ମହୁ ଝରୁ ଥାଏ କଥାରୁ । ପୁଅକୁ ପଚାରିଲେ—'କେବେ କଟକ ଫେରିବ ?'

'କାଲିତ ବାହୁଡ଼ା, ବୁଧବାର । ମୁଁ ଗୁରୁବାର ଫେରିବ ।'

ରାତି ସାଢ଼େ ଦଶଟା—ନିତିଦିନ ପରି ସ୍ୱାଭାବିକ ଭାବରେ ଦୁଧ, ରୁଟି ଖାଇ ବିଛଣାକୁ ଗଲେ । ବୋହୂର ପାଦ ଆଉଁସାରେ ନିଦ ହୋଇଗଲା । ଖଟ ଉପରେ ପାଖରେ ଶୋଇଲା ବି. ଏ. ପଢ଼ୁଆ ବଡ ନାତି ବାବୁଲୁ । ପୁଅ ରାଜେନ୍ଦ୍ର ସେଇ ଘରେ ତଳେ ଶୋଇଲେ । ମଝିଆଁ ଝିଅ, ଜୋଇଁ, ବଡ଼ ନାତି ସମସ୍ତଙ୍କ ଗହଣରେ ସେ ଦିନ ଘର ଭରିଗଲା ।

ରାତି ସାଢ଼େ ଦୁ'ଟା ହେବ । ବାବୁଲୁ ଡ଼ାକ ପକେଇଲା, "ବାପା, ଜେଜେ ବାପା ତମକୁ ଡ଼ାକୁଛନ୍ତି ।" ରାଜେନ୍ଦ୍ର ବିଳବିଳେଇ ଉଠିଲେ—ଆଲୁଅ ସୁଇଚ୍ ଟିପି ବାପାଙ୍କ ପାଖକୁ ଦୌଡ଼ି ଗଲେ, ବାପା ଉଠି ବସିଛନ୍ତି । ଉଚ୍ଛ୍ୱାସ ନିଃଶ୍ୱାସ ଚାଲିଛି । ମୁଣ୍ଡକୁ, ଛାତିକି ନିଜ ହାତ ଦେଖେଇଲେ । ରାଜେନ୍ଦ୍ର ବାପାଙ୍କ ପାଖରେ ବସି ତାଙ୍କୁ କୋଳେଇ ନେଲେ । ଘରର ସଭିଏଁ ଦୌଡ଼ି ଆସିଲେ । ରାଜେନ୍ଦ୍ର ପାଣି କିଛି ଦେଲାରୁ ହାତ ଠାରି ପାଣି ପିଇବାକୁ ମନା କଲେ । ପୁଅ ବାପାଙ୍କ ମୁଣ୍ଡରେ ପାଣି ଛାଟିଲେ....ଆଖି ଅଳପ ଖୋଲି ସାମନାରେ ଥିବା ଜଗନ୍ନାଥଙ୍କ ଫଟୋକୁ ଚାହିଁ ଆଖି ବୁଜି, ମୁଣ୍ଡ ନଇଁ ପୁଅ ଉପରକୁ ଢଳି ପଡ଼ିଲେ ।

ବଡ଼ ଦାଣ୍ଡରେ ମରଣଶରୀର ଛାଡ଼ି ଆତ୍ମା ସେ ପୁରକୁ ଚାଲିଗଲା । ଶରୀର ରଖି ପାରିଲା ନାହିଁ ।

୧୯୮୩ ମସିହା ଜୁଲାଇ ୨୦ ତାରିଖ—ବାହୁଡ଼ା, ପବିତ୍ର ଅବସର ମାହେନ୍ଦ୍ର ବେଳା···ପାହାନ୍ତା ପହର · ପୁରୀ ବଡ଼-ଡ଼ାକ୍ତରଖାନାର ବଡ ଡାକ୍ତର ନାଡ଼ିରେ ହାତ ରଖି, ଉତ୍ତର ଦେଇଥିଲେ ଅଶ୍ରୁଳ ଲୁହରେ... ।

ସେତେବେଳେ ଅଠଗଡ଼ ରାଜା ସାହେବ ପୁରୀରେ ରହୁଥା'ନ୍ତି । ପ୍ରଥମେ ତାଙ୍କ ପାଖକୁ ଖବର ଗଲା ଟେଲି-ଫୋନ ମାଧ୍ୟମରେ । ସିନ୍ଦୁର ଫାଟିଲାଣି, ରାଜାସାହେବ-ଙ୍କର ତ ପହୁଡ ଭାଙ୍ଗିବା କଥା । ତାଙ୍କ ପୁଅ ଯାଇ ବାପାଙ୍କୁ ଡ଼ାକିଲେ । ରାଜାସାହେବ ଏକାକୀ ତାଙ୍କ ଶୋଇବା ଘରେ ଭିତରୁ କବାଟ ବନ୍ଦ କରି ଶୁଅନ୍ତି । ଦରଜାରେ ଘନ ଘନ ଆଘାତରେ ମଧ୍ୟ ପହୁଡ ଭାଙ୍ଗି ନାହିଁ । ପୁଅ ବ୍ୟତିବ୍ୟସ୍ତ ହୋଇ ଦରଜା ଭାଙ୍ଗି ଭିତରକୁ ପଶିଲେ । ହଲେଇ ଦେଲେ—ବାପା, ବାପା-ପଲଙ୍କରେ ରାଜା ସାହେବ ଶୋଇଛନ୍ତି, ନୀରବ, ନିଥର···ସଂଜ୍ଞାହୀନ । ସେଇ ସଂଜ୍ଞାହୀନ ଶରୀରକୁ ଡ଼ାକ୍ତରଖାନା ଆଣିଲେ । ସେମିତି ଅବସ୍ଥାରେ ଦୁଇଦିନ ରହିଲେ । ସୁହୃଦ ବନ୍ଧୁଙ୍କ କଥା ଭାବି ସେହି ମହାନ୍ ଆତ୍ମାର ପଥାନୁସରଣ କଲା ଆଉ ଗୋଟିଏ ଆତ୍ମା, ସଂଜ୍ଞାହୀନ ହେବାର ତୃତୀୟ ଦିବସରେ ... ।

ଏ ସଂସାରରେ ଏପରି ସୌହାର୍ଦ୍ଦ୍ୟର ତୁଳନା ନାହିଁ । ଦୁଇଟି ଆତ୍ମା ଏକସୂତ୍ରରେ ଗ୍ରଥିତ ହୋଇ ଯାଇଥିଲା, ଏପରି ବନ୍ଧୁତାର ନମୁନା ଏ ସଂସାରରେ ବିରଳ ।

●

ଅଧ୍ୟାପିକା, ଓଡ଼ିଆ ବିଭାଗ
ରେଭେନ୍ସା ମହାବିଦ୍ୟାଳୟ, କଟକ ।

# ବାଣୀକଣ୍ଠଙ୍କ ବାହୁଡ଼ା ବିଜୟ


## ଶ୍ରୀ ଶଙ୍କର୍ଷଣ ମଙ୍ଗରାଜ


ଗଦାଧର ସିଂହ ସାମନ୍ତ ଜୀବନସାରା ଯିଉଁ ଅର୍ଜିତ ସମ୍ପତ୍ତି ଓ ସୁନାମ ଭୋଗ ଦଖଲ କରିବା ପରେ ଜୀବନର ଅନ୍ତିମ ସମୟ ଶ୍ରୀକ୍ଷେତ୍ରରେ ଅତିବାହିତ କରିବାକୁ ମନସ୍ଥ କରି ନିଜେ ଗଣନା କଲେ ଏବଂ ମୃତ୍ୟୁ ସମୟ ଠିକ ଭାବରେ ନିର୍ଦ୍ଧାରଣ କଲେ । ନିଜର ମୃତ୍ୟୁ ତାରିଖ, ସମୟ ଇତ୍ୟାଦି ଏକ ମୁଦ୍ରିତ ଲଫାଫାରେ ସମ୍ବାଦପତ୍ରର ସମ୍ପାଦକଙ୍କ ନିକଟକୁ ପଠାଇଦେଇ ଏକ ସ୍ୱତନ୍ତ୍ର ପତ୍ରରେ ଅନୁରୋଧ କଲେ ନିର୍ଦ୍ଦିଷ୍ଟ ତାରିଖରେ ତାହା ଖୋଲିବା ପାଇଁ । ନିର୍ଦ୍ଦିଷ୍ଟ ତାରିଖରେ ତାହା ଖୋଲାଗଲା ବେଳକୁ ଆସି ପହଞ୍ଚିଲା ତାଙ୍କର ମୃତ୍ୟୁ ସମ୍ବାଦ । ସ୍ୱର୍ଗଦ୍ୱାର ନିକଟସ୍ଥ ଏକ ଭଡ଼ାଘରେ ସେ ବାସ କରୁଥିଲେ । ମୃତ୍ୟୁ ଦିବସର ପ୍ରତ୍ୟୁଷରୁ ସମସ୍ତ ନିତ୍ୟକର୍ମ ଓ ପୂଜାପାଠ ଯଥାବିଧି ସମାପ୍ତ କରି ସେ ତାଙ୍କର ସମସ୍ତ ଆତ୍ମୀୟ ଓ ବନ୍ଧୁବାନ୍ଧବଙ୍କୁ ନିକଟକୁ ଡାକିଲେ । ଘରର ଅଗଣାରେ ଥିବା ତୁଳସୀ ଚଉରା ମୂଳେ ସମସ୍ତେ ବସି ସମବେତ ଭାବରେ ମହାମନ୍ତ୍ର କୀର୍ତ୍ତନ କଲେ । ପଦ୍ମାସନରେ ବସି ଯୋଗମୁଦ୍ରାରେ ଥାଇ ମହାମନ୍ତ୍ର ଗାଇ ଗାଇ କେତେବେଳେ ସେ ଚିର ସମାଧି ପ୍ରାପ୍ତ ହେଲେ ତାହା କେହି ଜାଣି ପାରିଲେ ନାହିଁ ।

ବାଣୀକଣ୍ଠଙ୍କର ମଧ୍ୟ ସେହି ଅବସ୍ଥା ହେଲା । ପୂର୍ବଦିନ ସନ୍ଧ୍ୟାରେ ଶ୍ରୀଗୁଣ୍ଡିଚା ମନ୍ଦିରରେ ଆଡ଼ପ ଦର୍ଶନ ସାରି, ରାମର ସେବା ପରେ ସେ ନିଜର ମାଟି ମଣ୍ଡପ ସାହି ବାସଭବନ 'ଶ୍ରୀ ଜଗନ୍ନାଥ ନିବାସ'କୁ ଫେରିଗଲେ ଏବଂ ସମସ୍ତ ନିତ୍ୟକର୍ମ ପରେ ବିଶ୍ରାମ ନେଲେ । ହଠାତ୍ ତାଙ୍କର ଶାରୀରିକ ପ୍ରକ୍ରିୟାରେ ବ୍ୟତିକ୍ରମ ଦେଖାଗଲା । ତାଙ୍କୁ ପୁରୀ ବଡ଼ ଡାକ୍ତରଖାନାକୁ ଆଣି ପରୀକ୍ଷା କଲା ବେଳକୁ ସେ ଇହଲୀଳା ସାଙ୍ଗ କରି ସାରିଥିଲେ ।

ଦୀର୍ଘ ବାରବର୍ଷ କାଳ ଅର୍ଥାତ ଗୋଟିଏ ଯୁଗ ସେ ଶ୍ରୀକ୍ଷେତ୍ର ନିବାସୀ ହୋଇଥିଲେ । ପରିବାର ସଂସାରର ମାୟା ମମତା, ବନ୍ଧୁ ବାନ୍ଧବଙ୍କ ଡୋର କାଟି ଶ୍ରୀ ଜଗନ୍ନାଥଙ୍କ ଡୋରରେ ବନ୍ଧା ହୋଇଥିଲେ । ତେଣୁ ଶ୍ରୀ ଜଗନ୍ନାଥ ମହାପ୍ରଭୁ ତାଙ୍କ ଶେଷ ଜୀବନରେ ନିରାଶ କରନ୍ତେ ବା କିପରି ? ସ୍ୱର୍ଗ ଦ୍ୱାରରେ ତାଙ୍କ ଶେଷ ଚିତା ଜଳିଲା ମହାପ୍ରଭୁଙ୍କ ରୋଷେଇଶାଳରୁ ଅଣାଯାଇଥିବା ହୋମାଗ୍ନି ଦ୍ୱାରା । ଜୀବାତ୍ମା ତାଙ୍କର ପରମାତ୍ମାରେ ଲୀନ ହୋଇଗଲା । ଯେଉଁଠାରୁ ଆସିଥିଲା ସେଇଠିକି ବାହୁଡ଼ିଗଲା । ମାତ୍ର ତାଙ୍କର ଅଗଣିତ ଗୁଣମୁଗ୍ଧ ପ୍ରଶଂସକଙ୍କ ପାଇଁ ଏହା ଥିଲା 'ବାହୁଡ଼ା ବିଜୟ' ।

ଏହି ମହାତ୍ମାଙ୍କ ପବିତ୍ର ସଂସର୍ଗରେ ଏ ଲେଖକ ଆସେ ୧୯୭୯ ମସିହାରେ । ବାଣୀକଣ୍ଠ ତାଙ୍କ ଜୀବନ ସନ୍ଧ୍ୟାରେ ସମସ୍ତ ଜାଗତିକ କାର୍ଯ୍ୟକଳାପରୁ ଅବସର ନେଇ କେବଳ ଶ୍ରୀ ଜଗନ୍ନାଥଙ୍କ ଆଶ୍ରିତ ଥିଲାବେଳେ କଟକ ବିବିଧ ଭାରତୀ ତରଫରୁ ତାଙ୍କ ସହିତ ଏକ ସାକ୍ଷାତ୍‌କାର ବ୍ୟବସ୍ଥା କରାଗଲା । କପାଳରେ ଶ୍ରୀ ହରିମନ୍ଦିର ଚିତା, କଣ୍ଠରେ ତୁଳସୀ ମାଳ, ହାତରେ ତେଜ୍‌ବଲ୍ ଠେଙ୍ଗା ଧରି ହସ ହସ ମୁହଁରେ ଦୀର୍ଘଦିନ ପରେ ସେ ଯେତେବେଳେ ଆକାଶବାଣୀର ବ୍ୟାଣ୍ଡନମେଣ୍ଟ ରୋଡ ସ୍ଥିତ ନୂତନ ଭାବେ ନିର୍ମିତ ଷ୍ଟୁଡ଼ିଓ ମଧ୍ୟକୁ ପ୍ରବେଶ କଲେ ସମସ୍ତଙ୍କ ମନରେ ପୁଲକ ଖେଳିଗଲା । ତାଙ୍କ କଣ୍ଠସ୍ୱର ସହିତ ବହୁ ପୂର୍ବରୁ ପରିଚିତ ଶ୍ରୋତାମାନେ ତାଙ୍କ ଦର୍ଶନ ଲାଳସାରେ ଦଉଡ଼ିଗଲେ । ଲେଖକ ଥିଲା ସାକ୍ଷାତ୍‌କାରର ପ୍ରଶ୍ନକର୍ତ୍ତା । ବିଭିନ୍ନ ପ୍ରଶ୍ନ ଦେବାକୁ ପଡ଼ିବାରୁ ମନରେ କୌତୁହଳ ହେଲା ଗୋଟିଏ ପ୍ରଶ୍ନ ପଚାରିବା ପାଇଁ । "ଆପଣ ଦୀର୍ଘଦିନ ଧରି ଘରଦ୍ୱାର ସଂସାର ପରିତ୍ୟାଗ କରି ଶ୍ରୀକ୍ଷେତ୍ରରେ ଯେଉଁ ଅପେକ୍ଷା କରି ରହିଛନ୍ତି, ପ୍ରଭୁ କ'ଣ ଆପଣଙ୍କର 'ଶେଷ ଇଚ୍ଛା' ପୂରଣ କରିବେ ବୋଲି ଆପଣ ମନେ କରୁଛନ୍ତି ?"

ସବୁ ପ୍ରଶ୍ନର ସ୍ୱାଭାବିକ ଉତ୍ତର ସେ ଦେଇ ଚାଲିଥିଲେ । ମାତ୍ର ଏହି ପ୍ରଶ୍ନ ଶୁଣିବା ମାତ୍ରେ ହଠାତ୍ ନିର୍ବାକ୍ ହୋଇ ରହିଗଲେ । ଜୀବନର ଏକ ନିଷ୍ଠୁର ସତ୍ୟ ଏହି ପ୍ରଶ୍ନଟି

ତାଙ୍କ ହୃଦକନ୍ଦରର କୋମଳ ତନ୍ତ୍ରୀକୁ ଅତି ନିବିଡ଼ ଭାବରେ ସ୍ପର୍ଶ କଲା । ସେ ଆଉ କୋହ ସମ୍ଭାଳି ପାରିଲେ ନାହିଁ । ହୃଦୟରେ ସ୍ପନ୍ଦନ ଜାତ ହେଲା । ଏ ପ୍ରକାର ପରିସ୍ଥିତିରେ ପ୍ରଶ୍ନକର୍ତ୍ତା ନିଜକୁ ଅପରାଧୀ ମନେ କରିବା ସ୍ୱାଭାବିକ । ତାଙ୍କ ନୟନ ଯୁଗଳ ମୁଦ୍ରିତ ହୋଇ ଆସିଲା । ଦୁଇ ହାତ ଯୋଡ଼ି ହୋଇ କପାଳରେ ଲାଗିଲା । ଅନ୍ତରର କୁହୁଳା ସବୁଧୂଆଁ ଚାରିଟି ଦୁଇଟୋପା ଲୁହ ହୋଇ ଚକ୍ଷୁପଥରୁ ନିର୍ଗତ ହୋଇ ପଡ଼ିଲା । ମନେ ହେଲା ଅକୁହା ଭାଷା ପ୍ରକାଶ ପାଇଲା ଅସ୍ପଷ୍ଟ ଭାବରେ, ମାତ୍ର ଗୋଟିଏ ଶବ୍ଦରେ 'ମହାପ୍ରଭୁ' ।

କାର୍ଯ୍ୟକ୍ରମ ଶେଷ ହେଲା । ମଧ୍ୟାହ୍ନରେ ତାଙ୍କୁ ଫାଟକ ନିକଟରେ ବଳେଇ ଦେଇ ଆସିଲି । ଶ୍ରୀକ୍ଷେତ୍ର ଫେରିଯାଇ ସେ ହଠାତ୍ ମୋ ପାଖକୁ ପତ୍ର ଦେଇଥିଲେ ।

ଶ୍ରୀ ଜଗନ୍ନାଥ ନିବାସ,
ମାଟିମଣ୍ଡପ ସାହି,
ପୁରୀ ।

ଶ୍ରୀ ଶ୍ରୀ ରାଧାଗୋବିନ୍ଦ ଦେବ ଶରଣ
ଜୟ ଶ୍ରୀ ଗୁରୁଦେବ ।

କଲ୍ୟାଣ ବରେଷୁ,

ପ୍ରୋଗ୍ରାମଟି ଯାହା କରାଇଥିଲେ ମତେ ଭାରି ଭଲ ଲାଗିଲା । ତା ୧୦ । ୪ । ୭୯ ଶଖ ସକାଳୁ ୭ ଘଣ୍ଟାରେ ବସ୍‌ରେ ଆସିଲି । ଶ୍ରୀକ୍ଷେତ୍ରରେ ୧୧ ଘଣ୍ଟାରେ ନିରାପଦରେ ପହଞ୍ଚିଲି । ସଂଧ୍ୟା ୫ ଟାରେ ଦେଉଳକୁ ଯାଇ ଶ୍ରୀମୁଖ ଦର୍ଶନ କଲି । ଆପଣମାନଙ୍କ କଥା ଜଣାଇଲି । ଗୃହର ସେବା କଲି । ଗରୁଡ଼ ପଛରେ ଜଣାଣ ବୋଲିଲି ।

"ମହିମା ଗରୁଡ଼ ପଛରେ ବସି
କରପତ୍ର ଯୋଡ଼ି ପାଦ ତଳେ ପଡ଼ି
ଗୁହାରି କରୁଛି ମୁହିଁ । ୦ ।
ମହି ଦୟାନିଧି, କରୁଣା ବାରିଧି
ମିଛେ ରହିଲି ଅନାଇ
କରୁଣାର ବନ୍ଧୁ, ହେ କରୁଣା ସିନ୍ଧୁ
ଠାଳେ ତ ମିଳିଲ ନାହିଁ । ୧ ।
କେନ୍ଦୁ ଏ ମାତର କରୁଣାର କଳ
ଦେବ ଯେବେ ଭାବଗ୍ରାହୀ
ଅତୁଳ ଅଥଳ ଦୟା ପାରାବାର ଶୁଖି
ଶେଷ ହେବ ନାହିଁ । ୨ ।
ମିଳୁ ବା ନ ମିଳୁ ପରମ ଦୟାଳୁ
ରହିଥିବି ଏଥି ଗୃହି ।
ନୀଳାଚଳ ଛାଡ଼ି ନୀଳାଦ୍ରି ବିହାରୀ
ଯିବ ଅବା ଆଉ କାହିଁ । ୩ ।
ମହିମା ଗରୁଡ଼ ପଛରେ ରହି ।"

ଚକାଡ଼ୋଳାଙ୍କ ଦୟାରୁ ସମସ୍ତେ କୁଶଳରେ ଥିବେ । କେବେ ଶ୍ରୀକ୍ଷେତ୍ରକୁ ଆସିଲେ ମୋତେ ଟିକେ ଦେଖିଯିବେ ।

ଶୁଭାକାଂକ୍ଷୀ
ଶ୍ରୀ ନିମାଇଁ ଚରଣ ହରିଚନ୍ଦନ

ତା ୧୨ । ୪ । ୭୯ ରେ ପୁରୀରୁ ଆସିଥିବା ଏହି ଚିଠିଟି ବାଣୀକଣ୍ଠଙ୍କର ସ୍ୱହସ୍ତ ଲିଖିତ । ତା' ପରବର୍ତ୍ତୀ ସମୟରେ ଯେତେ ଖଣ୍ଡ ଚିଠି ସେ ଏ ଲେଖକକୁ ଲେଖିଛନ୍ତି ପ୍ରତ୍ୟେକ ଚିଠିରେ ଗୋଟିଏ ଗୋଟିଏ ଜଣାଣ ଲେଖିଛନ୍ତି । ଏପରି ଜଣାଣ କୌଣସି ରେକର୍ଡରେ ଥିବା ପରି ମନେ ହୁଏ ନାହିଁ । ହୁଏତ ଏ ସବୁ ତାଙ୍କର ଭକ୍ତି ହୃଦ୍‌ଗତ ଚିତ୍ତର ଅବାରିତ ଭାବୋଚ୍ଛ୍ୱାସର ପ୍ରତୀକ ।

୧୯୮୦ ମସିହା । ତତ୍କାଳୀନ ଉତ୍କଳସାହିତ୍ୟ ସମାଜର ସାଧାରଣ ସଂପାଦକ କବି ମୁରାରି ଜେନାଙ୍କ ନେତୃତ୍ୱରେ ଅଗଷ୍ଟ ମାସରେ କଟକ ଶ୍ରୀରାମଚନ୍ଦ୍ର ଭବନରେ, ଉତ୍କଳ ସାହିତ୍ୟ ସମାଜ ଆନୁକୂଲ୍ୟରେ ତାଙ୍କର ତୈଳଚିତ୍ର ଉନ୍ମୋଚନ ହେଲା । ନିମନ୍ତ୍ରଣ ରକ୍ଷା କରି ସେ ଶ୍ରୀକ୍ଷେତ୍ରରୁ ଏଠାକୁ ଆସିଥିଲେ ଏବଂ ଅନୁରୋଧ କ୍ରମେ ତାଙ୍କର ଭାବ-ଗଦ୍‌ଗଦ୍ କଣ୍ଠରେ ଏକ ଜଣାଣ ବୋଲିଥିଲେ । ମଞ୍ଚ ଉପରେ ଠିଆ ହୋଇ କରପତ୍ର ଯୋଡ଼ି ସେ ଜଣାଣ ଗାଉଥା'ନ୍ତି । ଆଖିରୁ ତାଙ୍କର ଭକ୍ତି ହୃଦଗତ ଚିତ୍ତର ଅବାରିତ ଲୋତକ-ଧାର ବହି ଯାଉଥାଏ । ଶ୍ରୋତା-ବକ୍ତା ସମସ୍ତେ ଭକ୍ତି ରସରେ ରସାପ୍ଲୁତ ହୋଇ ଯାଇଥାନ୍ତି ।

ସଭା ପରେ ସମସ୍ତେ ବାଣୀକଣ୍ଠଙ୍କ ସଙ୍ଗରେ ମହାପ୍ରସାଦ ସେବା ପାଇଁ ପଙ୍କ୍ତି ଭୋଜନରେ ବସିଲେ । ଶେଷ ହେଲା ପ୍ରାୟ ରାତି ୧୧ ଟା ବେଳକୁ । "ଆଜି କ'ଣ କଟକରେ ରହିବେ ? ମୁଁ ପଚାରି ଦେଲି । ଏଇ ପ୍ରଶ୍ନର ଉତ୍ତରରେ ସେ

କହିଲେ—ଘରରେ ଯଦି କଷ୍ଟରେ ଅଟକି ରହେ ତେବେ ସକାଳୁ ମଙ୍ଗଳ ଆଳତି ବେଳେ ଶ୍ରୀମୁଖ ଦର୍ଶନର ସୌଭାଗ୍ୟ ହରାଇବି ସିନା !

ଯେତେ ଥର ପୁରୀ ଯାଇଛୁ, ମହାପ୍ରଭୁଙ୍କ ସହିତ ତାଙ୍କ ଭକ୍ତ ଶିରୋମଣୀଙ୍କୁ ଦର୍ଶନ କରିବାକୁ ଚେଷ୍ଟା କରିଛୁ । ପାୟ ସାକ୍ଷାତ ହୋଇଛୁ ଗରୁଡ଼ଖମ୍ବ ପଛରେ । ଚନ୍ଦନ ଅର୍ଗଳ କିମ୍ବା ଚୈତନ୍ୟ ମହାପ୍ରଭୁଙ୍କ ପାଦପଦ୍ମ ପାଖ ଗୃହମାରେ ।

ବାସଭବନକୁ ଗଲେ ପାରମ୍ପରିକ ଶୈଳୀରେ ଚର୍ଚ୍ଚା କରିବେ । ପ୍ରଥମେ ପାଣିଟିକେ । ପରେ ସ୍ୱହସ୍ତ ଭଙ୍ଗା ପାନ, ତା' ପରେ କୁଶଳ ସମାଚାର । ବେଳେ ବେଳେ ଭଜନ, ଜଣାଣ ଇତ୍ୟାଦି ଲେଖା କିମ୍ବା ତାଙ୍କ ଦ୍ୱାରା ପ୍ରକାଶିତ ପୁସ୍ତକ ଉପହାର ।

ଶ୍ରୀକ୍ଷେତ୍ରରେ ଦେହ ତ୍ୟାଗ କଲେ ପୁନର୍ଜନ୍ମ ହୁଏ ନାହିଁ ବୋଲି ହିନ୍ଦୁମାନେ ବିଶ୍ୱାସ କରନ୍ତି । ଏହି ବିଶ୍ୱାସର ବଶବର୍ତ୍ତୀ ହେବା ପାଇଁ ଦାସ୍ୱୀ ବାଣୀକଣ୍ଠଙ୍କର ଗୁରୁଦେବ ସଂକୀର୍ତ୍ତନପ୍ରେମୀ ରାମ ଦାସ ବାବାଜୀ । ବାବାଜୀଙ୍କ ସଂକୀର୍ତ୍ତନ ଦଳରେ ବାଲ୍ୟ ଓ କୈଶୋର ଅତିବାହିତ କରି ତାଙ୍କ ମନରେ ଯେଉଁ ସଂସ୍କାରର ଛାପ ପଡ଼ିଥିଲା, ତାହା କାର୍ଯ୍ୟକାରୀ ହେଲା ଶେଷ ଜୀବନରେ । ସେ ଏତେ ପରି- ମାଣରେ ଜଗନ୍ନାଥ ପ୍ରାଣ ହୋଇ ପଡ଼ିଥିଲେ ଯାହାକି ନିମ୍ନ ଘଟଣାରୁ ଜଣାପଡ଼ିବ । ଥରେ ତାଙ୍କର ରେକର୍ଡ଼ିଂ ଥାଏ ଏଚ୍.ଏମ୍.ଭି. କମ୍ପାନୀ କଲିକତାରେ । କେତେଗୁଡ଼ିଏ ଜଣାଣ ମଧ୍ୟରୁ ଗୋଟିଏ ଜଣାଣ ଥିଲା ଗୀତିକାର ଦେବ ନାରାୟଣ ସିଂହଙ୍କ ଦ୍ୱାରା ରଚିତ । ହଠାତ୍ ଷ୍ଟୁଡ଼ିଓରେ ଦେଖିଲେ ଗୀତଟି ସେ ଆଣିବାକୁ ଭୁଲି ଯାଇଛନ୍ତି । ଏକ ମିନିଟ୍ ନୀରବରେ ବସିଗଲେ ଏବଂ ଧ୍ୟାନ ଲଗାଇଲେ ଚକା- ଡୋଳାଙ୍କୁ । ତା' ପରେ ମନକୁ ଯାହା ଆସିଲା ତାହା ଗାଇ ଗଲେ । ପରବର୍ତ୍ତୀ ସମୟରେ ଦେବବାବୁ କହିଲେ—ତାଙ୍କ ରଚିତ ଗୀତଠାରୁ ଏହା ଯେ ଶତଗୁଣ ଶ୍ରେୟସ୍କର ଏବଂ ହୃଦୟସ୍ପର୍ଶୀ କହିବା ବାହୁଲ୍ୟ ମାତ୍ର ।

ତାଙ୍କ ସହିତ ମୋର ସମ୍ପର୍କ ଥିଲା ଅତି ଘନିଷ୍ଠ । ପିତା ପୁତ୍ର ଠାରୁ ଅଧିକ । ତେଣୁ ତାଙ୍କର ବିୟୋଗ ସମ୍ବାଦରେ ମୁଁ ସ୍ତମ୍ଭୀଭୂତ ହୋଇଗଲି । କାହିଁରେ ମନ ଲାଗିଲା ନାହିଁ । ଧାଇଁ ଯିବାକୁ ଇଚ୍ଛା ହେଲା ଶ୍ରୀକ୍ଷେତ୍ରକୁ ଶେଷ ଦର୍ଶନ କରିବାକୁ । ଆଜି ସେ ବୈକୁଣ୍ଠପୁରରେ । ହୁଏତ ପ୍ରଭୁଙ୍କ ନିକଟରେ ଥାଇ ତାଙ୍କର ଜଣାଣ ଗାଉଥିବେ । ଆମେ ତାଙ୍କ ସୁମଧୁର କଣ୍ଠର ମଧୁର ଝଙ୍କାରରେ କାଲି କାଲି ଧରି ମୋହିତ ହେଉଥିବୁ । ତାଙ୍କ ଭାବୋଚ୍ଛ୍ୱାସର ପ୍ରାଣପ୍ରାଚୁର୍ଯ୍ୟ ଆମ ମନ ପ୍ରାଣକୁ ପ୍ରଣୋଦିତ କରୁଥିବ । ମାତ୍ର ତାଙ୍କ ସୌମ୍ୟ ମୂର୍ତ୍ତିର ଦର୍ଶନ ତ ଆଉ ମିଳିବ ନାହିଁ । ହସ ହସ ମୁହଁରୁ କୁଶଳ ଜିଜ୍ଞାସା ଶୁଣିବାକୁ ସାତ ସପନ ହୋଇଗଲା । ଶ୍ରୀକ୍ଷେତ୍ର ନିବାସୀ ଭକ୍ତର ସ୍ୱହସ୍ତ ଲିଖିତ ପତ୍ର ପାଇବା ସ୍ୱପ୍ନରେ ପରିଣତ ହେଲା ।

●

ସଂଗଠନ ସଂପାଦକ,
ଉତ୍କଳ ସାହିତ୍ୟ ସମାଜ
କଟକ ୬-୯

# ବାଣୀକଣ୍ଠ ନିମାଇଁ ଚରଣ

## ଶ୍ରୀ ଖଗେନ୍ଦ୍ରନାଥ ମଲ୍ଲିକ

ଶ୍ରୀ ବା ପଦ-ପଦବୀ ମଣିଷକୁ ପ୍ରତିଷ୍ଠା ଦିଏ ନାହିଁ କିମ୍ବା ଜନ ହୃଦୟରେ ଅମର କରି ରଖେ ନାହିଁ, ମାତ୍ର ପଦ-ପଦବୀ ଅନ୍ତରାଳରେ ଥିବା ନିଜସ୍ୱ ସାଧନା, ଈଶ୍ୱରେକ ପ୍ରାଣତା, ନିର୍ମଳ ଚିନ୍ତା ଚେତନା, ତ୍ୟାଗ ମନୋବୃତ୍ତି ମଣିଷର ମଣିଷ ପଣିଆର ଯେପରି ବିକାଶ କରିଥାଏ, ସେହିପରି ସେ ମଧ୍ୟ ଆନନ୍ଦରେ ଅଧୀର ହୋଇ ଗାଇଥାଏ —

"କେତେ ଅଜଣାରେ ଜଣାଇଲେ ତୁମି
କେତେ ଘରେ ଦେଲ ଠାଇଁ
ଦୂରକେ କରିଲ ନିକଟ ବନ୍ଧୁ
ପରକେ କରିଲ ଭାଇ ।"

ବାସ୍ତବିକ, ପରକୁ ଆପଣାର କରିବାର ଭାବ ହିଁ ବ୍ୟକ୍ତିର ବୈକ୍ତିକ ସତ୍ତାକୁ ସାମଗ୍ରିକତାରେ ପରିଣତ କରି ତାକୁ ଅମର କରିଥାଏ । ଏହି ଆପଣାର ଭାବ କେବଳ ନିର୍ମଳ ପରମ୍ପରା ଓ ଉତ୍ତମ ପରିବେଶ ସଂସର୍ଗରୁ ମଣିଷ ମନରେ ନୂତନ ରୂପ ପକାଇ ଥାଏ ଏବଂ ତାକୁ ମଧ୍ୟ ଜୀବନ ପଥରେ ନିୟନ୍ତ୍ରିତ କରିଥାଏ । ସେହିପରି ଏକ ଉନ୍ନତ ପରମ୍ପରାର ଦାୟାଦ ଥିଲେ ବାଣୀକଣ୍ଠ ନିମାଇଁ ଚରଣ ହରିଚନ୍ଦନ । ବାଣୀକଣ୍ଠ ଶ୍ରୀ ହରିଚନ୍ଦନ ୧୯୦୧ ମସିହା ଜୁଲାଇ ୯ ତାରିଖରେ କେନ୍ଦ୍ରାପଡ଼ାର ପ୍ରଖ୍ୟାତ ଜମିଦାର ରାଧାଶ୍ୟାମ ଜେନା ବନାମ ରାଧାଶ୍ୟାମ ନରେନ୍ଦ୍ରଙ୍କ ବଂଶରେ ଜନ୍ମଗ୍ରହଣ କରିଥିଲେ । ଏଠାରେ ସୂଚିତ ଦିଆଯାଇ ପାରେ ଯେ, ବ୍ୟାସକବି ଫକୀରମୋହନ ସେନାପତି ତାଙ୍କର ଆତ୍ମଜୀବନୀରେ କେନ୍ଦ୍ରାପଡ଼ାର ଅନୁଭୂତ ବର୍ଣ୍ଣନା କରିବାକୁ ଯାଇ ଯେଉଁ ଜମିଦାର ବଂଶର ଉତ୍ଥାନ ପତନର କାହାଣୀ ଲିପିବଦ୍ଧ କରିଛନ୍ତି ଏବଂ ଉତ୍କଳୀୟ ପରମ୍ପରାନୁଗତ ଜମିଦାର ଗୋଷ୍ଠୀଙ୍କର ଅବକ୍ଷୟର ସୂଚନା ବିଭିନ୍ନ ଉପନ୍ୟାସରେ ରୂପକ ଛଳରେ ପ୍ରଦାନ କରିଛନ୍ତି, ତାହା ହିଁ ହେଉଛି ଏହି ରାଧାଶ୍ୟାମ ନରେନ୍ଦ୍ରଙ୍କ ବଂଶର ଚିତ୍ରଲିପି । ଅର୍ଥାତ୍ ରାଧାଶ୍ୟାମ ନରେନ୍ଦ୍ରଙ୍କର (୧୮୦୭- ୮୭) ଜୀବଦ୍ଦଶାରେ ଏପରି ପ୍ରତିପତ୍ତି ତଥା ପ୍ରଭାବ, ପ୍ରତିଷ୍ଠା ଓ ମାନବିକତା ଥିଲା ଯେ ଓଡ଼ିଶାରେ ଗୋଟିଏ ପ୍ରବାଦ ପ୍ରଚଳିତ ଥିଲା—"ସ୍ୱର୍ଗରେ ଇନ୍ଦ୍ର, ମର୍ତ୍ତ୍ୟରେ ନରେନ୍ଦ୍ର କେନ୍ଦ୍ରାପଡ଼ାରେ ଜନ୍ମ ହୋଇଥିଲେ । ଏହି ନରେନ୍ଦ୍ର ବଂଶର କୃଷ୍ଣରୂପ ଜେନା ପ୍ରଥମେ ନିଜର ଅଧ୍ୟବସାୟ ହେତୁ ଯାଜପୁର ସବ୍‌ଡିଭିଜନସ୍ଥ ପାଣିକୋଇଲି ଗ୍ରାମରୁ ଆସି ଦ୍ୱିତୀୟ ରାମଚନ୍ଦ୍ର ଦେବଙ୍କ ଅନୁଗ୍ରହରେ ଜମିଦାରୀ ପାଇଥିଲେ । କୃଷ୍ଣରୂପ ଜେନାଙ୍କର ନାତି ସଦାଶିବ ପିତା ଗୋବିନ୍ଦଙ୍କ ସତ୍ୟରକ୍ଷା ଲାଗି ବଂଶର ଇଷ୍ଟଦେବ ଗୋବିନ୍ଦ ଜୀଉଙ୍କୁ ପ୍ରତିଷ୍ଠା କରିଥିଲେ । ପୁଣି ସଦାଶିବ ଜେନାଙ୍କ ପୁତ୍ର ରାଧାଶ୍ୟାମ ଜେନା ନିଜର ସାଧୁତା ଓ ଦୟାଳୁତା ହେତୁ ଗଜପତି ରାଜା ମୁକୁନ୍ଦଦେବଙ୍କ ଠାରୁ 'ନରେନ୍ଦ୍ର' ଉପାଧିରେ ଭୂଷିତ ହୋଇଥିଲେ । ବାସ୍ତବିକ୍ ତତ୍କାଳୀନ ସମୟରେ ଯାନବାହାନ ନ ଥିବା ହେତୁ ପୁରୀର ରଥଯାତ୍ରାକୁ ଆସୁଥିବା ଅଗଣିତ ଯାତ୍ରୀ ପଥ ମଧ୍ୟସ୍ଥ ଚଟିଘରେ ବିଶ୍ରାମ ନେଉଥିଲେ । ଏହି ତୀର୍ଥଯାତ୍ରୀ ତଥା ସାଧୁ-ସନ୍ନ୍ୟାସୀଙ୍କ ଚାତୁର୍ମାସ୍ୟ ବ୍ରତ ପାଳନୋପଲକ୍ଷେ ତାଙ୍କର ଗୋବିନ୍ଦଜୀଉ ମଠର ଯେପରି ଚଟିଘରର କାର୍ଯ୍ୟ ତୁଲାଉଥିଲା, ସେହିପରି ଅନାଥ ଦୀନ ଦୁଃଖୀଙ୍କୁ ସାହାଯ୍ୟ କରିବା ଠାରୁ ଆରମ୍ଭ କରି ନଅଙ୍କ ଦୁର୍ଭିକ୍ଷରେ ରାଧାଶ୍ୟାମ ନରେନ୍ଦ୍ରଙ୍କ ବଦାନ୍ୟତା ଅବିସ୍ମରଣୀୟ । କଥିତ ଅଛି, ରାଧାଶ୍ୟାମ ନରେନ୍ଦ୍ର ତୀର୍ଥଯାତ୍ରାରେ ଯାଇ ବୃନ୍ଦାବନରେ ଅବସ୍ଥାନ କରୁଥିବା ବେଳେ ନଅଙ୍କ ଦୁର୍ଭିକ୍ଷ କଥା ସମ୍ବାଦପତ୍ରରୁ ପଢ଼ି ନିମ୍ନଲିଖିତ ମର୍ମରେ ଦୁଇଟି ଚିଠି ତାଙ୍କର ପୁଅ ଓ ପୁତୁରା ପାଖକୁ ଲେଖିଥିଲେ —

"ବଡ଼ ଦୁର୍ଯୋଗ ସମୟ ବର୍ତ୍ତମାନ ଦେଶ ପାଇଁ ଆସିଛି । ତୁମେ ଏପରି ସୁବିଧା ଆଉ ପାଇବ ନାହିଁ । ତେଣୁ ଏ ସମୟରେ ଯାହା ଶସ୍ତା ଦେଖିବ ତାହା ଖରିଦ କରିବ ।"

ଏ ଚିଠିରୁ ପୁତୁରା ଭାବିଲେ ଯେ, ବର୍ତ୍ତମାନ ସୁନା ଖୁବ୍ ଶସ୍ତା ହୋଇଛି । ତେଣୁ ସେ ପ୍ରାୟ ଲକ୍ଷେ ଟଙ୍କାର ସୁନା

ଝଗଡ଼ା କଲେ । ମାତ୍ର ତାଙ୍କର ପୁତ୍ର ଜଗନ୍ନାଥ ତାହାକୁ ଭିନ୍ନ ଅର୍ଥ କରି ପୁଣ୍ୟ ଅର୍ଜନ ସକାଶେ ଅକାତରେ ଧନ ନିର୍ବିଶେଷରେ ଦାନ ଧର୍ମରେ ମୁକ୍ତହସ୍ତ ହେଲେ । ନରେନ୍ଦ୍ର ତୀର୍ଥ କ୍ଷେତ୍ରରୁ ଫେରି ପୁତ୍ରର ଏପରି କାର୍ଯ୍ୟରେ ଅତ୍ୟଧିକ ହୋଇପଡ଼ି ପୁତ୍ରକୁ କୋଳାଗ୍ରତ କରି କହିଲେ 'ତୁ ମୋର ପ୍ରକୃତ ଆତ୍ମା । ମୋର ବାସ୍ତବ ତୋ ଠାରେ ସଂପୂର୍ଣ୍ଣ ପ୍ରତିଫଳିତ ହୋଇଛି । ତୋର ଯୋଗୁ ମୁଁ ଧନ୍ୟ ହେଲି ।" ତା'ପରେ ସେ ପୁତ୍ରଙ୍କୁ କହିଲେ—ତୁମେ ଯାହା ଶସ୍ତାରେ କିଣିଛ, ତାହା ତୁମକୁ କାଳ କାଳ ସ୍ୱସ୍ତି ଦେବ ।"

ତେବେ ଯାହାହେଉ ସେହି ରାଧାଶ୍ୟାମ ନରେନ୍ଦ୍ରଙ୍କର ଚତୁର୍ଥ ନାତି ବୃନ୍ଦାବନ ଚନ୍ଦ୍ର ହରିଚନ୍ଦନଙ୍କ ଔରସରୁ ଓ ଇନ୍ଦୁମଣି ଦେବୀଙ୍କ ଗର୍ଭରୁ ବାଣୀକଣ୍ଠ ଭୂମିଷ୍ଠ ହୋଇଥିଲେ । କେବଳ ଏତିକ ନୁହେଁ ବିଦଗ୍ଧ କବି ଅଭିମନ୍ୟୁ ସାମନ୍ତ ସିଂହାର ଯେପରି ରାଧାଶ୍ୟାମ ନରେନ୍ଦ୍ରଙ୍କ ଭଗିନୀ ବିମଳା ଦେବୀଙ୍କୁ ବିବାହ କରିଥିଲେ, ସେହିପରି ଊନବିଂଶ ଶତାବ୍ଦୀର ନୟାଗଡ଼ ରାଜବଂଶର ଦାୟାଦ ଓ ପ୍ରତିଭାବାନ ସାହାକାର ଗୋବିନ୍ଦ ଶୂରଦେଓ ବାଣୀକଣ୍ଠଙ୍କର ବଡ ବାପା ଶ୍ୟାମସୁନ୍ଦର ନରେନ୍ଦ୍ରଙ୍କ କନ୍ୟାକୁ ବିବାହ କରି ନରେନ୍ଦ୍ର ବଂଶ ସହ ସଂପୃକ୍ତ ଥିଲେ । ପୁନଶ୍ଚ କେବଳ ରକ୍ତଗତ ସମ୍ପର୍କ କହିଲେ ହେବ ନାହିଁ ଧାର୍ମିକ ଚେତନାରେ ଆତ୍ମିକ ସମ୍ପର୍କ ମଧ୍ୟ ଏମାନଙ୍କ ମଧ୍ୟରେ ନିବିଡ଼ ଭାବେ ଥିଲା । ଅର୍ଥାତ୍ ଏକ ଦିଗରେ ନରେନ୍ଦ୍ର ବଂଶର ଇଷ୍ଟଦେବ ଥିଲେ ଶ୍ରୀ ଶ୍ରୀ ରାଧା-ଗୋବିନ୍ଦ ଜୀଉ, ଅପର ଦିଗରେ ଅଭିମନ୍ୟୁ ସାମନ୍ତ ସିଂହାର ଥିଲେ ରାଧାକୃଷ୍ଣଙ୍କର ଉପାସକ ଓ ରାଜସ୍ରଷ୍ଟା ଶୂରଦେଓ ଥିଲେ ରାଧାକୃଷ୍ଣ ପ୍ରୀତିର ପ୍ରଚାରକ । ସୁତରାଂ ଏହି ବନ୍ଧୁ-ବାନ୍ଧବ ପର୍ଯ୍ୟାୟରେ ଏମାନେ ଯେ ଶୁଦ୍ଧା ଭକ୍ତିର ଉପାସକ ଭାବରେ ବେଷ୍ଟିତ ଥିଲେ ଏଥିରେ ସନ୍ଦେହର ଅବକାଶ ନାହିଁ, ଯେଉଁମାନଙ୍କର କେବଳ ଅନ୍ତରରେ ପ୍ରବଳ ଆକାଂକ୍ଷା ଥିଲା—

"ଶ୍ୟାମ ଗତି ପଥେ ଗୋ<br>ମୋ ଶବ ପୋତିବ ଆପଣା ହାତେ ।"

ବାସ୍ତବିକ୍ ଏହିପରି ଏକ ପ୍ରଖ୍ୟାତ ପରିବାରରେ ବାଣୀକଣ୍ଠ ଦାୟାଦ ହୋଇଥିଲେ ହେଁ, ଭାଗ୍ୟର କ୍ରୂର ପରିହାସ ହେତୁ ସେ ପ୍ରଥମତଃ ଦରିଦ୍ର ଭାବରେ କାଳାତିପାତ କରି-ଥିଲେ । ଏହି ଦରିଦ୍ର ଅବସ୍ଥା ସତେ ଯେପରି ବାଧ୍ୟବାଧକ ଷ୍ଟ—କେବଳ ସୁନାକୁ ପୋଡ଼ି ତା'ର ଔଜଲ୍ୟ ପ୍ରକାଶ କରିବା ସଦୃଶ୍ୟ ଯନ୍ତ୍ରଣାର ପରୀକ୍ଷାଗାରରେ ପ୍ରତିଭାର ବିକାଶ କରାଇବା । ତେଣୁ ଓଡ଼ିଶାରେ ପ୍ରତିଭାବାନ୍ ଫକୀରମୋହନ, ଗଙ୍ଗାଧର, ଭୀମ ଭୋଇ, ପଠାଣି ସାମନ୍ତ ଏବଂ ଗ୍ରୀକ୍‌ରେ ହୋମର, ଲଣ୍ଡନରେ ସେକ୍‌ସପିୟର, ଡ଼ିକେନ୍‌ସ ପ୍ରମୁଖଙ୍କ ପରି ବାଣୀକଣ୍ଠ ଉଚ୍ଚଶିକ୍ଷା ବିବର୍ଜିତ ତଥା ଅସ୍ୱଚ୍ଛଳ ବାତାବରଣ ମଧ୍ୟରେ ନିଜକୁ ସୁବିଭୂତ କରି ପାରିଥିଲେ ।

ବାଣୀକଣ୍ଠଙ୍କର ବାଲ୍ୟଜୀବନ ଅନୁଶୀଳନ କଲେ ଜଣାଯାଏ ଯେ, ସେ ଚଉଦ ବର୍ଷ ବୟସରେ ମାଇନର ତଳ କ୍ଲାସରେ ପଢ଼ୁଥିବା ବେଳେ ବଂଶର ଅଧୋଗତି ହେତୁ ତାଙ୍କର ପିତାଙ୍କର ମସ୍ତିଷ୍କ ବିକୃତ ଘଟିଲା । ଫଳତଃ ପରିବାରର ପ୍ରତିପୋଷଣ ନିମନ୍ତେ ତାଙ୍କର ମଧ୍ୟ ଗଙ୍ଗାଧର ମେହେରଙ୍କ ପରି ସବୁଦିନ ଲାଗି ପାଠ ପଢ଼ାରେ ଡ଼ୋରିବନ୍ଧା ହେଲା । ମାତ୍ର ପ୍ରତିଭାର ଅବଲୁପ୍ତି ଘଟେ ନାହିଁ, ପ୍ରକାଶିତ ହେବା ହିଁ ତା'ର ଧର୍ମ—ଠିକ୍ ଶିଳାବନ୍ଧ ଅତିକ୍ରମ କରି ସ୍ରୋତସ୍ୱିନୀ କୌଣସି ଦିଗରେ ପ୍ରବାହିତ ହୋଇଯିବା ତୁଲ୍ୟ ପ୍ରତିଭା ମଧ୍ୟ ଯେ କୌଣସି ଦିଗରେ ମାନବକୁ ଶୀର୍ଷାସନ ଦିଏ ।

ନରେନ୍ଦ୍ର ବଂଶର ଇଷ୍ଟଦେବ ଶ୍ରୀ ଶ୍ରୀ ରାଧାଗୋବିନ୍ଦ ଜୀଉଙ୍କ ମନ୍ଦିରରେ ପ୍ରତ୍ୟହ ସନ୍ଧ୍ୟା ଆରତିବେଳେ କୀର୍ତ୍ତନ ଶ୍ରବଣ କରି ନିମାଇଁ ଚରଣ ଆକୃଷ୍ଟ ହେଲେ । ଫଳତଃ ତାଙ୍କର ଜନକଷ୍ଟ ପିତୃବ୍ୟ ଗିରିଧାରୀ ଜେନାଙ୍କ ଠାରୁ ମୃଦଙ୍ଗ ଓ ଗଙ୍ଗା ଦାସ ନାମକ ଜଣେ ସାଧୁ ଠାରୁ ସେ ଢ଼ୋଲକ ବଜାଇବା ଶିକ୍ଷା କଲେ । ଦିନେ ଦେଖିଲେ ତାଙ୍କର ଅନ୍ୟତମ ଜନକ ପିତୃବ୍ୟ ସଙ୍ଗୀତଜ୍ଞ ଗୋକୁଳ ଚନ୍ଦ୍ର ଶ୍ରୀଚନ୍ଦନ କୋଠା ଉପରେ କେତେ ହିନ ସୁନ୍ଦର ଗୋସ୍ୱାମୀଙ୍କୁ ସଙ୍ଗୀତ ଶିକ୍ଷା ଦେଉଛନ୍ତି । ତେଣୁ ହାରମୋନିୟମ ଶିକ୍ଷା କରିବାର ଅଭିଳାଷ ବାଣୀକଣ୍ଠ ପିତୃବ୍ୟଙ୍କ ନିକଟରେ ପ୍ରକାଶ କଲେ । ବାଳକଟିର ଆଗ୍ରହ ଦେଖି ପରୀକ୍ଷା ଉଦ୍ଦେଶ୍ୟରେ ତାଙ୍କୁ ସଙ୍ଗୀତ ବୋଲିବାକୁ ନିର୍ଦ୍ଦେଶ ଦିଆଗଲା ଏବଂ ବାଣୀକଣ୍ଠଙ୍କର ସଙ୍ଗୀତ ଶ୍ରବଣ କରି ଗୋକୁଳ ଚନ୍ଦ୍ର ଅତ୍ୟଧିକ ହୋଇ ତାଙ୍କୁ ହାରମୋନିୟମ ଟେକି ଦେଇ କହିଲେ—"ତୁ ମୋର ନାମ

ରଖିବୁ । × × × ଏ ବଂଶର ସେ ପୂର୍ବ ଗୌରବ ଆଉ ନାହିଁ । ହେଲେ ସେ ଗୌରବୋଜ୍ଜ୍ୱଳ ସ୍ମୃତିକୁ ତୁ ସଙ୍ଗୀତ ଗାଇ ପୁଣି ଥରେ ଜୀବନ୍ତ କରିବୁ ଏହାହିଁ ମୋର ତୋତେ ଆଶୀର୍ବାଦ ।'' କେବଳ ଏତିକି ନୁହେଁ କୌଣସି ଏକ ମକରମେଳା ସଂକ୍ରାନ୍ତିରେ ନିମାଇଁ ଚରଣ ପିତା ମାତାଙ୍କ ସହ କଟକରେ ଅବସ୍ଥାନ କଲାବେଳେ ଜଗମୋହନ ନାୟକଙ୍କ ଠାରୁ ତବଲା ଶିକ୍ଷା କଲେ । ଏପରିକି ମାତ୍ର ୧୨ ବର୍ଷ ବୟସ ବେଳକୁ ସେ ତାଙ୍କର ପିତୃବ୍ୟ ଗୋକୁଳ ଚନ୍ଦ୍ରଙ୍କ ଗୀତର ସହିତ ତବଲା ସଙ୍ଗତ କରିବାର ଯୋଗ୍ୟତା ହାସଲ କରି ପାରିଥିଲେ । ପୁନଶ୍ଚ ଗୋକୁଳ ଚନ୍ଦ୍ର ନିଜ ଗାଆଁରେ ହିନ୍ଦୁସ୍ତାନୀ ଓସ୍ତାଦ ମାଧୋ ସିଂଙ୍କ ଠାରୁ ସଙ୍ଗୀତ ଶିକ୍ଷା କରିବାରୁ ନିମାଇଁ ଚରଣ ମଧ୍ୟ ସେ ସୁଯୋଗର ସଦ୍‌ବ୍ୟବହାର ଯେପରି କଲେ, ସେହିପରି ସେ କୋଡ଼ିଏ ବର୍ଷ ବୟସରେ ରାମ ଦାସ ବାବାଜୀଙ୍କ ସହିତ କଲିକତା ଯାତ୍ରା କରି ସେଠାରେ ବିଭିନ୍ନ ସଙ୍ଗୀତ ଶିକ୍ଷାରେ ବ୍ରତୀ ହେଲେ । ଅବଶ୍ୟ ଏଥି ପୂର୍ବରୁ ସେ ଶୂର ଦେଓଙ୍କ ରାସ ପାର୍ଟିରେ ଯୋଗଦେଇ ଅଭିନୟ କରିବାର ସୌଭାଗ୍ୟ ପାଇଥିଲେ ।

୧୯୨୪ ମସିହାରେ ନିମାଇଁ ଚରଣ କଲିକତାରୁ ଫେରିବା ପରେ ଆଠଗଡ଼ ରାଜ ପରିବାରର ଶ୍ରୀନାଥ ସାମନ୍ତଙ୍କ ଏକମାତ୍ର କନ୍ୟା ଲକ୍ଷ୍ମୀପ୍ରିୟାଙ୍କ ସହ ବିବାହ ବନ୍ଧନରେ ଆବଦ୍ଧ ହେଲେ । ମାତ୍ର ପରିବାର ପ୍ରତିପୋଷଣ ଲାଗି ସେ ଆର୍ଥିକ ସଂକଟର ସମ୍ମୁଖୀନ ହେବାରୁ କଟକ ଆସି ଏକ ବସ୍ ସର୍ଭିସରେ ରାଜକିଶୋର ଦାସଙ୍କ ପୁତ୍ରମାନଙ୍କ ସହ ନିଜେ ଅଂଶୀଦାର ରୂପେ ଯୋଗ ଦେଲେ । ବସ୍ ଚଳାଇବା ବି ଶିଖିଲେ । ମାତ୍ର ବ୍ୟବସାୟରେ ସଫଳ ହେଲେନାହିଁ । ତେଣୁ ଅନନ୍ୟୋପାୟ ହୋଇ କଟକରେ ସଙ୍ଗୀତ ଶିକ୍ଷକ ରୂପେ ନିଜ ପରିବାରର ଭରଣ ପୋଷଣ ପାଇଁ ମାସିକ ଟ ୧୫୦-୦୦ ବେତନରେ ଜୀବିକା ନିର୍ବାହ କଲେ । ତତ୍କାଳୀନ ରକ୍ଷଣଶୀଳ ସମାଜରେ ମଧ୍ୟ ଡ଼କ୍ଟର ପ୍ରାଣକୃଷ୍ଣ ପରିଜା, ଡ଼କ୍ଟର ଆର୍ତ୍ତବଲ୍ଲଭ ମହାନ୍ତି ଓ ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋଙ୍କ କନ୍ୟାମାନେ ତାଙ୍କର ସଙ୍ଗୀତଗ୍ରହୀ ହୋଇଥିଲେ ।

୧୯୩୩ ମସିହାରେ ନିମାଇଁ ଚରଣଙ୍କର ଜୀବନର ଧାରା ବଦଳି ଗଲା । ଯଥାର୍ଥତଃ ଏହି ସମୟରୁ ତାଙ୍କର ପ୍ରତିଭାର ଯେ ବିକାଶ ସାଧିତ ହେଲା, ଏଥିରେ ମତାନୈକ୍ୟ ନାହିଁ । ଅର୍ଥାତ୍ ଏ ସମୟରେ ଯେ ପ୍ରଥମେ ତାଙ୍କର ପିତୃବ୍ୟ ଗୋକୁଳଚନ୍ଦ୍ର ଓ କଟକର ଗ୍ରାମଫୋନ ବ୍ୟବସାୟୀ ମସ୍ତାନ ବାବୁଙ୍କ ସହାୟତାରେ ଯେତେବେଳେ 'ହିଜ୍ ମାଷ୍ଟରସ ଭଏସ୍'ରେ 'ବିଚଳିତ ଆଲିଙ୍ଗନ କରି ଜାହ୍ନବୀ ଶୋଭନ' ଗୀତଟିଏ ଗାଇଦେଲେ...ତାଙ୍କର ଯଶ ଚାରିଆଡ଼େ ବିଞ୍ଛୁରିତ ହୋଇଗଲା । ଏହାପରେ ୧୯୩୪ ମସିହାରେ କଲିକତା ବେତାର କେନ୍ଦ୍ରରୁ ଓଡ଼ିଆ ସଙ୍ଗୀତ ଗାନ କରିବା ଲାଗି ସେ ଆମନ୍ତ୍ରିତ ହେଲେ । ଗୋଟାଏ ପରେ ଗୋଟାଏ ପାହାଚ ଅତିକ୍ରମ କରି ସେ କେବଳ ଉତ୍କଳୀୟ ସଙ୍ଗୀତକୁ ମର୍ଯ୍ୟାଦା ଦେବା ଲାଗି ଏ ଦେଶର ସୁପ୍ରସିଦ୍ଧ କବିଙ୍କର ଜନପ୍ରିୟ ରଚନା ଯଥାକ୍ରମେ — 'ଥିଲି ମୁଁ ଦେଖିଲି ଘନଶ୍ୟାମକୁ ଗୋ' ଅନାମନ ଚାଲିଯିବା, କଳା କୃଷ୍ଣ ହେ କଳା କମଳ ଆଖି, କି ହେବ ଶୁଆ ପୋଷିଲେ, ବଡ଼ ମାୟାବୀ ଜୀବ ନୁହେଁ କାହାରି, ଜାନକୀ କାନ୍ତକୁ ଚାହିଁ ଯେ, କହ ହନୁ ମୋର କାନ୍ତର କୁଶଳ, ଆହା ଧନୁର୍ଦ୍ଧର ବୀରବର, ଏଥିଅନ୍ତେ ସୀତାଙ୍କୁ ଆଦି ଗାଇ ଚାଲିଲେ । ଫଳତଃ ୧୯୪୩ ମସିହାରେ ଗ୍ରାମଫୋନ୍ କମ୍ପାନୀର କର୍ମକର୍ତ୍ତାଗଣ ତାଙ୍କୁ 'ବାଣୀକଣ୍ଠ ଉପାଧିରେ ଭୂଷିତ କଲେ । ପୁନଶ୍ଚ ଏ ସମୟରେ ଆଠଗଡ଼ର ରାଜାସାହେବ ତାଙ୍କ ସଙ୍ଗୀତ ଗାନରେ ମୁଗ୍ଧ ହୋଇ ତାଙ୍କୁ ରାଜଦରବାରରେ 'ରାଜ ସଙ୍ଗୀତଜ୍ଞ' ପଦରେ ସମ୍ମାନିତ କରିବା ସଙ୍ଗେ ସଙ୍ଗେ ବାଣୀକଣ୍ଠଙ୍କୁ ଆଠଗଡ଼ରେ ଅବସ୍ଥାନ କରାଇ ତାଙ୍କୁ ପୁରାତନ ରାଜପ୍ରାସାଦ ସହିତ ୧୦୦ ଏକର ଜମି ଦେଇଥିଲେ ଓ ମାସିକ ୩୦ ଟଙ୍କା ଘର ଭତ୍ତା ମଧ୍ୟ ମଞ୍ଜୁର କରିଥିଲେ । ଏହି ସମୟରୁ ବାଣୀକଣ୍ଠ ଆଠଗଡ଼ ନିବାସୀ ଭାବେ ପରିଚିତ ହେଲେ । ଇତି ପୂର୍ବରୁ ୧୯୩୪ ମସିହାରେ ସେ 'ଉତ୍କଳ ସାହିତ୍ୟ ସମାଜ'ରେ ଛାନ୍ଦ ପ୍ରତିଯୋଗିତାରେ ପ୍ରଥମ ସ୍ଥାନ ଅଧିକାର କରି ପୁରୀର ଗଜପତି ରାଜାଙ୍କ ସ୍ୱର୍ଣ୍ଣପଦକ ଏବଂ ୧୯୩୮ ମସିହାରେ 'ଉତ୍କଳ ସଙ୍ଗୀତ ସମାଜ'ରେ ଓଡ଼ିଶୀ ସଙ୍ଗୀତ ପ୍ରତିଯୋଗିତାରେ ପ୍ରଥମ ସ୍ଥାନ ଲାଭ କରି ସ୍ୱର୍ଣ୍ଣପଦକ ପ୍ରାପ୍ତ ହୋଇଥିଲେ ।

ବାଣୀକଣ୍ଠ ଶ୍ରୀ ହରିଚନ୍ଦନ ୧୯୪୭ ମସିହା ଡିସେମ୍ବର ୨୮ ତାରିଖରେ କଟକ ବେତାର କେନ୍ଦ୍ରରେ ପ୍ରଥମ ଗୀତ 'ଶ୍ରୀରାଧା ବାଉଳି' ଗାଇଲେ ଏବଂ ଜୀବନର ଅନ୍ତିମ ପର୍ଯ୍ୟାୟ ପର୍ଯ୍ୟନ୍ତ ସେ ଜଣେ ଦକ୍ଷ ବେତାର ଶିଳ୍ପୀ ଭାବେ ନିଜର ପରିଚୟ ଦେଇ ଆସିଥିଲେ । ୧୯୪୯ ମସିହାରେ 'ଶ୍ରୀ ଜଗନ୍ନାଥ' ଚଳଚ୍ଚିତ୍ରରେ ତାଙ୍କ ପରିବେଶିତ ୨ଟି ଜଗନ୍ନାଥ ଜଣାଣ—'ନୀଳଗିରି ଶିରେ ନୀଳ ଅଚଳ' ଓ 'ଚକାଡୋଳା କମ୍ପାଉକା' ସଙ୍ଗୀତ ଜଗତରେ ଚମକ ସୃଷ୍ଟି କରିଥିଲା । ୧୯୫୦ ମସିହାରେ ଅନୁଗୁଳରେ ଅନୁଷ୍ଠିତ ସର୍ବୋଦୟ ସମ୍ମିଳନୀରେ ତାଙ୍କ ଦ୍ୱାରା ପରିବେଶିତ ଜଣାଣରେ ମୁଗ୍ଧ ହୋଇ କାକା କାଲେଲକର ତାଙ୍କୁ ଏକ ପ୍ରଶଂସାପତ୍ର ଦେଇଥିଲେ । ପୁନଶ୍ଚ ସେ ତାଙ୍କର କୃତି ପାଇଁ ୧୯୫୩ ମସିହାରେ କଟକରେ ପ୍ରତିଷ୍ଠିତ ଉତ୍କଳ ନୃତ୍ୟ ସଙ୍ଗୀତ ନାଟ୍ୟ ପରିଷଦ ଜେନେରାଲ କାଉନସିଲର ଜଣେ ସଦସ୍ୟ ହୋଇଥିଲେ ଏବଂ ୧୯୫୪ରେ କେନ୍ଦ୍ର ସଙ୍ଗୀତ ନାଟକ ଏକାଡେମୀ, ଦିଲ୍ଲୀର ଉତ୍କଳ ସମାଜ, ୧୯୬୭ରେ ଜାମସେଦପୁର ଉତ୍କଳ ବାନ୍ଧବ ସମିତି, ପ୍ରବାସୀ ସାହିତ୍ୟ ଚକ୍ର, ଗୋଲମୁରି ଉତ୍କଳ ସମାଜ, ୧୯୬୬ରେ ପ୍ରଜାତନ୍ତ୍ର ପ୍ରଚାର ସମିତି ତାଙ୍କୁ ଯେପରି ସମ୍ମାନିତ କରିଥିଲା, ସେହିପରି ୧୯୭୬ରେ ଗଣତନ୍ତ୍ର ଦିବସରେ ରାଷ୍ଟ୍ରପତି ତାଙ୍କୁ 'ପଦ୍ମଶ୍ରୀ' ଉପାଧିରେ ଭୂଷିତ କରି ଉତ୍କଳୀୟ ସଙ୍ଗୀତକୁ ଉପଯୁକ୍ତ ମର୍ଯ୍ୟାଦା ପ୍ରଦାନ କରିଥିଲେ ।

ବାସ୍ତବିକ ଉତ୍କୃଷ୍ଟ କଳାର ଦେଶ ଉତ୍କଳରେ ସଙ୍ଗୀତର ପ୍ରାଧାନ୍ୟ ମଧ୍ୟ କମ୍ ନୁହେଁ । ଭାରତ ବର୍ଷର ସର୍ବପ୍ରାଚୀନ ନାଟ୍ୟଗ୍ରନ୍ଥ ମଧ୍ୟ ଯେପରି ଏ ଦେଶରେ ଆବିଷ୍କୃତ, ସେହିପରି ଓଡ଼ିଶୀ ସଙ୍ଗୀତର ସ୍ୱାତନ୍ତ୍ର୍ୟ ସର୍ବଜନ ବିଦିତ । ସଙ୍ଗୀତ ସମ୍ପର୍କରେ କୁହାଯାଇଛି—

"ପଶୁର୍ବେତ୍ତି ଶିଶୁର୍ବେତ୍ତି
ବେତ୍ତି ଗୀତ ରସଂ ଫଣୀଃ ।"

ଅର୍ଥାତ୍ ସଙ୍ଗୀତ—ଶିଶୁ, ପଶୁ ଓ ବିଷଧର ସର୍ପକୁ ମଧ୍ୟ ବଶୀଭୂତ କରିଥାଏ । କେବଳ ଏତିକି ନୁହେଁ; ରୋଗର ଉପଶମ ନିମନ୍ତେ ବୈଜ୍ଞାନିକମାନେ ଯେପରି ସଙ୍ଗୀତ ଉପରେ ପ୍ରାଧାନ୍ୟ ଦେଉଛନ୍ତି—ଏଥିରୁ ସଙ୍ଗୀତ ବିଦ୍ୟାର ବୈଶିଷ୍ଟ୍ୟ ସହଜରେ ଅନୁମେୟ । ସୁତରାଂ ସଙ୍ଗୀତର ମାନବଠାରୁ ପ୍ରିୟ ଆଉ କେହି ହୋଇ ନ ପାରେ । ଭରତଙ୍କ ନାଟ୍ୟଶାସ୍ତ୍ରରୁ ଜଣାଯାଏ ଯେ ସଙ୍ଗୀତର ଉତ୍ପତ୍ତି ହୋଇଛି ବ୍ରହ୍ମା କର୍ତ୍ତୃକ ସାମବେଦରୁ । ତେଣୁ ବୈଦିକ ଯୁଗରୁ ମୁନିଋଷିମାନଙ୍କର ସପ୍ତସ୍ୱର ସମ୍ବଳିତ ଦେବତାଙ୍କ ସ୍ତୁତିରୁ ଏହି ସଙ୍ଗୀତର ଯେ ପ୍ରାଧାନ୍ୟ ଓ ବୈଶିଷ୍ଟ୍ୟ ରହି ଆସିଛି ଏଥିରେ ତିଳାର୍ଦ୍ଧ ସନ୍ଦେହର ଅବକାଶ ନାହିଁ । ଖ୍ରୀଷ୍ଟପୂର୍ବ ପ୍ରଥମ ଦ୍ୱିତୀୟ ଶତାବ୍ଦୀରେ ମହାମେଘବାହନ ଐର ଖାରବେଳଙ୍କ ରାଜତ୍ୱ-କାଳରେ ସଙ୍ଗୀତ କଳାର ଭୂୟୋବିକାଶ ଘଟିଥିବା ଜଣା-ଯାଏ । ଭାରତୀୟ ଦେଶୀ ସଙ୍ଗୀତରେ ଏ ସମୟରେ ଦୁଇଟି ଧାରା ପ୍ରଚଳିତ ଥିଲା—ହିନ୍ଦୁସ୍ଥାନୀ ଓ କର୍ଣ୍ଣାଟକୀ । ବୈଦେଶିକମାନଙ୍କ ପ୍ରଭାବରେ ଭାରତୀୟ ସଙ୍ଗୀତରେ ବହୁ ଅନାବଶ୍ୟକ ସୃଷ୍ଟି ହୋଇଥିଲେ ହେଁ ଭାରତୀୟ ଶାସ୍ତ୍ରୀୟ ରୀତିକୁ ଅନୁସରଣ କରି ଓଡ଼ିଶୀ ନୃତ୍ୟ ପରି ଓଡ଼ିଶୀ ସଙ୍ଗୀତ ତା'ର ସ୍ୱାତନ୍ତ୍ର୍ୟ ରକ୍ଷା କରି ଆସିଛି । ଷୋଡ଼ଶ ଶତାବ୍ଦୀରେ ମୋଗଲ ସମ୍ରାଟ ଆକବରଙ୍କର ସଙ୍ଗୀତଜ୍ଞ ତାନସେନ ସାଧକ ହରିଦାସ ଗୋସ୍ୱାମୀଙ୍କ ଠାରୁ ଶାସ୍ତ୍ରୀୟ ସଙ୍ଗୀତ ଶିକ୍ଷା କରିଥିବା ହେତୁ ସେ ସମୟରେ ଶାସ୍ତ୍ରୀୟ ସଙ୍ଗୀତର ପ୍ରଭାବକୁ ଅନୁମାନ କରାଯାଇ ପାରେ । ମାତ୍ର ୧୫୬୮ ପରେ ଓଡ଼ିଶା ପରାଧୀନ ହୋଇଯିବାରୁ ପ୍ରାୟ ୨୫୦ ବର୍ଷ ପର୍ଯ୍ୟନ୍ତ ଉତ୍କଳୀୟ ସଙ୍ଗୀତରେ ଶୃଙ୍ଗାରିକତା ପ୍ରାଧାନ୍ୟ ଲାଭ କରିଥିଲେ ହେଁ, ଏ ଦେଶରେ ବିଭିନ୍ନ ଛାନ୍ଦ, ଚଉପଦୀ, କୋଇଲି, ଚଉତିଶା, ଯୋଗୀ ଗୀତ, ହଳିଆ ଗୀତ, ନାଉରି ଗୀତ, ଚଷା ଗୀତ, ପଦପଦାଣୀ ପ୍ରଭୃତି ବହୁ ଲୋକଗୀତ ଓଡ଼ିଶୀ ସଙ୍ଗୀତର ବୈଶିଷ୍ଟ୍ୟକୁ ଅକ୍ଷୁର୍ଣ୍ଣ ରଖିଥିଲା । ସୁତରାଂ ଊନବିଂଶ ଶତାବ୍ଦୀରେ ପାଶ୍ଚାତ୍ୟ ସଭ୍ୟତାନୁସାରୀ ଉତ୍କଳୀୟ ଜନଗଣଙ୍କୁ ସଚେତନ କରିବା ଲାଗି କଥାସମ୍ରାଟ ଫକୀର ମୋହନ ବୋଧହୁଏ ତାଙ୍କର ଉପନ୍ୟାସ ମାନଙ୍କରେ କୀର୍ତ୍ତନ, ଜଣାଣ, ଦକ୍ଷିଣୀ ସଙ୍ଗୀତ ଆଦିର ଉଲ୍ଲେଖ କରିଥିଲେ । ପରବର୍ତ୍ତୀ କାଳରେ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ ଉତ୍କଳର ଅନୁକରଣପ୍ରିୟ ଓ ଉଦାସୀନ ସଂଗୀତ ଶାସ୍ତ୍ରଜ୍ଞଙ୍କ କବଳରୁ ଓଡ଼ିଶାର ସ୍ୱାତନ୍ତ୍ର୍ୟ ରକ୍ଷା କରିବା ଲାଗି ଯେପରି ଓଡ଼ିଶୀ ସଂଗୀତର ଅନୁଶୀଳନ କଲେ, ଅନୁରୂପେ ବହୁ ଉଚ୍ଚକୋଟୀର ଯୁଗାନୁଯାୟୀ ଓଡ଼ିଶୀ ସଂଗୀତ ରଚନା କରି ସଂଗୀତକୁ ମର୍ଯ୍ୟାଦା ଦେଲେ । ମାତ୍ର କବିର ଲେଖା ଅପେକ୍ଷା ସଂଗୀତର କଣ୍ଠ-

ମାଧୁର୍ଯ୍ୟ ଅଧିକ ପ୍ରଭାବଶାଳୀ । ସୁତରାଂ କବିଚନ୍ଦ୍ରଙ୍କ ଲେଖନୀ ଓ ବାଣୀକଣ୍ଠଙ୍କର କଣ୍ଠ ମାଧୁର୍ଯ୍ୟ ଯେ ବିଂଶ ଶତାବ୍ଦୀର ଏହି ହତଭାଗ୍ୟ ଦେଶରେ ଅଦ୍ୟାବଧି ଓଡ଼ିଶୀ ସଂଗୀତର ମର୍ଯ୍ୟାଦାକୁ କିଛି ପରିମାଣରେ ଅକ୍ଷୁର୍ଣ୍ଣ ରଖିଛି—ଏହା ଅପ୍ରିୟ ହେଲେ ବି ସତ୍ୟ । ଅବଶ୍ୟ ସାଂପ୍ରତିକ କାଳରେ ଶ୍ରୀ ବାଳକୃଷ୍ଣ ଦାସ, ଶ୍ରୀ ପ୍ରଫୁଲ୍ଲ କର, ଶ୍ରୀ ଭିକାରୀ ଚରଣ ବଳ ଓ ଶ୍ରୀ ରଘୁନାଥ ପାଣିଗ୍ରାହୀ ପ୍ରମୁଖ ଏହି ଉତ୍କଳର ସ୍ୱାତନ୍ତ୍ର୍ୟ ରକ୍ଷା ନିମନ୍ତେ ଓଡ଼ିଶୀ ଛାନ୍ଦ ଓ ରାଗରାଗିଣୀ ଗାନ କରୁଛନ୍ତି । ଏମାନଙ୍କର ବୈଶିଷ୍ଟ୍ୟ ଓ ସାଧନା ସମ୍ପର୍କରେ ଭବିଷ୍ୟତ ହିଁ ଉତ୍ତର ଦେବ ।

ଉପଯୁକ୍ତ ବଂଶର ଦାୟାଦ ରୂପେ ବାଣୀକଣ୍ଠ ଜୀବନର ୮୨ଟି ବସନ୍ତ ଅତିକ୍ରମ କରି ( ଅର୍ଥାତ୍ ଜୁଲାଇ ୨୦ ତାରିଖ ୧୯୮୩ ମସିହା ଭୋର ୪ଟା ବେଳେ ସେ ପରଲୋକ ଗମନ କଲେ ) ଜୀବନର ଶେଷ ସମୟ ପର୍ଯ୍ୟନ୍ତ ବାକଦେବୀ ସରସ୍ୱତୀଙ୍କର ଅକ୍ଷୟ, ଅମଳିନ କଣ୍ଠ ପରି ନିଜର କଣ୍ଠର ରାଗିଣୀ ଯେପରି ଫୁଟାଇ ଥିଲେ, ତାହା ଅବିସ୍ମରଣୀୟ । ତେଣୁ ଯଥାର୍ଥରେ ସେ ହିଁ ବାଣୀକଣ୍ଠ । କଣ୍ଠସ୍ୱର ତାଙ୍କର ସ୍ୱତନ୍ତ୍ର; ଗାୟନ ଶୈଳୀ ତାଙ୍କର ନିଜସ୍ୱ, ସବୁ କଣ୍ଠସ୍ୱର ମଧ୍ୟରେ ତାଙ୍କ କଣ୍ଠସ୍ୱର ବାରି ହୋଇପଡ଼େ—ସତେ ଯେପରି ମନେହୁଏ କର୍ଦ୍ଦମାକ୍ତ ସମାଜ ବକ୍ଷରେ ଭକ୍ତର ଆତ୍ମନିବେଦ୍ୟ ରୂପୀ ଶୁଭ୍ର ପୁଷ୍ପଗୁଚ୍ଛ ଝରି ପଡ଼ୁଛି । ସେ କଣ୍ଠସ୍ୱରରେ କି ମାଦକତା । ବିଭୁ ପଦାରବିନ୍ଦରେ କି ଆତ୍ମନିବେଦନର ପ୍ରଚେଷ୍ଟା ।

ପୂର୍ବରୁ ଉଲ୍ଲେଖ କରିଯାଇଛି ବଂଶଗତ ପରମ୍ପରା ଓ ଆଭିଜାତ୍ୟ ହିଁ ତାଙ୍କୁ ସ୍ଥିତଧୀ କରିପାରିଛି । ସେହି ବଂଶର ପ୍ରଖ୍ୟାତ ସଙ୍ଗୀତଜ୍ଞ ଗୋକୁଳ ଶ୍ରୀଚନ୍ଦନ, ହରିହର ସିଂହ ମର୍ଦ୍ଦରାଜ ନିଜର ପ୍ରତିଭା ହେତୁ ଓଡ଼ିଶାରେ ସୁପରିଚିତ । ରାଧାଶ୍ୟାମ ନରେନ୍ଦ୍ରଙ୍କର ଜାମାତା ପୁରୀ ସେଠଙ୍କର ବକ୍ସି । କ ଅପୂର୍ବ ବଂଶଗତ ପରମ୍ପରା । ଏହି ପାରମ୍ପରିକ ଆଦର୍ଶ-ବୋଧ ହିଁ ତାଙ୍କୁ ବୋଧହୁଏ କରିଥିଲା ଦୃଢ଼ମନା—ନିଜ ଉପରେ ଥିଲା ଗଭୀର ଆତ୍ମପ୍ରତ୍ୟୟ । ତାଙ୍କର ଭାଷାରେ କହିଲେ—"ଫୁଲ ପରି ଜୀବନ ଯେପରି ଆସେ, ସେହିପରି ଚାଲିଯାଏ । କେତେ ଫୁଲ ଫୁଟି ମଉଳି ଯାଏ, କେହି ତାକୁ ଜାଣେ ନାହିଁ । ଯେଉଁ ଫୁଲଟି ଜନସମାଜରେ ଉପଭୋଗ୍ୟ ହୁଏ କିମ୍ବା ଦେବ ଅର୍ଚ୍ଚନାରେ ବିନିଯୋଗ ହୁଏ, ତାହାର ଜୀବନ ସାର୍ଥକ ହୁଏ । ଭଗବତ୍ କୃପାରୁ ଏ ଜୀବନର ସେହି ସୁଯୋଗ ପାଇ ମୁଁ ନିଜକୁ ଧନ୍ୟ ମନେ କରୁଛି ।"

ଏହି ଭଗବତ୍ ବିଶ୍ୱାସ ତାଙ୍କର ଜୀବନରେ ଦୃଢ଼ ଭିତ୍ତି ସ୍ଥାପନ କରିଥିଲା । ତେଣୁ ୧୯୭୦ ମସିହାରୁ ସେ ପୁରୀର ମାଟିମଣ୍ଡପ ସାହିରେ ସ୍ଥାୟୀ ଭାବେ ବସବାସ କରି ଶ୍ରୀ ଜଗନ୍ନାଥଙ୍କ ସେବାରେ ମନପ୍ରାଣ ଢାଳିଦେବା ସଙ୍ଗେ ସଙ୍ଗେ ପ୍ରତିଦିନ ଜଗନ୍ନାଥଙ୍କର ଘୁମର ସେବା କରି ଜଣାଣ-ଗାନ କରି ଆସୁଥିଲେ ।

ସୁତରାଂ ଯେଉଁ ଶୁଦ୍ଧାଭକ୍ତି ଧାରାର ଉଦ୍‌ବେଳନ ଶ୍ରୀ ଚୈତନ୍ୟଙ୍କ ଠାରୁ ଆରମ୍ଭ ହୋଇଥିଲା ଏବଂ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା, ଅଭିମନ୍ୟୁ ସାମନ୍ତ ସିଂହାର, ଭକ୍ତଚରଣ ପ୍ରମୁଖ ନିଜ କାବ୍ୟରେ ପ୍ରତିଷ୍ଠା ଦେଇଥିଲେ, ସେହି ଭକ୍ତି-ଧାରାର ଶେଷ ଅନିର୍ବାଣ ଶିଖା ଯେ ବାଣୀକଣ୍ଠ ଥିଲେ ଏଥିରେ ସନ୍ଦେହର ଅବକାଶ ନାହିଁ । ପୁନଶ୍ଚ ଭକ୍ତିରସ ସହିତ ସାମାଜିକ ସଚେତନତା ହେତୁ ସେ ଯେପରି ଓଡ଼ିଶୀ ସଙ୍ଗୀତକୁ ନିଜସ୍ୱ ଶୈଳୀରେ ପ୍ରତିଷ୍ଠା ଦେଲେ, ତାହା ମଧ୍ୟ ଉଲ୍ଲେଖନୀୟ । ଯଥାର୍ଥରେ ତାଙ୍କର ସଙ୍ଗୀତ ଶ୍ରବଣ କରି ସ୍ୱର୍ଗତ ଜଗବନ୍ଧୁ ସିଂହ ମତ ଦେଇଥିଲେ—"ଆଜି କାଲି ରେକର୍ଡରେ ଗଣ୍ଡା ଗଣ୍ଡା ହୋଇ ଓଡ଼ିଆ ଗୀତ ବାହାରୁଛି । କିନ୍ତୁ ତୁମର ୪/୫ ଗୋଟିଏ ବାହାରିଛି । ତୁମ ଗୀତଗୁଡ଼ିକ ଅତି ସୁନ୍ଦର, ମନମୁଗ୍ଧକର ହୋଇଛି । ତୁମ୍ଭେ ଉତ୍କଳ

ଓଡ଼ିଆ ସଙ୍ଗୀତର, ଓଡ଼ିଆ ଜାତିର ବୈଶିଷ୍ଟ୍ୟ ରକ୍ଷା କରି ପାରିଛ । ଏଥିଲାଗି ତୁମ୍ଭଙ୍କୁ ଆନ୍ତରିକ କୋଟି ଧନ୍ୟବାଦ ଦେଉଛୁ । ଓଡ଼ିଆ ସଙ୍ଗୀତକୁ ବଙ୍ଗଳା ଛାଞ୍ଚରେ ଢ଼ାଳିବା, ବଙ୍ଗଳା ସ୍ୱରରେ ଗାଇବାରେ କିଛି ବିଶେଷତ୍ୱ ନାହିଁ, ବରଂ ଅନେକ ସମୟରେ ତାହା କଦାକାର ଧାରଣ କରେ । ତୁମ୍ଭେ ସେ ପଥରୁ ଏକା ବେଳକେ ଅଲଗା ରହି ଓଡ଼ିଆ ଛାନ୍ଦ ଓ ସଙ୍ଗୀତକୁ ଯେପରି ଗାଇଛ, ସେଥିଲାଗି ତୁମକୁ ଧନ୍ୟବାଦ ।”

ପ୍ରଜାତନ୍ତ୍ର ସମ୍ପାଦକ ମଧ୍ୟ ତାଙ୍କର ସଂପାଦକୀୟରେ ମତ ଦେଇଥିଲେ—

“ଦେଶରେ ଧର୍ମଭାବ କ୍ରମେ ହ୍ରାସ ପାଉଥିବା ବେଳେ ସେ ଜଣାଣ ଓ ଭଜନ ଲହରୀ ଦେଇ ପୁରାତନ ଶୈଳୀରେ ଗାନ କରି ବହୁ ଲୋକଙ୍କ ମଧ୍ୟରେ ଭକ୍ତିଭାବ ସୃଷ୍ଟି କରୁଥିଲେ ।”

ବାସ୍ତବିକ୍ ବର୍ତ୍ତମାନ ଯୁଗରେ ଧର୍ମଭାବ କ୍ରମେ ହ୍ରାସ ପାଇ ସମାଜ ଜୀବନ କଳୁଷିତ ହୋଇ ଯାଉଥିବା ବେଳେ, ବାଣୀକଣ୍ଠ ‘ହିଜ୍ ମାଷ୍ଟରସ୍ ଭଏସରେ’ ୫୦୦ ଊର୍ଦ୍ଧ୍ୱ ଓଡ଼ିଶୀ, ଜଣାଣ ଓ ଛାନ୍ଦ ରେକର୍ଡ଼ କରି ସମାଜକୁ ସ୍ମୃତି ର ରଖିବାର ଯେଉଁ ପ୍ରୟାସ କରିଛନ୍ତି, ସେଥିପାଇଁ ସେ ଯେ ଚିରକାଳ ଅମର ହୋଇ ରହିବେ ଏଥିରେ ସନ୍ଦେହର ଅବକାଶ ନାହିଁ ।

●

ଅଧ୍ୟାପକ, ରେଭେନ୍‌ସା କଲେଜ
କଟକ

# ସ୍ୱର-ସାଧକ ବାଣୀକଣ୍ଠ

ଶ୍ରୀ ମହେଶ୍ୱର ମଳିଆ

ପ୍ରାଚୀନ ଓଡ଼ିଶାର କାବ୍ୟ-କବିତା ଓ ଭକ୍ତିମୂଳକ ସାହିତ୍ୟର ସାଙ୍ଗୀତିକ ସୌନ୍ଦର୍ଯ୍ୟ ଭାଷା ବିନ୍ୟାସ ତଥା ଭାବ-ସମ୍ଭାର ଓଡ଼ିଶୀ ସଙ୍ଗୀତ କଳାକୁ ଯଥେଷ୍ଟ ବୃଦ୍ଧିମନ୍ତ କରି-ଆସିଛି । ଆଧୁନିକ ଓଡ଼ିଶାରେ ପଡ଼ୋଶୀ ରାଜ୍ୟର ପ୍ରଚଳିତ ସଙ୍ଗୀତର ପ୍ରଭାବ ସତ୍ତ୍ୱେ, ଓଡ଼ିଆ ସଙ୍ଗୀତ ଏପର୍ଯ୍ୟନ୍ତ ତା'ର ସ୍ୱାତନ୍ତ୍ର୍ୟ ଓ ମୌଳିକତା ଅକ୍ଷୁର୍ଣ୍ଣ ରଖି ପାରିଛି । ଓଡ଼ିଶୀ ସଙ୍ଗୀତ ପରମ୍ପରାର ଉପଯୁକ୍ତ ଦାୟାଦ ରୂପେ ଯେଉଁ କେତେକ ସ୍ୱରସାଧକ ସଙ୍ଗୀତ ସାଧନାକୁ ଜୀବନର ବ୍ରତ କରି ଭାରତର ସାଂସ୍କୃତିକ ମାନଚିତ୍ରରେ ଓଡ଼ିଶାର ପ୍ରତିମୂର୍ତ୍ତିକୁ ପ୍ରତିଷ୍ଠିତ କରିଛନ୍ତି, ବାଣୀକଣ୍ଠ ନିମାଇଁ ଚରଣ ସେମାନଙ୍କ ମଧ୍ୟରେ ଅଗ୍ରଣୀ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଓଡ଼ିଶୀ ସଂଗୀତ ଜଗତରେ ନିମାଇଁ ଚରଣଙ୍କ କଣ୍ଠସ୍ୱର ସଂପୂର୍ଣ୍ଣ ନୂତନ । ଗାୟନ ଶୈଳୀ ତାଙ୍କର ଏକାନ୍ତ ନିଜସ୍ୱ । ପୁରପଲ୍ଲୀ ସହର ନଗର ସବୁଠି ତାଙ୍କ ସଂଗୀତର ପ୍ରସ୍ତୁତି ଶୁଣିବାକୁ ମିଳିଥାଏ । ସମସ୍ତ କୋଳାହଳ, ଗୀତ-ବାଦ୍ୟର ଗୁଞ୍ଜନ ଭିତରେ ବାରି ହୋଇ ପଡ଼େ ବାଣୀକଣ୍ଠଙ୍କ ଉଦାତ୍ତ ଗମ୍ଭୀର ସ୍ୱନ । ରେଡ଼ିଓ ହେଉ ବା ରେକର୍ଡ଼ ହେଉ ଚୁଣ୍ଡି ଖୋଲିଲା ମାତ୍ରେ ଶ୍ରୋତା ଚିହ୍ନିପାରେ, ଅତି ପରିଚିତ, ଅତି ଆପଣାର ସେଇ ବାଣୀକଣ୍ଠ ନିମାଇଁ ଚରଣଙ୍କୁ । ପରିଣତ ବୟସରେ ମଧ୍ୟ ତାଙ୍କ କଣ୍ଠର ଲାଳିତ୍ୟ, ମାଧୁର୍ଯ୍ୟ ତଥା ଗାମ୍ଭୀର୍ଯ୍ୟ ସଙ୍ଗୀତଜ୍ଞ ମହଲରେ ବିସ୍ମୟ ସୃଷ୍ଟି କରିଛି । ତାଙ୍କର କଣ୍ଠସ୍ୱର ତରଙ୍ଗ ଭଳି ଚପଳ ଓ ଗତିଶୀଳ, ବିଦ୍ୟୁତ ପରି ଚଞ୍ଚଳ, ସାଗର ତୁଲ୍ୟ ଉଚ୍ଛଳ ଓ ଛନ୍ଦମୁଖର, ପୁଣି ଆକାଶ ଭଳି ନିର୍ମଳ, ପର୍ବତ ପରି ଉଚ୍ଚ ଓ ଗମ୍ଭୀର । ଯଥାର୍ଥରେ ସେ ଏ ଯୁଗର ଏକ ଅତୁଳନୀୟ ଅନୁପମ ଓ ଅନୁକରଣୀୟ ଅନନ୍ୟ ପ୍ରତିଭା । ତାଙ୍କ ସ୍ୱର ସାଧନାରେ ଯେଉଁ ନିଷ୍ଠା ଓ ମୌଳିକତା ପରିସ୍ଫୁଟ, ତାହାହିଁ ତାଙ୍କର ଚରମ ଓ ପରମ ବୈଶିଷ୍ଟ୍ୟ ।

ଛାନ୍ଦ, ଜଣାଣ, ପଲ୍ଲୀ, ଚମ୍ପୂ, ଭଜନ, ଓଡ଼ିଶୀ ସଂଗୀତ ନିମାଇଁ ଚରଣଙ୍କ ଶିଳ୍ପୀ ଜୀବନର ଶାଶ୍ୱତ ସମ୍ଭାର । ଗ୍ରାମଫୋନ ରେକର୍ଡ଼ ଓ ଆକାଶବାଣୀ, ଚଳଚ୍ଚିତ୍ର ତଥା ସାଂସ୍କୃତିକ ଜଗତରେ ନିଚ୍ଛକ ଓଡ଼ିଶୀ ସଂଗୀତ ପରିବେଷଣରେ ହିଁ ତାଙ୍କର ସ୍ୱକୀୟ ବୈଶିଷ୍ଟ୍ୟ ଓ ବୈଚିତ୍ର୍ୟ ବିଦ୍ୟମାନ । କଳାକ୍ଷେତ୍ର ଉତ୍କଳର ଗୌରବମୟ ସଂଗୀତ ପରମ୍ପରାରୁ ସେ କେବେ ବିଚ୍ୟୁତ ହୋଇ ନାହାନ୍ତି । ତଥା-କଥିତ ଆଧୁନିକତା ତାଙ୍କୁ ସ୍ପର୍ଶ କରିବାକୁ କେବେ ସାହସ କରିନାହିଁ । ଏଇ ଭଳି ଏକ କାଳଜୟୀ କଳାକାର ଆମ ଦେଶର / ଆମ ଜାତିର ନିଶ୍ଚିତ ଭାବେ ଗର୍ବ ଓ ଗୌରବ । ସେ ଅକ୍ଷୟ ଓ ଅମର ।

●

ଟିଠାପୁର
କଟକ-୯

# ସିଦ୍ଧ-ସାଧକ ବାଣୀକଣ୍ଠ

## ଶ୍ରୀ ନଦୀୟାବିହାରୀ ମହାନ୍ତି

( ଆକାଶବାଣୀ )

ଓଡ଼ିଶାରେ ଏପରି ଏକ ସମୟ ଥିଲା, ଯେତେବେଳେ ସଙ୍ଗୀତ ବୋଇଲେ କେବଳ କୀର୍ତ୍ତନ, ଭଜନ, ଜଣାଣ, ଭାଗବତ ପାଠ, ରାମାୟଣ, ମହାଭାରତ ପାଠକୁ ବୁଝାଉଥିଲା ।

ଯେ ଏହି ଧର୍ମ ସଙ୍ଗୀତ ଗାନ କରୁଥିଲା, ସେମାନଙ୍କୁ କେବଳ ସଙ୍ଗୀତଜ୍ଞ କୁହା ଯାଉ ନ ଥିଲା, ଜଣେ ଭକ୍ତଭାବାପନ୍ନବ୍ୟକ୍ତି ଭାବରେ ସମସ୍ତେ ସମ୍ମାନ ପ୍ରଦର୍ଶନ କରୁଥିଲେ ।

ଏହା ବ୍ୟତୀତ ଯେଉଁମାନେ ନାଟକ, ଗୀତିନାଟ୍ୟ ପ୍ରଭୃତିରେ ଅଂଶ ଗ୍ରହଣ କରୁଥିଲେ, ସେମାନଙ୍କ ପ୍ରତି ସେତେବେଳେ ସମାଜର ସମ୍ମାନ ନ ଥିଲା ।

ବାଣୀକଣ୍ଠ ଥିଲେ ସେ ଯୁଗର ଭକ୍ତିରସ ସଙ୍ଗୀତର ଜଣେ ସିଦ୍ଧ ପରିବେଷକ ।

ପରମ ବୈଷ୍ଣବ ନାମାଶ୍ରୟୀ ବାବାଜୀ ଶ୍ରୀ ଶ୍ରୀ ରାମ ଦାସଙ୍କର ସେ ଥିଲେ ପରମ ଭକ୍ତ ।

ବଙ୍ଗାଳି ସାହି ମଠରେ ରଥ ଯାତ୍ରା ସମୟରେ ବାବାଜୀ ମହାଶୟ ପୁରୀରୁ ଫେରି ଅନେକ ସମୟରେ ରହୁଥିବାର, ମୁଁ ଦେଖିଛି ।

ସେହି ସମୟରେ ବାଣୀକଣ୍ଠ ତାଙ୍କ ସଂକୀର୍ତ୍ତନ ଦଳରେ ଯେତେବେଳେ ସଂକୀର୍ତ୍ତନ ଗାନ କରୁଥିଲେ, ତାଙ୍କ ଚକ୍ଷୁରୁ ଧାର ଧାର ହୋଇ ଲୋତକ ବହି ପଡ଼ୁଥିବାର ମୁଁ ଲକ୍ଷ୍ୟ କରିଛି । ତାଙ୍କର ସେ ଭାବାବେଶ ଯେ ଥରେ ଦେଖିଛି ଭୁଲି ପାରିବ ନାହିଁ ।

ପରବର୍ତ୍ତୀ କାଳରେ ସେ ଆମ ଘରକୁ ଅନେକ ଥର ଆସିଛନ୍ତି । କାରଣ ମୋର ପିତା ମଧ୍ୟ ଜଣେ ବୈଷ୍ଣବ ଧର୍ମାବଲମ୍ବୀ ଥିଲେ । ଆମ ପରିବାର କେନ୍ଦ୍ରାପଡ଼ା ନିବାସୀ ହୋଇଥିବାରୁ ଆମ ପରିବାର ଉପରେ ବୈଷ୍ଣବ ଧର୍ମର ପ୍ରଭାବ ଯଥେଷ୍ଟ ଥିଲା । ତେଣୁ ବାଣୀକଣ୍ଠ କେନ୍ଦ୍ରାପଡ଼ା ନିବାସୀ ଭାବରେ ଆମ ପରିବାର ସହିତ ସୁପରିଚିତ ଥିଲେ ।

ଶ୍ରୀ ରାମଦାସଙ୍କର ଗୁରୁ ଶ୍ରୀ ଶ୍ରୀ ରାଧାରମଣ ଦେବଙ୍କର ଯେଉଁ ମୂର୍ତ୍ତି କଟକ ଶ୍ରୀ ରାସବିହାରୀ ମଠ ଠାରେ ରହିଛି, ସେଠାକୁ ବାବାଜୀ ରାମ ଦାସ ବରାବର ଦର୍ଶନ ପାଇଁ ଆସୁଥିଲେ । ତାଙ୍କ ସହିତ ବାଣୀକଣ୍ଠ ନିମାଇଁଚରଣ ହରିଚନ୍ଦନ ବହୁବାର ସେହି ପବିତ୍ର ପୀଠରେ ତାଙ୍କର ସଂକୀର୍ତ୍ତନ ପରିବେଷଣ ଶୁଣିବାର ସୌଭାଗ୍ୟ ମୋର ଘଟିଛି ।

ପରବର୍ତ୍ତୀ କାଳରେ ମୁଁ ଲକ୍ଷ୍ୟ କଲି ତାଙ୍କର ଯେଉଁ ଗ୍ରାମଫୋନ ରେକର୍ଡଗୁଡ଼ିକ ରହିଛି, ସେ ସବୁକୁ ଅନୁଧ୍ୟାନ କଲେ ଜଣାଯାଏ, ସେ ଯେତେବେଳେ ସଙ୍ଗୀତ ପରିବେଷଣ କରିଛନ୍ତି, ସବୁଥିରେ ପ୍ରଭୁଙ୍କ ଗୁଣାବଳୀ ବର୍ଣ୍ଣନା କରି ଯାଇଛନ୍ତି । କେତେଗୁଡ଼ିଏ ଛାନ୍ଦ ମଧ୍ୟ ସେ ଗାନ କରିଛନ୍ତି । ପରବର୍ତ୍ତୀ କାଳରେ ସ୍ୱନାମଧନ୍ୟ ଗୀତିକାର କୁଞ୍ଜକିଶୋର ଦାସଙ୍କ ଲିଖିତ ବହୁ ପଲ୍ଲୀ ଗୀତ ମଧ୍ୟ ସେ ଆକାଶବାଣୀର ଶିଳ୍ପୀ ଭାବରେ ପରିବେଷଣ କରିବାର ମୁଁ ଶୁଣିଛି । ସେ ସବୁଗୁଡ଼ିକ ବେଶ୍ ଉପଦେଶାତ୍ମକ । ହୁଏତ ତାଙ୍କ ସମୟରେ ଓଡ଼ିଶାରେ ଯେପରି ସଙ୍ଗୀତଜ୍ଞଙ୍କର ଅଭାବ ଥିଲା, ସେ ଇଚ୍ଛା

କରିଥିଲେ ଶାସ୍ତ୍ରୀୟ ସଙ୍ଗୀତ ମଧ୍ୟ ଶିକ୍ଷା କରି ସେ ଦିଗରେ ସୁନାମ ଅର୍ଜନ କରିପାରି ଥାଆନ୍ତେ ।

ମାତ୍ର ବାଣୀକଣ୍ଠ ଥିଲେ ଜଣେ ଖାଣ୍ଟି ଓଡ଼ିଆ । ଓଡ଼ିଶାର ନିଜସ୍ୱ ରାଗ ରାଗିଣୀ ଆଧାରିତ ସଙ୍ଗୀତ ପରିବେଷଣ ପାଇଁ ସେ ସଦା ସର୍ବଦା ଆଗ୍ରହୀ ଥିଲେ । ତାଙ୍କର ସେହି ସାଧନା ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଅବ୍ୟାହତ ରହିଥିଲା ।

ସେ ଶ୍ରୀଜଗନ୍ନାଥଙ୍କର ଭ୍ରମର ହେବାରେ ସୌଭାଗ୍ୟ ଲାଭ କଲା ଦିନୁ ପୁରୀରେ ରହି କେବଳ ଜଗବନ୍ଧୁ ଜଗନ୍ନାଥଙ୍କର ଭଜନ, ଜଣାଣ ଗାଇ ପ୍ରଭୁଙ୍କ ଶ୍ରୀପାଦପଦ୍ମରେ ଲୀନ ହେବାର ସୌଭାଗ୍ୟ ପାଇଁ ସେ ଲାଳାୟିତ ଥିଲେ ।

ତାଙ୍କର ଦେହାନ୍ତ ଦିନ ମୁଁ ପୁରୀଠାରେ ୧୯୮୩ ମସିହାର ବାହୁଡ଼ା ଦିନ ଉପସ୍ଥିତ ଥିଲି । ମୋର ମନେ ପଡ଼ୁଛି, ବାହୁଡ଼ା ରଥ ଟାଣିବା ପାଇଁ ଯେଉଁ ଭକ୍ତମାନେ ସେଠାରେ ଉପସ୍ଥିତ ଥିଲେ, ବାଣୀକଣ୍ଠଙ୍କ ଦେହାନ୍ତ ବାର୍ତ୍ତା ସମସ୍ତଙ୍କୁ ଏପରି ଭାବ ବିହ୍ୱଳ କରିଥିଲା ଯେ, ସମସ୍ତେ କେବଳ ଗୋଟିଏ କଥା କହୁଥିଲେ—

“ଏ କଳିଯୁଗରେ ବି କାଳିଆର ଏତେ କରୁଣା, ଭକ୍ତଟି ତା'ର ଏତେ ଲୋଭ, ଠିକ୍ ବାହୁଡ଼ା ଦିନରେ ସେ ଭକ୍ତକୁ ବି ହୁଡ଼ାଇ ନେଲେ ନିଜ ପୁରକୁ ।”

ବାସ୍ତବିକ୍ ବାଣୀକଣ୍ଠ ଜୀବନ ବ୍ୟାପୀ ତାଙ୍କର ଆକୁଳ କଣ୍ଠରେ ଯେଉଁ ବିଭୁପଦରେ ଲୀନ ହେବା ପାଇଁ ଭକ୍ତି ସଙ୍ଗୀତ ଗାନ କରି ଆରାଧନା କରୁଥିଲେ, ତାହାହିଁ ପୂରଣ କଲେ ଭକ୍ତ ବନ୍ଧୁ ଶ୍ରୀ ଜଗନ୍ନାଥ । ଯେଉଁ ନିମାଇଁ… ନିମାଇଁର ଦିନେ କୀର୍ତ୍ତନ କରୁ କରୁ ସଙ୍ଗୀତ ସାଗରରେ ବୁଡ଼ି ଯାଇଥିଲେ, ଏ ଜାତି ତାଙ୍କୁ ତାଙ୍କ ଜୀବଦ୍ଦଶାରେ ଅବଶ୍ୟ ଯଥେଷ୍ଟ ସମ୍ମାନ ଦେଇ ପାରିଛି । ତାହା ଏ ଓଡ଼ିଆ ଜାତି ପକ୍ଷରେ ଗୌରବ ।

ମାତ୍ର ତାଙ୍କ ପରି ଯଦି ବହୁ ସଂଗୀତଜ୍ଞ ଭକ୍ତିରସ ପରିବେଷଣ କରି ଆଜିର ପଙ୍କିଳ ସମାଜକୁ ନିର୍ମଳ କରିବା ପାଇଁ ଆଗଭର ହୁଅନ୍ତେ, ସମାଜ ବହୁ ଜଟିଳ ସମସ୍ୟାରୁ ନିଜକୁ ଦୂରେଇ ରଖି ପାରନ୍ତା ।

ଏହି ସିଦ୍ଧସାଧକଙ୍କର ସ୍ୱର୍ଗତ ଆତ୍ମା ଆମ୍ଭମାନଙ୍କୁ ସେହି ଦିଗରେ ଦିଗ୍‌ଦର୍ଶନ ଦେଉ, ତାହାହିଁ ତାଙ୍କର ପରମାରାଧ୍ୟ ଦେବତା ଶ୍ରୀ ଜଗନ୍ନାଥଙ୍କ ଚରଣ ତଳେ ମାଗୁଣି ।



ତାଳଚେଲଙ୍ଗା ବଜାର
କଟକ-୯

# ସେ ମୋର ଦ୍ରୋଣ ସାଧକ ଗୁରୁ

**ଶ୍ରୀ ବୁଦ୍ଧିନାଥ ଶତପଥୀ**

ନିମାଇଁ ଚରଣ ହରିଚନ୍ଦନ ହେଉଛନ୍ତି ମୋର ଦ୍ରୋଣ ସଙ୍ଗୀତ ଗୁରୁ । ତାଙ୍କ ଠାରୁ ପ୍ରତ୍ୟକ୍ଷ ଭାବରେ ସଙ୍ଗୀତ ଶିକ୍ଷା କରି ନ ଥିଲେ ମଧ୍ୟ, ପରୋକ୍ଷ ଭାବରେ ତାଙ୍କର ରେକର୍ଡ ସଙ୍ଗୀତମାନ ମଧ୍ୟରୁ ଅନୁକରଣ କରି ମୁଁ ସଂଗୀତ ଶିକ୍ଷା କରି ପାରିଲି । ତାଙ୍କର ସ୍ୱରକୁ ମୁଁ ଏପରି ସାଧନା କରି ଆବୃତ୍ତି, କଲି ଯେ, ସେ ଯେପରି ଗାନ କରନ୍ତି, ମୁଁ ମଧ୍ୟ ଠିକ୍ ତାଙ୍କରି ସ୍ୱର ଭଳି ଗାନ କରି ପାରୁଛି । ଯେତେବେଳେ ପୂଜ୍ୟ ବାଣୀକଣ୍ଠ ବ୍ରହ୍ମପୁର ଯୋଗୀ ମଠକୁ ଆସିଥିଲେ, ସେତେବେଳେ ମୁଁ ତାଙ୍କ ସହିତ ସାକ୍ଷାତ କରି ସଙ୍ଗୀତ ଗାନ କରି ଯେତେବେଳେ ତାଙ୍କୁ ଶୁଣାଇଲି, ସେ ସେତେବେଳେ ଅତ୍ୟନ୍ତ ଆଶ୍ଚର୍ଯ୍ୟ ହୋଇ ଖଣ୍ଡିଏ ସାର୍ଟିଫିକେଟ ନିଜ ସ୍ୱହସ୍ତରେ ଲେଖି ମୋତେ ପ୍ରଦାନ କରିଥିଲେ । ତାଙ୍କୁ ମୁଁ ଯେ ବର୍ତ୍ତମାନ କେବଳ କେତେବର୍ଷ ହେଲା ଜାଣିଛି, ତାହା ନୁହେଁ, ୧୯୩୩ ମସିହା ଠାରୁ ମୁଁ ତାଙ୍କୁ ଭଲ ଭାବେ ଜାଣିଛି ।

୧୯୩୩ ବେଳକୁ ମୋର ପିଲା ବୟସ । ଯେତେବେଳେ ବାଣୀକଣ୍ଠ ନିମାଇଁ ହରିଚନ୍ଦନଙ୍କ ରେକର୍ଡ ଘୁରେ—"ଗର-ଜିଲା ମେଘ ବରଷେ ନାହିଁ ଗୋ, କଳା କାହ୍ନୁ କୃଷ୍ଣକ ନାଚେ, ଶ୍ରୀରାଧା ବାତୁଳ ପ୍ରେମ ରସାତୁଳୀ, ବିଜଳିକି ଅଲିଙ୍ଗନ, ଭୂଷଣ ପୁଷ୍ପେ ଯା' କାନ୍ତି କିଣି, ଭିନ୍ନେ ଆଜ ତୋ ସଙ୍ଗରେ, ମୀନ ନୟନା କ୍ଷୀଣ ହେବନି, ମୁଁ ସେତେବେଳେ ପାଗଳ ପରି ଦୌଡ଼ି ଯାଏ ଗ୍ରାମଫୋନ ପାଖକୁ—ଗୀତ ଶୁଣି ପୁରାପୁରି ତନ୍ମୟ ହୋଇଯାଏ । ପ୍ରକୃତରେ ସେ ବାଣୀକଣ୍ଠ । ତାଙ୍କ କଣ୍ଠରୁ ଯେତେବେଳେ ସ୍ୱର ଝଂକୃତ ହୋଇ ଉଠେ; ସେତେବେଳେ ଆକାଶ ପବନ ସବୁ ପ୍ରକଂପିତ ହୋଇଯାଏ । ସେଇ ସ୍ୱର ଝଂକାରର ପଟାନ୍ତର ନାହିଁ ।

ମୋର ମଧ୍ୟମ ବୟସରେ ଯେତେବେଳେ ତାଙ୍କୁ ବ୍ୟକ୍ତିଗତ ଭାବେ ଜାଣିବାକୁ ଇଚ୍ଛା କଲି, ସେତେବେଳେ ବ୍ରହ୍ମପୁର ଲକ୍ଷ୍ମୀ ଭଣ୍ଡାରରୁ ତାଙ୍କର ଠିକଣା ନେଇ ଆଠଗଡକୁ ଖଣ୍ଡିଏ ପତ୍ର ଦେଲି । ମୋର ପତ୍ର ପଢ଼ି, ଅତ୍ୟନ୍ତ ଆନନ୍ଦିତ ହୋଇ ମୋତେ ଖଣ୍ଡିଏ ପତ୍ର ଦେଇଥିଲେ । ସେଇ ପତ୍ରରେ ସେ ଲେଖିଥିଲେ—"ମୁଁ ଆପଣଙ୍କ ପତ୍ର ପଢ଼ି ଭାରି ଆନନ୍ଦ ଲାଭ କଲି । ସ୍ୱର ସାଧନା କରିବାକୁ ହେଲେ ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରିବାକୁ ହେବ" ଇତ୍ୟାଦି ଇତ୍ୟାଦି ବହୁ ଉପଦେଶ ପ୍ରଦାନ କରିଥିଲେ ।

ମୁଁ କେବଳ କାହିଁକି ଆମ ପରିବାରର ସମସ୍ତେ ତାଙ୍କ ସଙ୍ଗୀତ ଶୁଣିବାକୁ ଭାରି ଭଲ ପାଆନ୍ତି । ଗତ ୨୭-୨-୮୧ ଦିନ ପୁରୀ ଯାଇ ତାଙ୍କୁ ତାଙ୍କ ଶ୍ରୀ ଜଗନ୍ନାଥ ନିବାସରେ ଭେଟି ତାଙ୍କ ସହିତ ବହୁ ସମୟ ଧରି ସଙ୍ଗୀତ ଚର୍ଚ୍ଚା କଲି । ମୋର ତାଙ୍କ ସହିତ ସଙ୍ଗୀତ ବିଷୟରେ ଏ ପ୍ରକାର ଆଳାପ-ଆଲୋଚନା ତାଙ୍କୁ ଅସୀମ ଆନନ୍ଦ ଦେଇଥିଲା । ମୋତେ ସେ ସେତେବେଳେ କେତୋଟି ସଙ୍ଗୀତ ବିଷୟକ ବହି ପ୍ରଦାନ କରିଥିଲେ ।

ତାଙ୍କର ସେ ଦିନର ସ୍ମୃତି ଏ ଜୀବନରେ ଅପାଶୋର । ସେ ମୋର ଦ୍ରୋଣ ସଙ୍ଗୀତ ଗୁରୁ । ତାଙ୍କର ଜୀବନାଦର୍ଶ ମୋ ଜୀବନରେ ପ୍ରତି ପଦେ ପଦେ ପ୍ରତିଫଳିତ । ତାଙ୍କର ଆଶୀର୍ବାଦ ଏ ଜୀବନ ପଥର ପାଥେୟ ।

●

ପ୍ରଧାନଶିକ୍ଷକ,
ଗ୍ରାମ ଓ ପୋଷ୍ଟ-କୁକୁଡ଼ାଖଣ୍ଡି
ବ୍ରହ୍ମପୁର

# ଅଜାଙ୍କ ମଜା କଥା ଏବେବି ମନେ ପଡ଼େ

**ଶ୍ରୀ ପରମାନନ୍ଦ ଅଧିକାରୀ**

ମହା କାଳର ଆହ୍ୱାନ ଏଡ଼ି ନ ପାରି ସେ ଚାଲିଯାଇଛନ୍ତି ସତ, ମାତ୍ର ସତେ ଯେମିତି ଏବେବି ସେ ଆମ ସଙ୍ଗେ ସଙ୍ଗେ ଅଛନ୍ତି, କାୟା ସଙ୍ଗେ ଛାୟା ରହିଲା ପରି ।

ସହକାର ଗହଳରେ ଏବେବି ବାଉଳା ବୋଉଳ ବାଉଳା ହୋଇ ଖୋଜୁଛି ତାଙ୍କୁ । ଅନ୍ତଃପୁରର ଯୋଷା, କ୍ଷେତର ଚଷା, ଗ୍ରାମ ସିମନ୍ତିନୀ, ନବ ଯୌବନୀ ଅନୂଢ଼ା-ଚଞ୍ଚଳ-ଷୋଡ଼ଶୀମାନେ ଏବେବି ଝୁରି ହେଉଛନ୍ତି ତାଙ୍କୁ । ତାଙ୍କ ବାଣୀକଣ୍ଠର ସୁଧାସ୍ରାବୀ ସଙ୍ଗୀତକୁ ଆଉ ତାଙ୍କ ତୁଣ୍ଡର ଖଜା ପଣସ ପରି ମସ ମସ ମଜା କଥାକୁ ।

ସେ ଏବେବି 'ଚକା ଡୋଳା ଛମା ଓଜନ' ବୋଲି ବୁଲୁଛନ୍ତି ଶ୍ରୀମନ୍ଦିରରେ, ଗରୁଡ଼ସ୍ତମ୍ଭ ପଛରେ । ଗୋଟିଏ ହାତରେ ବାଡ଼ି । ଆଉ ଗୋଟିଏ ହାତରେ ଚାମର । ମଥାରେ ତିଳକ । ଅଙ୍ଗରେ ନାମ-ବାଣ । ସଙ୍ଗରେ ଇହକାଳର, ପରକାଳର ସାଥୀ ସୌମ୍ୟା ଲକ୍ଷ୍ମୀପ୍ରିୟା । ଲକ୍ଷ୍ମୀପ୍ରିୟା ତାଙ୍କର ରାଧିକା / ସାଧିକା / ପ୍ରେମିକା / ପ୍ରାଣାଧିକା । ଜଣେ ହେଉଛି ପିଣ୍ଡ, ଅନ୍ୟ ଜଣେ ହେଉଛି ପରାଣ ।

ବାଣୀକଣ୍ଠଙ୍କର ସଙ୍ଗୀତ ନ ଥିଲା ଅନେକ ସାଧାରଣ ସଙ୍ଗୀତଜ୍ଞଙ୍କ ଚଟୁଳ-ସଂଗୀତ । ତାହା ଥିଲା ଜନ-ଜଗତର ଚିର କଲ୍ୟାଣ, ଚିର ମଙ୍ଗଳମୟ ସଙ୍ଗୀତ । ସତେ ଯେମିତି ସେଥିରେ ଭରି ରହିଥିଲା, 'ସର୍ବେ ଭବନ୍ତୁ ସୁଖୀନଃ, ସର୍ବେ ସନ୍ତୁ ନିରାମୟା, ସର୍ବେ ଭଦ୍ରାଣି ପଶ୍ୟନ୍ତୁ, ମା କଶ୍ଚିଦ୍ ଦୁଃଖ ଭାଗ ଭବେତ୍ । ବାସ୍ତବିକ୍ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ଉତ୍କଳ ଜନନୀ ତାଙ୍କ ପରି ସୁପୁତ୍ରକୁ ପାଇ ସୁଧନ୍ୟା । ନିଜ ଜୀବନକୁ ସତେ ଯେମିତି ନର୍କରେ ପକାଇ, ଜଗତକୁ ଉଦ୍ଧାର କରିବା ପାଇଁ ସେ ସବୁବେଳେ ଜଗତର ନାଥ ଜଗନ୍ନାଥଙ୍କୁ କରୁଥିଲେ ବିନମ୍ର ଅଳି ଆଉ ଭକ୍ତ-ସମ୍ମୁଖରେ ତାଙ୍କ ନିକଟରେ ହେଉଥିଲେ ନିଉଛଳି ।

ମଣିଷ ଜୀବନ ପଦ୍ମ-ପତ୍ରର ନୀର ସଦୃଶ ହେଲେ ମଧ୍ୟ ଜଣେ ଜଣଙ୍କର ମହନୀୟ, ମହିମାମୟ ଜୀବନ ଜନଜଗତକୁ କରେ ଉଦ୍‌ବୁଦ୍ଧ, ପ୍ରଲୁବ୍ଧ ଏବଂ ବିମୁଗ୍ଧ । ସେ ପ୍ରକୃତରେ ଜନ୍ମେଜୟ । ଅଜାତ ଶତ୍ରୁ । ଏମିତି ଜୀବନ କ୍ୱଚିତ ଆସେ ଧରାକୁ । ହେଲେ ଗୋଟିଏ, ଗୋଟିଏ ଜୀବନକୁ ଶଙ୍ଖାଳି କରି ଦ୍ୟାବା-ପୃଥିବୀ ହୁଏ ଧନ୍ୟ ।

ସେଇମିତି ଜୀବନ-ଧାରା-ମଣିଷ ହେଉଛନ୍ତି ଭକ୍ତ ନିମାଇଁ ଚରଣ ହରିଚନ୍ଦନ । କୋଟି ହୃଦୟର ହରିଚନ୍ଦନ ସେ । କୋଟି ମନର ଅଧିନାୟକ ସେ । ସେ ସର୍ବ ଶ୍ରଦ୍ଧେୟ । ସେ ସର୍ବ ସମ୍ମାନନୀୟ ।

ବାଣୀକଣ୍ଠଙ୍କ ଚଲାପଥ ସଦା ଫୁଲ ଚନ୍ଦନିତ— ନ ହୋଇ ଥିଲେ ହେଁ, ପାର୍ଥିବ ବାଧା, ବିଘ୍ନ ତାଙ୍କର ପଦ ଚିହ୍ନକୁ ସମସ୍ତ ଉପରୁ ଲିଭାଇ ପାରିନି । ସେ ସ୍ୱଧର୍ମରେ ନିଧନ ହେବାକୁ ଶ୍ରେୟ ମଣିଛନ୍ତି ପଛକେ ପରଧର୍ମକୁ ସବୁବେଳେ ଭୟାବହ ମଣିଛନ୍ତି । ପରକୁ ଆପଣାର କରିବାର ପରମଗୁଣରେ ସେ ହୋଇଥିଲେ ଭୂଷିତ । ସୌଜନ୍ୟ ସ୍ନିଗ୍ଧତାର ସେ ଥିଲେ ପ୍ରତୀକ ।

ସେ ଭୋଗ, ବିଳାସ, ଅନୁଜ, ତନୁଜ, ଆତ୍ମୀୟମାନଙ୍କ ମଧ୍ୟରେ ସାଧାରଣ ସଂସାରୀ ପରି ଥିଲେ ହେଁ, ସେ ସଦା-ଥିଲେ ଉନ୍ମୁକ୍ତ ଓ ସତ୍ୟନିଷ୍ଠ ।

ସେ ଥିଲେ ଜଣେ ପରମ ଭକ୍ତ । ଭକ୍ତିରେ ବାନ୍ଧି ଥିଲେ ଶ୍ରୀବ ବନୋଦଆଙ୍କୁ । 'ଓଁ ନାଦ' ଭିତରେ ସେ ବନ୍ଦୀ କରିଥିଲେ ପ୍ରଣବ ମୂର୍ତ୍ତିଙ୍କୁ । ସେ ପ୍ରଣବ ରହସ୍ୟ ଭେଦ କରିବାକୁ ଧ୍ରୁବ ପରି ହୋଇ ଥିଲେ ଉନ୍ମନ । ଇଷ୍ଟମନ୍ତ୍ରକୁ ଇଚ୍ଛାରେ ଧରି ପାରୁଥିଲେ ସେ । ସେ ଥିଲେ ସିଦ୍ଧ । ସେ ଥିଲେ ପ୍ରବୁଦ୍ଧ । 'ହରିଓଁ' ସ୍ମରଣ କରି ସେ ହେଉଥିଲେ ପ୍ରମତ୍ତ ।

ଓଡ଼ିଶୀ ଛାନ୍ଦ, ଜଣାଣ, ଓ ଭଜନ ତାଙ୍କ ପାଇଁ ହୋଇଥିଲା ଧନ୍ୟ । ଓଡ଼ିଆ ଓ ଓଡ଼ିଶା ତାଙ୍କ ପାଇଁ ହୋଇଥିଲେ ଗର୍ବିତ ଓ ସମ୍ମାନିତ ।

ସେ ଯେତେ ବଡ଼ ମଣିଷ ଥିଲେ ହେଁ; ଆମର ଥିଲେ ଅଜା । ତାଙ୍କ କଥା ସବୁ ବେଳେ ମନେ ପଡ଼ୁଛି ।

କଳାଶ୍ରୀ କୁଟୀର, ଯୋବ୍ରା, କଟକ ।

# * ସଙ୍ଗୀତ ସମ୍ବନ୍ଧରେ ପଦେ

ଶ୍ରୀ ନିମାଇଁ ଚରଣ ହରିଚନ୍ଦନ

ବାରିପଦା ସାହିତ୍ୟ ସମାଜର ମାନନୀୟ ସଭାପତି ଓ ସହୃଦୟ ସୁଧିବୃନ୍ଦ,

ସଙ୍ଗୀତ ସମ୍ବନ୍ଧୀୟ ଗୋଟିଏ ସଂକ୍ଷିପ୍ତ ପ୍ରବନ୍ଧ ଓ ଓଡ଼ିଆ ସଙ୍ଗୀତର ବିଶେଷତ୍ୱ ବା ସ୍ୱାତନ୍ତ୍ର୍ୟ ସମ୍ବନ୍ଧରେ କିଛି ଲେଖିବା ପାଇଁ ମୁଁ ଏହି ସଭାର ସମ୍ପାଦକ ମହାଶୟଙ୍କ ଦ୍ୱାରା ଅନୁରୁଦ୍ଧ ହୋଇ ନିଜକୁ ଯେପରି ଭାଗ୍ୟବାନ ମନେ କରୁଅଛି, ସେହିପରି ସଙ୍ଗୀତ ଶାସ୍ତ୍ରର ଜ୍ଞାନବାରିଧି ନିକଟରେ ନିଜର ଅକିଞ୍ଚନତା ଅନୁଭବ କରି ଲଜ୍ଜିତ ହେଉଅଛି । ମୁଁ ଏ ବିଷୟରେ ନିତାନ୍ତ ଅକିଞ୍ଚନ ହେଲେ ମଧ୍ୟ, ଗୁଣ୍ଡୁଚି ମୂଷାର ସମୁଦ୍ର ବନ୍ଧନ କାର୍ଯ୍ୟରେ କ୍ଷୁଦ୍ର ଚେଷ୍ଟା ପରି ଆପଣମାନଙ୍କ ସ୍ନେହ ଦୃଷ୍ଟି ଯୋଗୁଁ ଯତ୍‌କିଞ୍ଚିତ୍ ମାତ୍ର ନିମ୍ନରେ ଲିପିବଦ୍ଧ କଲି ।

ସଙ୍ଗୀତ ସାହିତ୍ୟ ସମୁଦ୍ର ପରି ଅସୀମ ଓ ଅନନ୍ତ । ମନୁଷ୍ୟ କଥା ଦୂରରେ ଥାଉ, ଦେବଲୋକରେ ମଧ୍ୟ ଏହାର ପ୍ରକୃତ କଳନା କରାଯାଇ ପାରି ନାହିଁ । ଦେବ ହିନ୍ଦୁମାନଙ୍କ ମତରେ 'ଅପୌରୁଷେୟ' ବା ଈଶ୍ୱରଙ୍କର ଅନନ୍ତ ଭଣ୍ଡାର ଅଟେ । ବେଦର 'ସାମ ଗାନ' ଅନନ୍ତ କାଳରୁ ରହିଅଛି । ତେଣୁ ବେଦର କାଳ ବା ସମୟ ଠିକ୍ ରୂପେ ନିରୂପିତ ହେବା ଯେପରି ସୁକଠିନ, ସେହିପରି ସଙ୍ଗୀତର ଆଦି ଉତ୍ପତ୍ତିର କାଳ ବା ସମୟ ସଠିକ ନିରୂପଣ କରିବା ମାନବ ବୁଦ୍ଧିର ଅଗମ୍ୟ । ପୁରାଣ ମତରୁ ସଙ୍ଗୀତର ଉତ୍ପତ୍ତି ବିଷୟରେ ନାନା ପ୍ରକାର ମତ ଦେଖାଯାଏ । କେହି କେହି କହନ୍ତି ଯେ, ରାକ୍ଷସରାଜ ବୃତ୍ରାସୁର ଦେବତାମାନଙ୍କୁ ପରାଭବ ଦେବା ପାଇଁ ଦେବଲୋକ ଆକ୍ରମଣ କରିଥିଲେ । ସେହି ବୃତ୍ରାସୁରଙ୍କ ବଧ ପରେ ଦେବଗଣ ନୈସର୍ଗିକ ଆନନ୍ଦ ଉପଭୋଗ ପାଇଁ ଯେଉଁ ଗୀତ, ବାଦ୍ୟ ଓ ନୃତ୍ୟ କରିଥିଲେ, ଦେବଲୋକରେ ତାହା ହିଁ ସଙ୍ଗୀତ ରୂପରେ ପ୍ରଥମେ ଦେଖା ଦେଇଥିଲା । 'ଗୀତଂ ବାଦ୍ୟଂ ନର୍ତ୍ତନଞ୍ଚ ତ୍ରୟଂ ସଙ୍ଗୀତମୁଚ୍ୟତେ'— ଗାନ, ବାଦ୍ୟ ଓ ନୃତ୍ୟର ଏକତ୍ର ସମାବେଶ ସଙ୍ଗୀତ ନାମରେ ଅଭିହିତ ଅଟେ ।

ଆଉ କେହି କେହି କହନ୍ତି ଯେ ବ୍ରହ୍ମା ଏହି ସଙ୍ଗୀତର ପଥ ପ୍ରଦର୍ଶକ । ଭରତ ମହର୍ଷିଙ୍କ ଦ୍ୱାରା ଏହା ମହାଦେବଙ୍କ ନିକଟରେ ଅଭିନୀତ ହୋଇଥିଲା, ଯାହାକି ଲୋକସାଧାରଣଙ୍କର ମୁକ୍ତିପ୍ରଦ ଅଟେ । ଏହି ସଙ୍ଗୀତ 'ମାର୍ଗ' ନାମରେ କଥିତ ହୁଏ । ଯଥା :—

'ବ୍ରହ୍ମଣେନ ଯଦନ୍ୱିଷ୍ଟଂ
ପ୍ରଯୁକ୍ତଂ ଭରତେନ ଚ ।
ମହାଦେବସ୍ୟ ପୁରତ—
ସ୍ତନ୍ମାର୍ଗାଖ୍ୟଂ ବିମୁକ୍ତିଦଂ ।'

ଆଉ କୌଣସି କୌଣସି ପୁରାଣରୁ ଜଣାଯାଏ ଯେ, ମହର୍ଷି ନାରଦ ସଙ୍ଗୀତର ଏକମାତ୍ର ପ୍ରବର୍ତ୍ତକ ଏବଂ ପ୍ରଚାରକ ଅଟନ୍ତି, ଯଥା :—

'ଗାନ୍ଧର୍ବଂ ନାରଦୋ ବେଦ
ଭରଦ୍ୱାଜୋ ଧନୁର୍ଗ୍ରହଂ ।'

ନାରଦ ମହର୍ଷିଙ୍କ ପରେ ନାଟ୍ୟ ଶାସ୍ତ୍ର ପ୍ରଣେତା ଭରତ ଋଷି ସଙ୍ଗୀତାଚାର୍ଯ୍ୟ ପଦରେ ଆସୀନ ଥିଲେ । ତାଙ୍କ ପରେ କାଶ୍ୟପ ଓ ମତାଙ୍ଗ ପ୍ରଭୃତି ସଙ୍ଗୀତ ଶାସ୍ତ୍ରର ଆଲୋଚନା କରିଥିଲେ । ଗନ୍ଧର୍ବ ଓ କିନ୍ନର ପ୍ରଭୃତି ଏହି ସଙ୍ଗୀତ ଶାସ୍ତ୍ରର ପୃଷ୍ଠପୋଷକ ଅଟନ୍ତି । ମହାଭାରତ ବନପର୍ବରୁ ବୁଝାଯାଏ ଯେ, ଅର୍ଜ୍ଜୁନ ବିଶ୍ୱାବସୁ ପୁତ୍ରଙ୍କ ଠାରୁ ନୃତ୍ୟ, ଗୀତ ଓ ବାଦ୍ୟ ଏବଂ ସାମ ଗାନ ଯଥାଶାସ୍ତ୍ରରେ ଶିଖିଥିଲେ ଏବଂ ସେ 'ଗାନ୍ଧର୍ବ ବେଦ' ଲାଭ କରି କୃତକାର୍ଯ୍ୟ ହୋଇଥିଲେ । ପାଣ୍ଡବମାନଙ୍କ ବନବାସ ସମୟରେ ଅର୍ଜ୍ଜୁନ ଛଦ୍ମବେଶରେ ବିରାଟ ରାଜଗୃହରେ ବୃହନ୍ନଳା ରୂପରେ ରହି ବିରାଟ ରାଜନନ୍ଦିନୀ ଉତ୍ତରାଙ୍କୁ ସଙ୍ଗୀତ ଶିକ୍ଷା ଦେଇଥିଲେ ।

ଭାରତର ବୈଦିକ ଓ ପୌରାଣିକ ଯୁଗକୁ ବାଦ ଦେଲେ ମଧ୍ୟ ବୌଦ୍ଧ ଯୁଗରେ ଭାରତରେ ସଙ୍ଗୀତ ଶାସ୍ତ୍ରର ବିସ୍ତୃତ ଆଲୋଚନା ଥିବା 'ଜାତକଗ୍ରନ୍ଥ'ରୁ ପ୍ରମାଣ ମିଳଇ ।

କାଳିଦାସ, ଭବଭୂତି ଓ ବାଣଭଟ୍ଟ ପ୍ରଭୃତିଙ୍କ ନାଟକ-

ମାନଙ୍କରୁ ମଧ୍ୟ ତତ୍କାଳୀନ ସଙ୍ଗୀତ ଚର୍ଚ୍ଚାର ଉତ୍କୃଷ୍ଟ ପ୍ରମାଣ ମିଳେ ।

ପରବର୍ତ୍ତୀ ଇତିହାସ ଅନୁଶୀଳନ କଲେ ଜଣାଯାଏ ଯେ, ହିନ୍ଦୁ ଓ ମୁସଲମାନ ନରପତିଗଣ ଅନେକ କୃତବିଦ୍ୟ ସଙ୍ଗୀତଜ୍ଞଙ୍କୁ ସଭାସଦ୍ ରୂପରେ ଉଚ୍ଚ ସ୍ଥାନ ଦେଇଥିଲେ । ସମ୍ରାଟ ଆକବରଙ୍କ ସଭାସଦ୍ ତାନସେନ୍‌ଙ୍କର ସଙ୍ଗୀତ ଶାସ୍ତ୍ରରେ ଯେ ଅସାଧାରଣ କୃତିତ୍ୱ ଥିଲା, ତାହା ସର୍ବବିଦିତ ।

ଉପରଲିଖିତ କାରଣମାନଙ୍କରୁ ସ୍ପଷ୍ଟ ପ୍ରମାଣିତ ହୁଏ ଯେ, ସଙ୍ଗୀତ ଶାସ୍ତ୍ର ବହୁ କାଳରୁ ଭାରତବର୍ଷରେ ପ୍ରଚଳିତ ଅଛି । ସଂସ୍କୃତ ସାହିତ୍ୟରେ ସଂଗୀତ ସମ୍ବନ୍ଧୀୟ ଅସଂଖ୍ୟ ଗ୍ରନ୍ଥ ରହି ଏହାକୁ ଦୃଢ଼ ରୂପେ ପ୍ରତିପନ୍ନ କରୁଅଛି । ପ୍ରାଚୀନ ଗ୍ରୀସ୍ ୟୁରୋପୀୟ ସଭ୍ୟତାର ଜନ୍ମଭୂମି । ଗ୍ରୀସ ସଭ୍ୟତାର ବହୁ କାଳ ପୂର୍ବରୁ ଭାରତ ସଙ୍ଗୀତ ଶାସ୍ତ୍ରରେ ବହୁ ଉନ୍ନତି ଲାଭ କରିଥିଲା । ପ୍ରାଚୀନ ଗ୍ରୀକଗଣ ଭାରତରୁ ସଂଗୀତ ଶାସ୍ତ୍ରର ଆଲୋଚନା କରିଥିଲେ । ଆରବ ଓ ପାରସ୍ୟବାସୀମାନେ ଭାରତରୁ ସଂଗୀତ ଶିଖିଥିଲେ । ମୁସଲମାନ ସଭ୍ୟତା ଓ ବିଳାସିତା ପ୍ରାଚୀନ ଗ୍ରୀକ୍ ଓ ରୋମକମାନଙ୍କ ମନରେ ସଙ୍ଗୀତ ପ୍ରତି ଆକର୍ଷଣ ଜାତ କରିଥିଲା । କାରଣ ଲୋକ-ଚିତ୍ତ-ରଞ୍ଜନ ହିଁ ସଂଗୀତର ମୁଖ୍ୟ ଉଦ୍ଦେଶ୍ୟ ଅଟେ । ଯେଉଁ ସଂଗୀତ ଦ୍ୱାରା ଲୋକ-ରଞ୍ଜନ ନ ହୁଏ ତାହା, ସଂଗୀତ ନୁହଇ । ଯଥା :—

'ଗୀତ ବାଦିତ ନୃତ୍ୟାନାଂ
ରକ୍ତି ସାଧାରଣୋଗୁଣଃ
ଅତୋ ରକ୍ତି ବିହୀନଂ ଯତ୍
ତନ୍ନ ସଂଗୀତ ମୁଚ୍ୟତେ ।'

ସ୍ଥୂଳତଃ ସଂଗୀତ ଭାରତରୁ ପ୍ରଥମେ ଉତ୍ପତ୍ତି ହୋଇ ତା'ର ନିଜ ସମ୍ମୋହନ ଶକ୍ତି ଦ୍ୱାରା ପୃଥିବୀରେ ପରିବ୍ୟାପ୍ତ ହୋଇଅଛି ।

ସଙ୍ଗୀତ ସାଧାରଣତଃ ଦୁଇ ଭାଗରେ ବିଭକ୍ତ । ଯଥା— ସ୍ୱର ସଙ୍ଗୀତ ଓ ଯନ୍ତ୍ର ସଙ୍ଗୀତ । ଯାହା କଣ୍ଠନିଃସୃତ ତାହା ସ୍ୱର ସଙ୍ଗୀତ ଓ ଯାହାର ନାଦ ଯନ୍ତ୍ରରୁ ଉତ୍ଥିତ ହୁଏ, ତାହା ଯନ୍ତ୍ର ସଙ୍ଗୀତ ନାମରେ ଅଭିହିତ । ଏହା ପୁଣି ସା, ରି, ଗା, ମା, ପା, ଧା, ନି, ଏହି ରୂପରେ ଆରୋହଣ ଓ ଅବରୋହଣ ଭାବରେ ସାତ ପ୍ରକାର ଅଟଇ । ଏହି ସପ୍ତ ସ୍ୱର ସାତ ଗୋଟି ଜନ୍ତୁ ଠାରୁ ଗ୍ରହଣ କରାଯାଇଥିବାର ସଙ୍ଗୀତଜ୍ଞମାନଙ୍କ ଠାରୁ ଜଣାଯାଏ । ଏହି ସପ୍ତ ସ୍ୱରର ନିଷ୍ପନ୍ଦଣ ଦ୍ୱାରା ଛଅ ରାଗ ଓ ଛତିଶ ରାଗିଣୀର ଉତ୍ପତ୍ତି ହୋଇଅଛି । ପୁତ୍ର କନ୍ୟା ପରିବାର ରୂପରେ କେତେ ଯେ ଉପରାଗ ଓ ରାଗିଣୀ ଅଛି ତା'ର ସଂଖ୍ୟା ନାହିଁ । ହିନ୍ଦୀ ଭାଷାରେ ଲିଖିତ 'କୃଷ୍ଣାନନ୍ଦ' ବ୍ୟାସଦେବ ବିରଚିତ 'ରାଗ ସାଗରୋଦ୍ଭବ କଳ୍ପଦ୍ରୁମ' ନାମକ ଗୋଟିଏ ସୁବୃହତ୍ ଗ୍ରନ୍ଥରେ ପ୍ରତ୍ୟେକ ରାଗର ସ୍ତ୍ରୀ, ପୁତ୍ର, ପରିବାର ଏବଂ ତା'ର ମୂର୍ତ୍ତି ଓ ଉତ୍ପତ୍ତି ବିବରଣମାନ ଲିଖିତ ଅଛି । ଏହି ଗ୍ରନ୍ଥମାନଙ୍କରୁ ନାଦ ଓ ନାଦୋତ୍ପତ୍ତିର ପ୍ରକାର, ସ୍ୱର ବିବରଣ, ବାଦ୍ୟ ବିବରଣ, ମୂର୍ଚ୍ଛନା, କୂଟତାନ, ରାଗ ବିବରଣ, ଋତୁଭେଦ ରାଗ ରାଗିଣୀର ବିନିଯୋଗ ବିବରଣ, ରାଗାଦିର ଧ୍ୟାନ, ନର୍ତ୍ତନ ପ୍ରକରଣ ଆଦି ସଙ୍ଗୀତ ଶାସ୍ତ୍ରର ବହୁଳ ବିଷୟ ଜାଣିବାକୁ ମିଳେ ।

ମନୁଷ୍ୟ କଥା ଦୂରେ ଥାଉ, ପଶୁ ପକ୍ଷୀ ଏପରି କି ହିଂସ୍ର ପଶୁ ଓ ବିଷଧର ସର୍ପ ସୁଦ୍ଧା ସଙ୍ଗୀତ ଦ୍ୱାରା ବିମୁଗ୍ଧ ହୁଅନ୍ତି । ସଂଗୀତ ଶାସ୍ତ୍ରରେ ତାଳଜ୍ଞାନ ପରି କାଳଜ୍ଞାନ ନ ଥିଲେ ଆଳାପ ମନୋମୁଗ୍ଧକର ହୁଏ ନାହିଁ । ନିର୍ଦ୍ଦିଷ୍ଟ ସମୟରେ ନିର୍ଦ୍ଦିଷ୍ଟ ରାଗିଣୀ ଆଳାପ କରି ପାରିଲେ ପ୍ରକୃତି ସୁଦ୍ଧା ବଶୀଭୂତ ହୁଏ । କଥା ଅଛି 'ଦୀପକ' ରାଗ ଯଥା କାଳରେ ଠିକ୍ ଭାବରେ ଆଳାପ କରି ପାରିଲେ, ଶୂନ୍ୟରେ ନିଆଁ ଜଳି ଉଠେ । ଯଥାକାଳରେ 'ମେଘ ମହ୍ଲାର' ରାଗ ଆଳାପ କଲେ ଅସମୟରେ ବର୍ଷା ଋତୁର ଆବିର୍ଭାବ ହୁଏ । 'ବସନ୍ତ ରାଗ' କାଳଜ୍ଞାନ ଥାଇ ଠିକ୍ ଭାବରେ ଆଳାପ କରି ପାରିଲେ ଅକାଳରେ ବସନ୍ତ ଋତୁ ପ୍ରକାଶିତ ହୁଏ ।

ସଙ୍ଗୀତ ଶାସ୍ତ୍ରର ନିୟମ ସାଧନା ରୂପ ଅଭ୍ୟାସ ଯୋଗ ଦ୍ୱାରା ଚିତ୍ତର ସ୍ଥିରତା ଜନ୍ମି ମାନବ ସର୍ବଶ୍ରେଷ୍ଠ ମୁକ୍ତିର ଅଧିକାରୀ ହୁଏ । ସଂଗୀତ ଗାନ ଦ୍ୱାରା ଚିତ୍ତ ପ୍ରସନ୍ନ ହୁଏ । ମାନବ ପୂର୍ଣ୍ଣ ସ୍ୱାସ୍ଥ୍ୟ ଲାଭ କରେ । ସଂଗୀତ ଚର୍ଚ୍ଚା ଦ୍ୱାରା ନିଜର ମନ ଯେପରି ପ୍ରସନ୍ନ ରହେ, ଅନ୍ୟଙ୍କୁ ମଧ୍ୟ ସେହିପରି ପ୍ରସନ୍ନତା ଦିଏ । ସଂଗୀତରେ ସମ୍ମୋହନ ଶକ୍ତି ଅଛି, ସ୍ୱାସ୍ଥ୍ୟ

ଅଛି, ପ୍ରସନ୍ନତା ଅଛି, ଏପରିକି ଆଧ୍ୟାତ୍ମିକ ଭାବରେ ଦେଖିଲେ ମୁକ୍ତା ମୁକ୍ତି ସଂଗୀତଜ୍ଞଙ୍କର କରତଳଗତ ଅଟେ । ସଂଗୀତର ଏହି ମୁକ୍ତିଦ ଗୁଣ ହେତୁରୁ ଦେବର୍ଷି ନାରଦ ଏବଂ ସ୍ୱୟଂ ସରସ୍ୱତୀ ସର୍ବଦା ବୀଣାଯନ୍ତ୍ର ଧରି ଗାନତତ୍ପର ଥିବାର ବର୍ଣ୍ଣନା ଅଛି ।

ମୋ ଟ ଉପରେ ବୁଝି ଗଲେ ଏହି ବିଶ୍ୱ-ବ୍ରହ୍ମାଣ୍ଡ ସଂଗୀତମୟ ଅଟେ । ଗଗନ ପବନ ସବୁ ସେହି ବିଶ୍ୱ-ବିଧାତାଙ୍କର ମଧୁମୟ ସଂଗୀତରେ ମୁଖରିତ । ସାଗରର ଲହରୀ ଯେପରିକି ତାଳେ ତାଳେ ସେହି ସଂଗୀତର ପ୍ରତିଧ୍ୱନି କରୁଅଛି ।

ଉତ୍କଳ ସଂଗୀତର ବିଶେଷତ୍ୱ ବା ସ୍ୱାତନ୍ତ୍ର୍ୟ ଅମ୍ଭ-ମାନଙ୍କର ପ୍ରଧାନ ଆଲୋଚ୍ୟ ବିଷୟ । କିନ୍ତୁ ଏହି ଆଲୋଚନା ପୂର୍ବରୁ କହିଲେ ଅତ୍ୟୁକ୍ତି ହେବ ନାହିଁ ଯେ — ପଦ୍ୟ, ଛାନ୍ଦ ଚଉପଦୀ, ଡ଼ୁହା, ଭଜନ, ପ୍ରବଚନ, ଜଗନ୍ନମାଳ, ଦଳୁଆ ଗୀତ ଓ ଶଗଡ଼ିଆ ଗୀତ ଠାରୁ ପାଲା, ଶୋକ, ସୁଆଙ୍ଗ ଏପରି କି ଉନ୍ନତ ନାଟକ ପର୍ଯ୍ୟନ୍ତ କେହି ସଂଗୀତ କଳନା ବା ସୀମାରୁ ବହିର୍ଭୂତ ନୁହନ୍ତି । ଏଣୁ ଉତ୍କଳ ସାହିତ୍ୟରେ ବିଭିନ୍ନ ଶ୍ରେଣୀରେ ଯେ ସବୁ ସଂଗୀତ ଅଛି, ଅନ୍ୟ ପ୍ରତିବେଶୀ ସାହିତ୍ୟରେ ଏତେ ଉତ୍ତମର ସଙ୍ଗୀତ ଅଛି କି ନା ମୁଁ ଜାଣେ ନାହିଁ । ମୋଟ ଉପରେ ଆପଣମାନେ ପ୍ରାଚୀନ ଉତ୍କଳ ସାହିତ୍ୟ ପଢ଼ି ଯେ ପରିମାଣରେ ଆଖି ପକାଇ ପାରିବେ, ସେ ପରିମାଣରେ ଉତ୍କଳ ସଙ୍ଗୀତର ସ୍ୱାତନ୍ତ୍ର୍ୟ ଓ ବିଶେଷତ୍ୱ ହୃଦୟଙ୍ଗମ କରି ପାରିବେ । ବଳଭଦ୍ର କବିସୂର୍ଯ୍ୟ, ଗୋପାଳକୃଷ୍ଣ, ଅଭିମନ୍ୟୁ ସାମନ୍ତ ସିଂହାର, ବନମାଳୀ କବି ପ୍ରଭୃତିଙ୍କ ସଙ୍ଗୀତ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ଓ ମୌଳିକ ରାଗ ରାଗିଣୀ ପୂର୍ଣ୍ଣ । ଏଥିରେ କୌଣସି ମିଶ୍ର ରାଗିଣୀ ଥିଲା ପରି ମୁଁ ଜାଣେ ନାହିଁ । ବିଶେଷତଃ ଉତ୍କଳର କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ଛାନ୍ଦରେ ଯେ କ୍ଷମତାର ପରିଚୟ ଦେଇ ଅଛନ୍ତି, ଭାରତରେ କୌଣସି ଉନ୍ନତ ପ୍ରତିବେଶୀ ଭାଗ୍ୟରେ ଏପରି ଛାନ୍ଦ ସଙ୍ଗୀତର ଗବେଷଣା ଅଛି କି ନା ସନ୍ଦେହ । ଏକା ବୈଦେହୀଶ ବିଳାସ ପରି ଛାନ୍ଦ ଗ୍ରନ୍ଥ ସଂସ୍କୃତ ବ୍ୟତୀତ ଭାରତର କୌଣସି ଭାଷାରେ ଥିବାର ମୁଁ ଜାଣେ ନାହିଁ । ଆମ୍ଭେମାନେ ଯେ ପରିମାଣରେ ପାଶ୍ଚାତ୍ୟ ସଭ୍ୟତା ସମ୍ପର୍କରେ ଘନିଷ୍ଠ ଭାବେ ସଂପୃକ୍ତ ହେଉଥାଉଁ; ଏବଂ ବିଭିନ୍ନ ଭାଷାରେ ସଙ୍ଗୀତ ଆଲୋଚନା କରୁଥାଉ, ସେହି ପରିମାଣରେ କ୍ରମେ କ୍ରମେ ଅନୁକରଣପ୍ରିୟ ହୋଇ ଓଡ଼ିଆ ସଂଗୀତର ମୌଳିକତା ଓ ସ୍ୱାତନ୍ତ୍ର୍ୟ ହରାଉ ଥାଉଁ । ଅନ୍ୟ ଉନ୍ନତ ପ୍ରତିବେଶୀ ଭାଷାର ଭାବ ସମ୍ପଦ ଆହରଣ କରିବା ଦୋଷାବହ ନୁହେଁ । ବରଂ ଏପରି ଅନୁକରଣ ଦ୍ୱାରା ବିଶ୍ୱ ସାହିତ୍ୟ ଓ ବିଶ୍ୱଭାବ ସଂଗେ ନିଜକୁ ମିଶାଇ ଦେବାରେ କୃତିତ୍ୱ ଅଛି । କିନ୍ତୁ ଏଥି ପାଇଁ ନିଜର ରାଗ ରାଗିଣୀର ସ୍ୱାତନ୍ତ୍ର୍ୟ ହରାଇ ଅପରର ଉଚ୍ଛିଷ୍ଟ ଭୋଜନରେ ଉନ୍ନତ ହେବାରେ କିଛି ଲାଭ ଥିଲା ପରି ଜଣା-ଯାଏ ନାହିଁ । ଏହି ଅନ୍ଧ ଅନୁକରଣରୁ ଉତ୍କଳ ସଂଗୀତ ସାହିତ୍ୟରେ କ୍ରମେ ଯେ ମିଶ୍ର ସ୍ୱର ବା ଖେଚଡ଼ି ଉତ୍ପନ୍ନ ହେଉଅଛି ତହିଁରେ ଜାତିର ବର୍ଣ୍ଣସଙ୍କର ପରି ସ୍ୱରସଙ୍କରର ଦୋଷ ମଧ୍ୟ ଅନିବାର୍ଯ୍ୟ ହେଉଅଛି ।

ଉତ୍କଳର ପ୍ରାଚୀନ କାଳରୁ ସ୍ତ୍ରୀ ମହଲରେ ଯେ ସବୁ ଢଗଢ଼ମାଳି ଓ ଯୋଡ଼ା ଯୋଡ଼ି ହୋଇ ଶୋକଗୀତମାନ ରହିଅଛି, ତାହା କେବେ ସେ ବିସ୍ମୃତି ଗର୍ଭରେ ଲୀନ ହେଲାଣି, ତହିଁର କଳନା ନାହିଁ । ତଥାପି ମୁ[illegible]ନ୍ତ ସାହିତ୍ୟରେ ଯେ ସବୁ ଆଲୋକକୁ ଆସି ପାରି ଅଛି, [illegible]ରେ ଯେ କେତେ ସାର ଅଛି ଓ ଅନୁଭୂତି ପୂର୍ଣ୍ଣ ବିଜ୍ଞାନ [illegible]ଛି, ତାହାର ଇୟତ୍ତା ନାହିଁ । ପୂର୍ବେ ଓଡ଼ିଶାରେ ଯାହାର ଆଦର ଥିବା ସମୟରେ ଛାନ୍ଦ, ଚଉପଦୀ ପ୍ରଭୃତିର ବିସ୍ତାର ଆଲୋଚନା ହେଉଥିଲା । କ୍ରମେ ସଭ୍ୟତାର ସଂପର୍କରେ ଆସି ଆମ୍ଭେମାନେ ଅକର୍ମା ପାଲଟି ଯାଉଥାଉଁ ।

ଯନ୍ତ୍ରଙ୍କ ବେହେଲା, ସିତାର, ତାନ୍‌ପୁରା, ପ୍ରଭୃତି ବାଦ୍ୟ ସହ-ଯୋଗରେ ଲୋକେ ସଂଗୀତ ଚର୍ଚ୍ଚା ଓ ଆଳାପ କରୁଥିଲେ ଏବଂ ଅଳ୍ପ ଶ୍ରମସାଧ୍ୟ ହାର୍‌ମୋନିୟମ ସାହାଯ୍ୟରେ ଏ ସବୁର ଆଦର କମି ଯାଉଅଛି । ପୁଣି ଗ୍ରାମଫୋନ୍‌ର ପ୍ରଚଳନ ଧୀରେ ଦେଶରେ ବଢ଼ିବା ଦ୍ୱାରା କଣ୍ଠ ସଙ୍ଗୀତର ଆଦର କ୍ରମେ ଲୋପ ହେବାକୁ ବସିଲାଣି । ସେହି ଅଳ୍ପ ଶ୍ରମସାଧ୍ୟ ହାର୍‌ମୋନିୟମ ଯନ୍ତ୍ର ସାହାଯ୍ୟରେ ଗାନ କରିବା ପରିବର୍ତ୍ତେ ଗ୍ରାମ୍‌ଫୋନ ଗାନ ଶୁଣିବାକୁ ଲୋକେ ଏପରି ଅଭ୍ୟସ୍ତ ହେଲେଣି ଯେ, ଏ ବେଗ ବଢ଼ିଲେ ସଙ୍ଗୀତ ଚର୍ଚ୍ଚା କ୍ରମେ ଯେ ଲୋପ ପାଇବ, ଏପରି ଆଶଙ୍କା କରିବାରେ କୌଣସି ଭ୍ରମ ଥିଲା ପରି ବୋଧହୁଏ ନାହିଁ । ଏଣୁ ପ୍ରକୃତରେ ଏହା ଆମ୍ଭମାନଙ୍କ ପକ୍ଷେ 'ପ୍ରଗତି'ର ଯୁଗ ନା 'ପ୍ର' ଉପସର୍ଗର ବିଭିନ୍ନାର୍ଥ ହେତୁ ଆମ୍ଭମାନଙ୍କର ଏ ଗତି ଊର୍ଦ୍ଧ୍ୱ ଠାରୁ କ୍ରମେ ଅଧୋଗତି ଦିଗରେ ଅଧିକ ଅଗ୍ରସର ହେଉଅଛି, ତାହା ଅବଧାରଣ କରି ହୁଏ ନାହିଁ ।

ତଥାପି ସୁଖର ବିଷୟ ଯେ ଠିକ ସମୟରେ ଆମ୍ଭମାନଙ୍କ ଆଖି ଫିଟିଅଛି । ଆମ୍ଭେମାନେ ଭଗବତ୍ କୃପାରୁ ନିଜ ନିଜର ଭୁଲ ତ୍ରୁଟିପ୍ରତି ସାବଧାନ ହେବାକୁ ବସିଅଛୁଁ । ଉତ୍କଳର ଚତୁର୍ଦ୍ଦିଗରେ ଆଜି ସଙ୍ଗୀତର ଗବେଷଣା ଚର୍ଚ୍ଚା ଆରମ୍ଭ ହେଲାଣି । ଉତ୍କଳର ଭାଇ ଓ ଭଉଣୀମାନେ ଉତ୍କଳ ସଙ୍ଗୀତର ପ୍ରାଚୀନ ବିଭବ ଏବଂ ଗୌରବ ତ୍ରୁଟିପ୍ରତି ତାର ମୌଳିକତା ଓ ସ୍ୱାତନ୍ତ୍ର୍ୟ ରକ୍ଷା କରିବା ପାଇଁ କ୍ରମେ ବଦ୍ଧ-ପରିକର ହେଉଅଛନ୍ତି । ନାନା ସ୍ଥାନରେ ଉତ୍କଳ ସାହିତ୍ୟର ଆଲୋଚନା ସଙ୍ଗେ ସଙ୍ଗେ ସଙ୍ଗୀତ ଶାଖାର ଅନୁଷ୍ଠାନମାନ ସ୍ଥାପିତ ହେଉଅଛି ।

※ ୧୯୩୯ ରେ ଅନୁଷ୍ଠିତ ବାରିପଦା ସାହିତ୍ୟ ସମାଜର ଦ୍ୱିତୀୟ ବାର୍ଷିକ ଅଧିବେଶନରେ ପଠିତ ଓ 'ଭଞ୍ଜ ପ୍ରଦୀପ' ପଞ୍ଚମ ଭାଗ, ୪ର୍ଥ ସଂଖ୍ୟା, ଆଷାଢ଼ ୧୩୪୭ ସାଲର ପ୍ରଥମ ପୃଷ୍ଠାରେ ପ୍ରକାଶିତ ।

## * ମୋର ସଙ୍ଗୀତ ଶିକ୍ଷା

ମୋର ସଙ୍ଗୀତ ଶିକ୍ଷରେ ପ୍ରଥମେ ମନ ବଳିଲା । ଆମର ଇଷ୍ଟ ଦେବତା ଶ୍ରୀ ଶ୍ରୀ ରାଧାଗୋବିନ୍ଦ ଜୀଉଙ୍କ ମନ୍ଦିରରେ ଆରତି କୀର୍ତ୍ତନରେ ମୃଦଂଗ ବଜାଇବା ଶିକ୍ଷା କଲି । ସ୍ୱ ୧୯୧୬ ମସିହାରେ ମୋର ପିତୃବ୍ୟ ଓଡ଼ିଶାର ପ୍ରଖ୍ୟାତ ସଂଗୀତଜ୍ଞ ଶ୍ରୀ ଗୋକୁଳଚନ୍ଦ୍ର ଶ୍ରୀଚନ୍ଦନ ମୋର ପ୍ରଥମ ଗୁରୁ । ତାଙ୍କ ଠାରୁ ହାରମୋନିୟମ ଓଡ଼ିଶୀ, ଛାନ୍ଦ, ଜଣାଣ ଶିକ୍ଷା-କଲି । ତା' ପରେ କେନ୍ଦ୍ରାପଡ଼ାର ଅଭିରାମ ପାଣ୍ଡିଙ୍କ ଠାରୁ କିଛି ଦିନ ସଂଗୀତ ଶିକ୍ଷା କଲି । ତା' ପରେ କଟକର ବିଖ୍ୟାତ ତବଲାବାଦକ ଜଗମୋହନ ନାୟକଙ୍କ ଠାରୁ ତବଲା ଶିକ୍ଷା କଲି । ଶ୍ରୀ ଗୋବିନ୍ଦ ଚନ୍ଦ୍ର ସୁରଦେଓଙ୍କର ଲୀଳାରେ କିଛିଦିନ ତବଲା ବଜାଇଲି ।

ସ୍ୱ ୧୯୨୨ ମସିହାରେ କଟକର ହିନ୍ଦୁସ୍ଥାନ ଓସ୍ତାଦ୍ ମାଧୋ ରାଓ ଯାହାଙ୍କର ପୁତ୍ର ବିଶ୍ୱନାଥ ରାଓ କଟକ ରେଡ଼ିଓ ଷ୍ଟେସନରେ ସଂଗୀତ ପରିବେଷଣ କରୁଛନ୍ତି, ସେହି ମାଧୋ ରାଓ ମୋତେ ହିନ୍ଦୁସ୍ଥାନ କ୍ଲାସିକାଲ ସଂଗୀତ ଶିକ୍ଷା ଦେଇ ମୋର ଗଳାକୁ ସୁରସଂପର୍ଣ୍ଣ କରାଇଥିଲେ । ତାହାଙ୍କୁ ମୁଁ ଜୀବନରେ ଭୁଲି ପାରିବି ନାହିଁ ।

ସ୍ୱ ୧୯୩୧ ଠାରୁ ୩୨ ମସିହା ପର୍ଯ୍ୟନ୍ତ କଟକର ବଡ଼ ବଡ଼ ଲୋକଙ୍କ ଘରେ ଝିଅମାନଙ୍କୁ ସଂଗୀତ ଶିକ୍ଷା ଦେଉ-ଥିଲି । ୧୯୩୩ ରୁ ୧୯୬୬ ପର୍ଯ୍ୟନ୍ତ ଗ୍ରାମ୍‌ଫୋନ୍ କମ୍ପାନୀ ହିଜ୍‌ମ ଷ୍ଟରସ୍ ଭଏସରେ ଗୀତମାନ ରେକର୍ଡ଼ିଂ କରିଥିଲି, ପ୍ରାୟ ଏକଶତ ଖଣ୍ଡ ରେକର୍ଡ଼ରୁ ଅଧିକ ହେବ । ୧୯୩୪ ରେ ଗ୍ରାମଫୋନ୍ କମ୍ପାନୀ ହିଜ୍ ମାଷ୍ଟରସ୍‌ଭଏସ ମୋର କଣ୍ଠସ୍ୱରରେ ମୁଗ୍ଧ ହୋଇ, 'ବାଣୀକଣ୍ଠ' ଉପାଧିରେ ଭୂଷିତ କରିଥିଲେ ।

୧୯୩୮ ମସିହାରେ ଅଲ୍‌ଇଣ୍ଡିଆ ରେଡ଼ିଓ କଲିକତାରେ ଗୀତ ଗାଇଥିଲି । ସ୍ୱ ୧୯୩୮ ରେ ଉତ୍କଳ ସାହିତ୍ୟ ସମାଜ ଛାନ୍ଦ ପ୍ରତିଯୋଗିତାରେ ଗଜପତି ରାମଚନ୍ଦ୍ର ଦେବଙ୍କ ସ୍ୱର୍ଣ୍ଣ-ପଦକ ଲାଭ କରିଥିଲି । ଦିଲ୍ଲୀର ଲାଲକିଲ୍ଲା ଓ କାମଠପଦ-ପୁର ଆଉ ଅନେକ ଯାଗାରେ ସଂଗୀତ ପରିବେଷଣ କରି ମାନପତ୍ର ମାନ ପାଇଅଛି । ସ୍ୱ ୧୯୪୭ ରୁ କଟକ ରେଡ଼ିଓ ଷ୍ଟେସନ ଆରମ୍ଭ ଦିନ ଠାରୁ ଗୀତମାନ ଗାଇ ଆସୁଅଛି । ମୋର ଗୋଟିଏ ବିଶେଷ ଦାବୀ ଏ ପର୍ଯ୍ୟନ୍ତ ମୋର ପ୍ରୋଗ୍ରାମ ଥିବା ଦିନ ଅନୁପସ୍ଥିତ ହୋଇନାହିଁ ।

— ବାଣୀକଣ୍ଠ

●

※ ୧୯୭୦-୭୧ କେନ୍ଦ୍ରାପଡ଼ା ବିଶେଷାଙ୍କ 'ବଳୟ' ଷଷ୍ଠ ସଂଖ୍ୟା ୨୯ ପୃଷ୍ଠାରେ ପ୍ରକାଶିତ ।

# * ଦାନବୀର ରାଧାଶ୍ୟାମ ନରେନ୍ଦ୍ର

ଶ୍ରୀ ନିମାଇଁ ଚରଣ ହରିଚନ୍ଦନ

ଶ୍ରୀ ରାଧାଶ୍ୟାମ ନରେନ୍ଦ୍ର (୧୮୦୭-୧୮୬୭) ଉତ୍କଳର ପ୍ରଖ୍ୟାତ ଦାନଶୀଳ ଜମିଦାର ଓ ପୁଣ୍ୟବନ୍ତ ବ୍ୟକ୍ତି । ଧନ ସମ୍ପଦ, ପ୍ରଭାବ, ପ୍ରତିପତ୍ତି ଓ ମହାନୁଭବତା ଯୋଗୁଁ ତାଙ୍କ ଜୀବନକାଳରେ ଓଡ଼ିଶାରେ ପ୍ରବାଦ ହୋଇ ଯାଇଥିଲା 'ସ୍ୱର୍ଗରେ ଇନ୍ଦ୍ର, ମର୍ତ୍ତ୍ୟରେ ନରେନ୍ଦ୍ର' । ସେ କେନ୍ଦ୍ରାପଡ଼ାର ବିଖ୍ୟାତ ଜମିଦାର ବଂଶରେ ଜନ୍ମିଥିଲେ । ତାଙ୍କ ବଂଶରେ ଆଦିପୁରୁଷ କୃରୂପ ଜେନା ଯାଜପୁର ସବ୍‌ଡିଭିଜନରେ ଥିବା ପାଣିକୋଇଲି ଗ୍ରାମରୁ ଆସି ନିଜର ଅଧ୍ୟବସାୟ ବଳରେ ଏବଂ ଗଜପତି ରାଜା ୨ୟ ରାମଚନ୍ଦ୍ର ଦେବଙ୍କ ଅନୁଗ୍ରହରେ ଜମିଦାର ହୋଇ ପାରିଥିଲେ । ତାଙ୍କ ପୁତ୍ର ଗୋବିନ୍ଦ ଜେନା ପିତା ଗୋବିନ୍ଦଙ୍କ ସତ୍‌ରକ୍ଷା କରିବା ନିମନ୍ତେ ତାଙ୍କ ପୁତ୍ର ସଦାଶିବ ଜେନା ବଂଶର ଇଷ୍ଟଦେବତା ଗୋବିନ୍ଦ ଜୀଉଙ୍କୁ ପ୍ରତିଷ୍ଠିତ କରିଥିଲେ । ସଦାଶିବ ଜେନାଙ୍କ ପୁତ୍ର ହିଁ ରାଧାଶ୍ୟାମ ଜେନା । ସେ ଗଜପତି ରାଜା ମୁକୁନ୍ଦ ଦେବଙ୍କ ଦରବାରରେ ସମ୍ମାନିତ ହୋଇ ସେଠାରୁ ନରେନ୍ଦ୍ର ଉପାଧି ଲାଭ କରିଥିଲେ ଏବଂ ପରେ ରାଧାଶ୍ୟାମ ନରେନ୍ଦ୍ର ନାମରେ ଓଡ଼ିଶାରେ ସୁପରିଚିତ ହୋଇଥିଲେ । ତାଙ୍କ ସ୍ତ୍ରୀଙ୍କ ନାମ କୃଷ୍ଣପ୍ରିୟା । ତାଙ୍କର ଏକମାତ୍ର କନିଷ୍ଠା ଭଗିନୀ ବିମଳା ଦେବୀ ଉତ୍କଳର ବିଖ୍ୟାତ କବି ସାମନ୍ତସିଂହାର ଅଭିମନ୍ୟୁଙ୍କର ସହଧର୍ମିଣୀ ହୋଇଥିଲେ । ରାଧାଶ୍ୟାମ ୧୮୦୭ ରେ ଜନ୍ମ ଗ୍ରହଣ କରିଥିଲେ । ରାଧାଶ୍ୟାମ, ବିମଳା ଏବଂ ଗୌରଶ୍ୟାମ ଏହି ତିନୋଟି ସନ୍ତାନଙ୍କୁ ପିତା ସଦାଶିବ ପଣ୍ଡିତ ରଖାଇ ଶିକ୍ଷାଦାନ କରିଥିଲେ ।

ସେତେବେଳକୁ ପୁରୀ ରଥଯାତ୍ରାକୁ ସହସ୍ର ସହସ୍ର ଯାତ୍ରୀ, ସାଧୁ ସନ୍ଥ ଗ୍ରୁଲ ଗ୍ରୁଲ ବାଟରେ ଗୋଟିଏ ଗୋଟିଏ ଚଟିରେ ବିଶ୍ରାମ କରି କରି ଆସୁଥିଲେ । ରାଧାଶ୍ୟାମଙ୍କ ଉଦାରତା ଏବଂ ଦାନଶୀଳତା ଯୋଗୁଁ ନରେନ୍ଦ୍ରଙ୍କ ରାଧାଗୋବିନ୍ଦ ମନ୍ଦିର ଗୋଟିଏ ବିରାଟ ଚଟିରେ ପରିଣତ ହୋଇଥିଲା । ସେଠାରେ ଯାହାର ଯେପରି ପ୍ରୟୋଜନ ହେଉପରି ଖାଦ୍ୟପେୟ ଆଦି ଯୋଗାଇ ଦିଆଯାଉ ଥିଲା । ଯତ୍ନ ଏବଂ ଆତିଥ୍ୟର କୌଣସି ଅଭାବ ଘଟୁ ନ ଥିଲା । ସହସ୍ର ସହସ୍ର ସାଧୁ ନରେନ୍ଦ୍ରଙ୍କ ରାଧାଗୋବିନ୍ଦ ମନ୍ଦିର ମଧ୍ୟରେ ଚତୁର୍ମାସ୍ୟ ବ୍ରତ ପାଳନ ପାଇଁ ଉପସ୍ଥିତ ହେଉଥିଲେ । ହାତୀ, ଓଟ ଓ ଘୋଡ଼ା ଆଦି ଘେନି ଗୁରୁଆଡ଼ର ସାଧୁମାନେ ନିଜ ନିଜ ପନ୍ଥାରେ ସ୍ୱତନ୍ତ୍ର ରହି ଧର୍ମ ଆଚରଣ କରନ୍ତି । ଆଷାଢ଼ ମାସର ଶୁକ୍ଳ ଏକାଦଶୀ ଠାରୁ କାର୍ତ୍ତିକ ଏକାଦଶୀ ପର୍ଯ୍ୟନ୍ତ ଚତୁର୍ମାସ୍ୟ ବ୍ରତ ପ୍ରତିପାଳିତ ହୁଏ । ବିଭିନ୍ନ ଦଳରେ ୫୦ ରୁ ୧୦୦ ଜଣାଯାଏ ସାଧୁ ଥା'ନ୍ତି । ସେମାନେ ହୋମ କରିବେ, ଠାକୁର ପୂଜା କରିବେ ଏବଂ ସେଥିପାଇଁ ବିଭିନ୍ନ ବ୍ରତ ଓ ଉପବାସ ତିଥିରେ ନାନା ଶୀତଳ ମଣୋହି ଅନ୍ନ, ବ୍ୟଞ୍ଜନ ତସ୍ପୈ ମାଲପୂଆ ଆଦି ଉତ୍କୃଷ୍ଟ ଖାଦ୍ୟ ଦ୍ରବ୍ୟମାନ ପ୍ରସ୍ତୁତ ହୁଏ । ସମସ୍ତ ବ୍ୟୟ ନରେନ୍ଦ୍ରଙ୍କ ଘର ବହନ କରନ୍ତି । ଏପରିକି ନନ୍ଦ ଉତ୍ସବ, ଗୋବର୍ଦ୍ଧନ ଉତ୍ସବ ଦିନ ପର୍ବତ ପ୍ରମାଣ ଅନ୍ନ, ବ୍ୟଞ୍ଜନ, ସରପୁଲି, କାକରା, ପୁରି ଲଡ଼ୁ, ଖଜା ପିଠା ଆଦି କରାଇ ହଜାର ହଜାର ଲୋକଙ୍କୁ ଦିଆଯାଏ । ଉପରୋକ୍ତ ସାଧୁମାନେ ଚତୁର୍ମାସ୍ୟ ବ୍ରତ ସମାପନ କରି ବିଦାୟ ନେଲାବେଳେ ନରେନ୍ଦ୍ର ପ୍ରତ୍ୟେକଙ୍କୁ ଗୋଟିଏ କମ୍ବଳ ଓ ଗୋଟିଏ ଲୋଟା ଦାନ କରି ବିଦାୟ ଦେଉଥିଲେ ।

ଏହିସବୁ ଦୃଷ୍ଟିରୁ ବିଚାର କଲେ ରାଧାଶ୍ୟାମ ନରେନ୍ଦ୍ରଙ୍କ ପରି ଦାତା ଓ ବଦାନ୍ୟ ବ୍ୟକ୍ତି ସେ କାଳରେ ବାସ୍ତବିକ ଆଉ ଦ୍ୱିତୀୟ କେହି ନ ଥିଲେ । ଦରିଦ୍ର, ବିଧବା, ଅନାଥ, କ୍ଳିଷ୍ଟ, ଅଭାବଗ୍ରସ୍ତ ଓ ଦୁର୍ଦ୍ଦଶାଗ୍ରସ୍ତ ଏବଂ କର୍ମହୀନ ଅବସ୍ଥାରେ ଯେ ତାଙ୍କ ନିକଟରେ ପହଞ୍ଚି ପାରୁଥିଲେ ସେ ନିଶ୍ଚୟ ତା'ର ଦୁଃଖ ନିବାରଣ କରିପାରୁଥିଲେ । ପର ଦୁଃଖରେ ବିଚଳିତ ହେବାରୁ ତାଙ୍କୁ ଦୟାସାଗରେ କହିଲେ ଅତ୍ୟୁକ୍ତି ହେବନାହିଁ । କେବଳ ଧନ ଦାନ କରିବା ଯୋଗୁଁ ନୁହେଁ, ପ୍ରତିପତ୍ତି ଏବଂ ବିଚକ୍ଷଣ ବୁଦ୍ଧି ଯୋଗୁଁ ସେ ତତ୍‌କାଳୀନ ଜନ ସମାଜରେ ଯେପରି ପ୍ରଚୁର ଶ୍ରଦ୍ଧା ଓ ସମ୍ମାନ ଲାଭ କରିଥିଲେ; ଇଂରେଜ ସରକାରଙ୍କ ଦ୍ୱାରା ମଧ୍ୟ ସେହିପରି ସମ୍ମାନିତ ହୋଇଥିଲେ ।

ରାଧାଶ୍ୟାମଙ୍କ ଜୀବିତାବସ୍ଥାରେ ଓଡ଼ିଶାରେ ନଅଙ୍କ ଦୁର୍ଭିକ୍ଷ ପଡ଼ିଥିଲା । ଏ ଦୁର୍ଭିକ୍ଷ ପଡ଼ିବାର କିଛି କାଳ ପୂର୍ବରୁ ସେ ପୁଣ୍ୟ ଭୂମି ବୃନ୍ଦାବନକୁ ତୀର୍ଥ ଯାତ୍ରାରେ ଯାଇ ସେଠାରେ ଅବସ୍ଥାନ କରୁଥିଲେ । କରାଳ ଦୁର୍ଭିକ୍ଷ ସମ୍ବାଦପତ୍ରରୁ ଅବଗତ ହୋଇ ସେ ଦୁଃଖିତ ହେଲେ ସତ୍ୟ, ବୃନ୍ଦାବନର ମୋହକାରୀ ମାୟା ତାଙ୍କ ଭଳି ଭକ୍ତଙ୍କୁ ଛାଡ଼ି ଦେଲା ନାହିଁ । ନିଜର ଏକମାତ୍ର ପୁତ୍ର ଜଗନ୍ନାଥ ଭ୍ରମରବରଙ୍କୁ ଏବଂ ପୁତୁରା ରାମଗୋବିନ୍ଦଙ୍କୁ ସେ ଦୁଇଟି ଚିଠି ଲେଖିଥିଲେ । ଦୁଇଟି ଚିଠିରେ ଏହି ମର୍ମରେ ଏକା କଥା ଥିଲା—'ବାବା ! ବଡ ଦୁର୍ଯୋଗ ସମସ୍ତ ବର୍ତ୍ତମାନ ଦେଶ ପାଇଁ ଆସିଛି । ତୁମ୍ଭେ ଏପରି ସୁବିଧା ଅଉ ପାଇବ ନାହିଁ, ତେଣୁ ଏ ସମୟରେ ଯାହା ଶସ୍ତା ଦେଖିବ ତାହା ଖରିଦ କରିବ ।

ଏହି ଚିଠି ପାଇ ତାଙ୍କ ପୁତୁରା ରାମଗୋବିନ୍ଦ ଶସ୍ତାରେ ସୁନା ମିଳୁ ଥିବାରୁ ଧାନ ଚାଉଳ ବଦଳରେ ପ୍ରାୟ ଏକ-ଲକ୍ଷ ଟଙ୍କାର ସୁନା ଖରିଦ କରିନେଲେ । ଧାନ ଦଶ-ଗୌଣୀ ଦେଲେ ହାରଟିଏ କି ମୁଦିଟିଏ । କିଏ ଏ ସୁବିଧା ଛାଡ଼େ ।

କିନ୍ତୁ ତାଙ୍କ ପୁଅ ଚିଠିର ମର୍ମ ଅନ୍ୟ ପ୍ରକାରରେ ବୁଝିଲେ ଏବଂ ଘୋର ଦୁର୍ଭିକ୍ଷ ସମୟରେ ଧାନ ଓ ଅନ୍ନଜାତ ନିର୍ବିଶେଷରେ ସମସ୍ତଙ୍କୁ ଭୂରି ଭୋଜନ ଦାନ କରି ଅତି ଶସ୍ତାରେ ଯାହା ସବୁ ପୁଣ୍ୟ ସଞ୍ଚୟ କରି ହେବ ବୋଲି ସ୍ଥିର କଲେ । ତେଣୁ ସେ ସମ୍ପତ୍ତି ଦାନରେ ଉଜାଡ଼ କରି ଦେଲେ । ନରେନ୍ଦ୍ର ତୀର୍ଥରୁ ଫେରି ପୁଅର ଏଭଳି କାର୍ଯ୍ୟରେ ଏତେ ଆନନ୍ଦିତ ହୋଇଗଲେ ଯେ, ତାକୁ କୁଣ୍ଢାଇ ଧରି କହିଲେ—'ତୁ ମୋହର ପ୍ରକୃତ ଆତ୍ମା । ମୋ ବଂଶର ତୋ ଠାରେ ସମ୍ପୂର୍ଣ୍ଣ ପ୍ରତିଫଳିତ ହୋଇଅଛି । ତୋ ଯୋଗୁଁ ମୁଁ ଧନ୍ୟ ହେଲି ।' ପୁତୁରାକୁ କହିଲେ—ତୁ ଯେ ଯାହା ଶସ୍ତାରେ କିଣିଛୁ ତାହା ତୁମକୁ ସ୍ୱଳ୍ପ କାଳ କାଳ ହେବ ।

ରାଧାଶ୍ୟାମ ନରେନ୍ଦ୍ର ବଡ଼ କୋଠା ତିଆରି କରି-ଥିଲେ । କେନ୍ଦ୍ରାପଡ଼ାର ପ୍ରସିଦ୍ଧ ବଡ କୋଠା ଯାହାକୁ କି ରାଧାଶ୍ୟାମ ନରେଂନ୍ଦ୍ର ଊଣାଇଶି ଶତାବ୍ଦୀରେ ନିର୍ମାଣ କରି-ଥିଲେ, ତାହା ଆଜି ସୁଦ୍ଧା ଜୀର୍ଣ୍ଣଶୀର୍ଣ୍ଣ ଅବସ୍ଥାରେ ନରେଂନ୍ଦ୍ର-ଙ୍କର ସ୍ମୃତି ସ୍ତମ୍ଭ ରୂପେ ବିରାଜିତ ରହିଅଛି । ଏହିପରି ଦାନ ପୁଣ୍ୟରେ ବ୍ରତୀ ହୋଇ ରାଧାଶ୍ୟାମ ୧୮୭୭ ମସିହା ନଭେମ୍ବର ୧୭ ତାରିଖରେ ଇହଲୀଳା ସମ୍ବରଣ କରିଥିଲେ । ତାଙ୍କ ମୃତ୍ୟୁ ଖବର ସମସ୍ତ ଉତ୍କଳକୁ ବ୍ୟଥିତ ଏବଂ ଶୋକାତୁର କରି ଦେଇଥିଲା ।

ନରେଂନ୍ଦ୍ରଙ୍କ ପୁତ୍ର ଜଗନ୍ନାଥ ଭ୍ରମରବରଙ୍କ ପାଞ୍ଚପୁତ୍ର ଓ ଏକମାତ୍ର କନ୍ୟା ଥିଲେ । ପୁତ୍ରମାନେ ଗଜପତି ମହାରାଜାଙ୍କ ଦରବାରରୁ ପଦମାନରେ ଭୂଷିତ ହୋଇଥିଲେ ।

୧-ମ ବଳରାମ ଭ୍ରମରବର ରାୟ, ୨-ୟ ଶ୍ୟାମସୁଂଦର ନରେଂନ୍ଦ୍ର, ୩-ୟ ବ୍ରଜସୁଂଦର ମର୍ଦ୍ଦରାଜ, ୪-ର୍ଥ ବୃଂଦାବନଚାଂନ୍ଦ୍ର ହରିଚଂଦନ, ୫—ଗୋକୁଳ ଚଂନ୍ଦ୍ର ଶ୍ରୀଚଂଦନ, ତାଙ୍କର କନ୍ୟା ସୁଲକ୍ଷଣା ଦେବୀ ତତ୍କାଳୀନ ରେଢ଼ଙ୍ଗ ବକ୍ସିଙ୍କୁ ବିବାହ କରିଥିଲେ ।

ନରେଂନ୍ଦ୍ରଙ୍କ ବଂଶରେ ବର୍ତ୍ତମାନ ଜୀବିତ ଥିବା ବହୁ ପ୍ରଖ୍ୟାତ ବ୍ୟକ୍ତିଙ୍କ ମଧ୍ୟରେ ବାଣୀକଣ୍ଠ ଶ୍ରୀ ନିମାଇଁ ଚରଣ ହରିଚଂଦନ ଏବଂ ଶ୍ରୀଯୁକ୍ତ ହରିହର ସିଂହ ମର୍ଦ୍ଦରାଜ, ଶ୍ରୀ ଦାମୋଦର କୁମାର ମର୍ଦ୍ଦରାଜ, ସ୍ୱର୍ଗତ ସଙ୍ଗୀତଜ୍ଞ ଗୋକୁଳ ଚଂନ୍ଦ୍ର ଶ୍ରୀଚଂଦନ ଓଡ଼ିଶାରେ ପରିଚିତ ।

●

* ୧୯୭୦-୭୧ କେନ୍ଦ୍ରାପଡ଼ା ବିଶେଷାଙ୍କ 'ବଳସ୍ୱ' ଷଷ୍ଠ ସଂଖ୍ୟା, ୨୭ ପୃଷ୍ଠାରେ ପ୍ରକାଶିତ ।



# ହରଚନ୍ଦନଙ୍କ ରଚିତ କେତୋଟି ଜଗନ୍ନାଥ ଜଣାଣ

## ॥ ମଣିମା ॥

ମଣିମା, ତୁମ୍ଭ ଶ୍ରୀମୁଖ ଚାହିଁଲେ ମଣିମା
ସବୁ ଦୁଃଖ ପ୍ରଭୁ ହଏ ପାଶୋରି ହେ ମଣିମା । ॥ ଘୋଷା ॥

ଆରତ ତାରଣ ବାନା ଉଡ଼ାଇ
ଆରତର ଦୁଃଖ ହଅ ଏଡ଼ାଇ । ॥୧॥

ବଡ଼ ଦେଉଳରେ ବସି ଗୋସାଇଁ
ଦୁଃଖୀ ଦୁଃଖ ଦେଖି ପାର କି ନାହିଁ । ॥ ୨ ॥

ଦେଖି ନ ଦେଖିଲା ପରି ବସିଲେ
ଆଉ କିଏ ପ୍ରଭୁ ଦେଖିବ ଭଲେ ? ॥ ୩ ॥

ଶୁଣ ବା ନ ଶୁଣ କରେ ଗୁହାରି
ଦିନ ସରି ଯାଉ ଚରଣ ଧରି । ॥ ୪ ॥

❋

## ॥ ଆହେ ଚକାଆଖି ॥

ଆହେ ଚକା ଆଖି,
ଆହେ ଚକା ଅଖି,
ତୁମକୁ ଯେ ଥରେ ହଏ ଦେଖି
ତା' ହୃଦ ପଟରେ ରୁହ ଲେଖି । ॥ ଘୋଷା ॥

ମଙ୍ଗଳ ଆଳତି ବେଶ ଦେଖି
ପଲକ ନ ପଡ଼େ ମୋର ଆଖି
ଯେବେ ଦେଖୁଥିଲେ ନୂଆ ହସୁ ଥାଅ
ସେ ରୂପରେ ଆଖି ରହେ ଲାଖି । ॥ ୧ ॥

ବଳସ୍ତାର ଦୁଇ ଭୁଜ ଦେଖି
ମନେ ମନେ ହୁଏ ମୁହିଁ ସୁଖୀ
କେତେ ପାପୀ ତାପୀ ଡାକୁଅଛ ବସି
ହସି ହସି ଦୁଇ ବାହୁ ଟେକି । ॥ ୨ ॥

ଚନ୍ଦନ ବୋଲା ସେ ମୁଖ ଦେଖି
ଲାଖି ରହେ ପ୍ରଭୁ ମୋର ଆଖି
ସବୁ ଦୁଃଖ ଶୋକ ଭୁଲି ଯାଏ ମୁହିଁ
କଳା ଶ୍ରୀମୁଖର ହସ ଦେଖି । ॥ ୩ ॥

ଚକାଡୋଳା ଭକ୍ତ ସବେ ଭୋଳା
ଏ ଭବ ସାଗରେ ତୁମେ ଭେଳା
ତୁମ ନାମ ଧରି ହୋଇଯିବ ପାରି
ତୁମ ଶ୍ରୀଚରଣେ ଶିର ରଖି । ॥ ୪ ॥

❋

## ॥ ମହାପ୍ରଭୁ ॥

ମହାପ୍ରଭୁ ! କିମ୍ପା ନ ଶୁଣ ଡାକ
ଶୁଣୁଥିଲେ ଡାକ ନ ଥାନ୍ତା ଦୁଃଖ । ॥ ଘୋଷା ॥

ଗଜ ଡାକ ଦେଲା ଘୋର ଜଳରେ
ପାଞ୍ଚାଳି ଡାକିଲା କୁରୁ ସଭାରେ
ହରିଣୀ ଡାକିଲା ଘୋର ବନରେ
ପ୍ରଭୁ ଶୁଣି ସେ ଡାକ
ନିମିଷକେ ହରି ନେଲ ତା' ଦୁଃଖ । ॥ ୧ ॥

ଅଜାମିଳ ଡାକ ଦେଲା ପୁଅରେ
'ନାରାୟଣ' ବୋଲି ଅନ୍ତ ପାଖରେ
ମରଣ ହୋଇଲା ଡାକ ତାହାରେ
ପ୍ରଭୁ, ଶୁଣି ସେ ଡାକ
ନିମିଷକେ ହରି ନେଲ ତା' ଦୁଃଖ । ॥ ୨ ॥

ଦ୍ୱାରକାରେ ରହି କମଳା ପୁରେ
ସୁଦାମାର ଖୁଦ ଖାଇଲ ଥରେ
କି ନାମ ଧରି ସେ ଡାକିଲା ତୋରେ
ପ୍ରଭୁ, ଶୁଣି ସେ ଡାକ
ନିମିଷକେ ହରି ନେଲ ତା' ଦୁଃଖ । ॥ ୩ ॥

ସାଲବେଗ ଡ଼ାକେ ବୃନ୍ଦାବନରେ
ଶ୍ରୀରଙ୍ଗାଚରଣ ଦେଖିବ ଥରେ
ନନ୍ଦଘୋଷେ ରହିଥିବ ବାଟରେ
ପ୍ରଭୁ, ଶୁଣି ତା' ଡାକ
ନିମିଷକେ ହରି ନେଲ ତା' ଦୁଃଖ । ॥ ୪ ॥

ବଳରାମ ଦାସ ଅଭିମାନରେ
ରଥ କଲ ଯାଇ ଦଣ୍ଡିଆ ପାରେ
ନ ଚଳିଲ ରଥ ବଡ ଦାଣ୍ଡରେ
ପ୍ରଭୁ, ଶୁଣି ତା' ଡାକ
ନିମିଷକେ ହରି ନେଲ ତା' ଦୁଃଖ । ॥ ୫ ॥

ତୁମ୍ଭୁ ଡାକ ଦେଲେ ଯେ ଯେତେ ଜନେ
ସେ ଡ଼ାକ ଶୁଭିଲ କିପରି କର୍ଣ୍ଣେ ?
ଦୀନ ସତ୍ୟ ମୁହିଁ ଡାକେ ପାଖରେ
ଥରେ ଶୁଣିଲେ ଡାକ
ରହନ୍ତା ନାହିଁ ହେ ମୋହର ଦୁଃଖ । ॥ ୬ ॥

❊

## ॥ ଚକାନୟନ ॥

ଚକାନୟନ ହେ ପ୍ରଭୁ ଜଗ-ଜୀବନ
ଥରେ ଚାହିଁ ଦେଲେ ମନ ନ ଇଛେ ଆନ । ॥ ଘୋଷା ॥

ଲୋଡ଼ା ନାହିଁ ଦୁଇ ନେତ୍ର ଗୋଟିଏ ନେତ୍ର
ସେ ନେତ୍ରରେ ଚାହିଁଥାଅ ଏ ଦୀନ ଜନ । ॥ ୧ ॥

ଲୋଡ଼ା ନାହିଁ ଦୁଇ କାନ, ଗୋଟିଏ କାନ
ସେ କାନରେ ଶୁଣ ବାରେ ଚକାନୟନ । ॥ ୨ ॥

ଲୋଡ଼ା ନାହିଁ ଦୁଇ ଭୁଜ, ଗୋଟିଏ ଭୁଜ
ସେ ଭୁଜର ତଳେ ରଖ ଏ ପାପୀ ଜନ । ॥ ୩ ॥

ଲୋଡ଼ା ନାହିଁ ଦୁଇପାଦ, ଗୋଟିଏ ପାଦ
ସେ ପାଦର ତଳେ ରହୁ ଏ ଥକା ମନ । ॥ ୪ ॥

ଜୀବ ଯିବା ବେଳେ ପ୍ରଭୁ ସେ ପଦ ରଜ
କଣିକାଏ ମୁଖେ ଦେବ କଳା ବଦନ । ॥ ୫ ॥

ତୁମ ନାମ ଭଜି ଭଜି ଏ ଜୀବ ଯାଉ
ଏତିକି ମାଗୁଣି ପ୍ରଭୁ ଚକା ବଦନ । ॥ ୬ ॥

❊

## ॥ ଗୁହାରି ହେଉ ମୋ ଘେନା ॥

ପ୍ରଭୁ !
ଗୁହାରି ହେଉ ମୋ ଘେନା
ନିତି ଦେଖୁଥିବି ନୀଳଚକ୍ର ପରି
ପତିତ ପାବନ ବାନା । ॥ ଘୋଷା ॥

ରହି ତୁମ ନିତି ଦେଖୁଥିବି ନିତି
ଯେତେବେଳେ ଯେଉଁ ବେଶ
ମଙ୍ଗଳ ଆଳତି ଦେଖୁଥିବି ନିତି
ବଡ ସିଂହାରର ବେଶ । ॥ ୧ ॥

ଅବକାଶ ଜଳ ପିଇ ବୁଲୁଥିବି
ତୁମ ବେଢ଼ା ଚୂନପଟେ
ଚକା ବଦନକୁ ଦେଖୁଥିବି ନିତି
ଗରୁଡ଼ର ପଛ ପଟେ । ॥ ୨ ॥

ଆନନ୍ଦ ବଜାରେ ଯାଇଣ ମନାସି
ସାଧୁ ସନ୍ଥ ସେବା କରି
କୈବଲ୍ୟ କଣିକା ନିତି ଚାଖୁଥିବି
ତୋର ନାମ ମୁଖେ ଧରି । ॥ ୩ ॥

ଭକତ କାରଣ ପାଇଁ ପ୍ରଭୁ ତୁମେ
ଉଡାଉଛ ଯେବେ ବାନା
ଭକତ ଜନରେ କୃପା କରୁଥିବ
ନ କରିବ କେବେ ମନା । ॥ ୪ ॥



ବାଣୀକଣ୍ଠଙ୍କର ଅଠଗଡ଼ ଘର



ବାଣୀକଣ୍ଠଙ୍କର କେନ୍ଦ୍ରାପଡ଼ା ଘରେ ଫଟୋଗ୍ରାଫରେ ଅଛନ୍ତି ନିମାଇଁ ଚରଣ, ନିମାଇଁ ଚରଣଙ୍କ ସାନଭାଇ ମଦନମୋହନ, ନିମାଇଁ ଚରଣଙ୍କ ସାନଝିଅ ବ୍ରଜବାଳା, ସାନପୁଅ ଶୈଳେନ୍ଦ୍ର ଓ ପୁତୁରା ଗିରୀଶ ଚନ୍ଦ୍ର ( ସାନଭାଇ ମଦନମୋହନଙ୍କ ପୁଅ )

# ସେ ଏକ ଦୁର୍ଲ୍ଲଭ ପାରିଜାତ

ଶ୍ରୀ ହୃଦାନନ୍ଦ ରାୟ

ବଣରେ ଅନେକ ଫୁଲ ଫୁଟେ । କିନ୍ତୁ ଫୁଲ ବହୁଳ ସେହି ବଣରେ ଦୈବାତ୍ ଯଦି କେବେ କେଉଁଠି ଗୋଟିଏ ପାରିଜାତ ଫୁଟି ଯାଇଥାଏ, ତେବେ ସେ ସମସ୍ତ ବଣଟି ଏକ ଦୁର୍ଲ୍ଲଭ ଅନୁଭୂତିରେ ଆକ୍ରାନ୍ତ ହୋଇ ପଡେ । ଦୁର୍ଲ୍ଲଭ ବ୍ୟକ୍ତିତ୍ୱମାନଙ୍କର ଆବିର୍ଭାବ ଫଳରେ ତାଙ୍କ ସମସାମୟିକ ଯୁଗଟି ଦୁର୍ଲ୍ଲଭ/ଦୁର୍ଲ୍ଲଭ ବୋଧ ହୁଏ । କିନ୍ତୁ କାହା ଯୋଗୁଁ ଏ ଭଳି ଦୁର୍ଲ୍ଲଭ ବୋଧ ହେଉଛି ତାହା ଜାଣି ହୁଏନା । ସେହି ବ୍ୟକ୍ତିମାନେ ଯେତେବେଳେ ଗୋଡ଼ କାଢ଼ି ଚାଲି ଯାଆନ୍ତି, ସେତେବେଳେ ବୋଧହୁଏ କେଉଁ କାରଣରୁ ସେ ଯୁଗଟି ଦୁର୍ଲ୍ଲଭ ଲାଗୁଥିଲା ।

ଯେଉଁଦିନ ବାଣୀକଣ୍ଠ ନିମାଇଁ ଚରଣ ହରିଚନ୍ଦନ ଏ ସଂସାରରୁ ଗୋଡ଼ କାଢ଼ି ଚାଲି ଗଲେ, ସେ ଦିନ ଅନୁଭବ ହେଲା, କି'ଣ ପାଇଁ ଓଡ଼ିଶାର ସଭାସ୍ଥଳୀ, ପୁରୀର ବଡ଼ ଦାଣ୍ଡ, ବାଇଶି ପାବଚ୍ଛ ଓ ଗରୁଡ଼ ସ୍ତମ୍ଭର ପଛପଟରୁ ନେଇ ଏକ ଦୁର୍ଲ୍ଲଭ ଅନୁଭବ ସମସ୍ତଙ୍କ ଠାରୁ ଅପସରି ଗଲା । ସେ ଏକ ସାଧାରଣ ଅର୍ଥରେ ଗାୟକ ନ ଥିଲେ । ଗୀତ ତାଙ୍କ ହୃଦୟ କନ୍ଦରରୁ ଉତ୍ସ୍ରୁପିତ ହୋଇ ସ୍ୱତଃ ନିର୍ଗତ ହେଉଥିଲା, ତାଙ୍କ ଆତ୍ମ-ତନ୍ମୟ ଅଭିନିବେଶରୁ । ତାଙ୍କ କଣ୍ଠ-ସ୍ୱର ବହୁ-ଦୂରକୁ ଶୁଭେ । ଏ ଥିଲା ପୂର୍ବକାଳ ଓଡ଼ିଆ ଗାୟକମାନଙ୍କର ନିଜସ୍ୱ ମର୍ଯ୍ୟାଦା । କୌଣସି ଯାନ୍ତ୍ରିକ ସାହାଯ୍ୟକୁ ଅପେକ୍ଷା ନ ରଖି ହଜାର ହଜାର ଶ୍ରୋତାଙ୍କୁ ସେ ତାଙ୍କର ଗମ୍ଭୀର-ମଧୁର ସ୍ୱର ଶୁଣାଇ ପାରୁଥିଲେ । ବୋଧ ହେଉଥିଲା ଯେପରି ମଧୁ-ସମୁଦ୍ର ଗର୍ଜୁଛି । କଳିଙ୍ଗ-ଭାରତୀ ଭଞ୍ଜ-ଜୟନ୍ତୀରେ ଡାକବାଜି ଯନ୍ତ୍ର ବିନା ଗାଇବାକୁ ସେ ଅନେକ ଥର ଜିଦି ଧରିଛନ୍ତି ତାଙ୍କ ଯୌବନରେ । ଆମେ ଆମ ପିଲା ଦିନେ ତାଙ୍କୁ ହଠାତ୍ ଯାଇ ଭଞ୍ଜ-ଜୟନ୍ତୀରେ ସଙ୍ଗୀତ ପରିବେଷଣ କରିବାକୁ ଡାକି ଆଣୁଥିଲୁ । ସେ ଆନନ୍ଦ ମନରେ ଆମ ବାଳୁତ ଚପଳ ନିମନ୍ତ୍ରଣ ସ୍ୱୀକାର କରିଛନ୍ତି ଅନେକ ଥର । ଏବେ ସେଭଳି କେତେ ଜଣ ବ୍ୟକ୍ତି ଅନାମଧେୟ ବାଳକମାନଙ୍କ ନିମନ୍ତ୍ରଣ ବା ରକ୍ଷା କରି ଆସି ପାରିବେ । ଗୁଣରେ ସେ ଥିଲେ ଦୁର୍ଲ୍ଲଭ, କିନ୍ତୁ ଆଚରଣରେ ସେ ଥିଲେ ସମସ୍ତଙ୍କ ପାଇଁ ସୁଲଭ । ଏଇଠି ତାଙ୍କ ବ୍ୟକ୍ତିତ୍ୱର ଏକ ପ୍ରମୁଖ ଦିଗଟି ଉଦ୍‌ଘାଟିତ ହୋଇଯାଏ ।

ଗୀତ ଗାଉଥିଲା ବେଳେ ଅମୃତର ଧାର ଝରିଲା ପରି ତାଙ୍କ କଣ୍ଠସ୍ୱର ଅନାଡ଼ି ହୋଇ ପଡ଼ୁଥିଲା । ମୋ ବାପା ସଙ୍ଗୀତର ରସଗ୍ରାହୀ ନ ଥିଲେ ବୋଲି ମୋ ଧାରଣା ଥିଲା । କିନ୍ତୁ ବାଣୀକଣ୍ଠଙ୍କ ସ୍ୱର-ଲହରି ଶୁଣିବା ପାଇଁ ସେ ତାଙ୍କୁ ଘରକୁ ସ୍ୱତନ୍ତ୍ର ଅତିଥି ଭାବେ ଏକଦା ନିମନ୍ତ୍ରଣ କରି ଆଣିଥିଲେ । ମନ ଭରି ବାଣୀକଣ୍ଠ ଗୀତ ଗାଇଲେ, ରୁପା ଥାଳିରେ ଭୋଜନ କଲେ, ବାପାଙ୍କ ପାନ ବଟାରୁ ପାନ ଖିଲେ ନେଇ ଖୁସିରେ ଚାଲିଗଲେ ।

ପରବର୍ତ୍ତୀ କାଳରେ ପୁରୀରେ ବାଣୀକଣ୍ଠଙ୍କ ସହିତ ପ୍ରାୟ ପ୍ରତିଦିନ ସାକ୍ଷାତ ହେଉଥିଲା ବେଳେ ମୋ ମା'ଙ୍କୁ ଦେଖି ମୋ କାନରେ ସେ କହୁଥିଲେ—'ପଚାରିବ, ବାପାଙ୍କ ପାନ ବଟାର ଯେ ପାନଖିଲି ମା'ଙ୍କ ପାଖରେ ଅଛି କି ?' ମୁଁ ସେ କଥା ମା'ଙ୍କୁ ମୁହଁ ଖୋଲି କହି ପାରୁ ନ ଥିଲି । କାରଣ, ବାପା ଅନେକ ଦିନୁ ଇହଧାମ ଛାଡ଼ି ଚାଲି ଯାଇଥିଲେ । ମା'ଙ୍କୁ ମୁଁ କହୁଥିଲି, ବାଣୀକଣ୍ଠଙ୍କୁ ପାନ ଟିଏ ଦେବାକୁ ବାଣୀକଣ୍ଠ କହୁଛନ୍ତି । ପ୍ରତିଥର ଏ ଘଟଣା ଘଟିଲେ ନେଉଁ ଏକ ଅଜଣା ସ୍ୱରର ମୂର୍ଚ୍ଛନା ମୋ ଅନ୍ତର୍ରାଜ୍ୟକୁ ଦୋହଲାଇ ଦେଉଥିଲା ।

ବାଣୀକଣ୍ଠ ତାଙ୍କ ପରିଣତ ବୟସରେ ପୁରୀରେ ବାସ କରି ପ୍ରତିଦିନ ମହାପ୍ରଭୁଙ୍କୁ ଜଣେ ଭଜନ ମନ ଭରି ଶୁଣାନ୍ତି । ନାଟ ମନ୍ଦିରର କାନ୍ଥକୁ ଅଥବା ଜଗମୋହନର ଖମ୍ବକୁ ଆଉଜି ଯୋଡ଼ହସ୍ତ ହୋଇ ଚାମରକୁ କାନ୍ଧ ଉପରେ ରଖି ଗୀତ ଗାଉଥିବା ବାଣୀକଣ୍ଠ ନେତ୍ର ଜଳରେ ଗାଧୋଉଥିବା ଦୃଶ୍ୟ ଯେ ଦେଖିଛି, ସେ ଦେଖିଛି । ମହାପ୍ରଭୁଙ୍କୁ ଚାମର ସେବା ତାଙ୍କ ଜୀବନଚର୍ଯ୍ୟାର ସ୍ୱାଭାବିକ ଅଙ୍ଗ ଥିଲା, ସର୍ବସ୍ୱ ଥିଲା । ପ୍ରତି ଗୀତଟି ମଧ୍ୟରେ ସେ ନିଜ ମନ

କଥା ପ୍ରଭୁଙ୍କୁ କହୁଥିଲେ । ତାହା ହିଁ ଥିଲା ତାଙ୍କର ଆନନ୍ଦ । ସେହି ଆନନ୍ଦର ବ୍ୟାଖ୍ୟା କରି କେତେ ଥର ସେ ଆମକୁ ଶୁଣାଇଛନ୍ତି । ମହାପ୍ରଭୁ ସବୁ ଶୁଣୁଛନ୍ତି ଓ ଜାଣୁଛନ୍ତି ବୋଲି ସେ ହୃଦୟଙ୍ଗମ କରୁଥିଲେ । ଥରେ ଥରେ ଆଖି ଠାରି ସେ କହନ୍ତି, ଦେଖୁଛ ! ସେ ନଟ ନାଗର କିପରି ଗୀତ ଶୁଣୁଛନ୍ତି !

ନିଜର ପ୍ରାଣବଲ୍ଲଭ ମହାପ୍ରଭୁଙ୍କୁ ଜଣେ ରସିକ ଶ୍ରୋତା ଭାବରେ ପାଇ ସେ ଜୀବନର ଶେଷାଂଶ ପରମ ପରିତୃପ୍ତିରେ କଟାଇ ଦେଇଛନ୍ତି । ସେ ତୃପ୍ତିର ଝଲକ ତାଙ୍କ ମୁଖମଣ୍ଡଳ, ନେତ୍ରପୁଟରୁ ଝରି ପଡୁଥିଲା । ଚାହିଁ ଦେଲେ ମନେ ହେଉଥିଲା, ଆମର ଏ ପୁଷ୍ପାକୀର୍ଣ୍ଣ ବନ ମଣ୍ଡଳରେ ଦୁର୍ଲ୍ଲଭ ପାରିଜାତଟିଏ ଫୁଟିଛି । ଆଜି ସେ ନାହାନ୍ତି, କିନ୍ତୁ ତାଙ୍କର ସ୍ୱର-ଲହର ଦୁର୍ଲ୍ଲଭ ସମ୍ପତ୍ତି ରୂପେ ଓଡ଼ିଶାର ଘରେ ଘରେ ସଞ୍ଚିତ ହୋଇ ରହିଛି; ସମାଦୃତ ହୋଇ ରହିଛି । ଚିର ଦିନ ରହିଥିବ । ଓଡ଼ିଆଙ୍କ କର୍ଣ୍ଣ କୁହରରେ ବାଣୀକଣ୍ଠଙ୍କ ବାଣୀ ବସାବାନ୍ଧି ରହିଛି । ଓଡ଼ିଆଙ୍କ ହୃଦୟରେ ତାଙ୍କର ସ୍ୱୟଂପ୍ରତିଷ୍ଠ ସ୍ମୃତି ସ୍ତମ୍ଭ ସ୍ୱୟଂ ଜ୍ୟୋତିରେ ଉଦ୍ଭାସିତ ।

●

ବାର୍ଣ୍ଣି ସାହି,
କଟକ

# ବାଣୀକଣ୍ଠ ଓ ଶ୍ରୀ ଜଗନ୍ନାଥ

## ଶ୍ରୀ ବିଦ୍ୟାଧର ରାଉତରାୟ

ସେ ଦିନ ଉତ୍କଳ ସାହିତ୍ୟ ସମାଜ ଆନୁକୂଲ୍ୟରେ ଶ୍ରୀରାମଚନ୍ଦ୍ର ଭବନରେ କବି ଚନ୍ଦନ ହଜୁରିଙ୍କର ପ୍ରତିକୃତି ଉନ୍ମୋଚିତ ହେଉଥାଏ । ଉତ୍କଳ ସାହିତ୍ୟ ସମାଜର ତତ୍କାଳୀନ ସାଧାରଣ ସଂପାଦକ କବି ମୁରଲୀ ମୋହନ ଜେନାଙ୍କ ସୌଜନ୍ୟରୁ ବାଣୀକଣ୍ଠ ନିମାଇଁ ଚରଣ ହରି-ଚନ୍ଦନଙ୍କ ସଙ୍ଗେ ପରିଚୟ ଓ ବାକ୍ୟାଳାପ । ହରିଚନ୍ଦନଙ୍କ ସେ ମଧୁର କଥା କେତେପଦ ଜୀବନରେ କେବେ ଭୁଲିନି, ଭୁଲି ପାରିବିନି । ମୁରଲୀ ବାବୁ ବାଣୀକଣ୍ଠଙ୍କ ହାତ ଧରି ଶ୍ରୀରାମଚନ୍ଦ୍ର ଭବନର ମଞ୍ଚ ଉପରକୁ ନେଇଗଲେ । ସେ ଚନ୍ଦନ ହଜୁରିଙ୍କ—'ତଳା ନୟନକୁ ପତିତ ଦେହି, ତଳାଇ ଖର ନିଃଶ୍ୱାସ ପକାଇ । ଉଡ଼ା ପକାଇ ଗରୁଡ଼ ପଛରେ, ବିକାଶ ମୋ ଆର୍ତ୍ତି ଶୁଣି ସତ୍ୱରେ, ଛଳା ବାଜୁଛି ମହିମା, ଠକାର କରି କର୍ଣ୍ଣେ ଗିରି ନ ଶୁଣି କାହିଁକି ବିଟପି ନମା'—ଗୀତକୁ, ବାଣୀକଣ୍ଠ ବୀଣାନିନ୍ଦିତ କଣ୍ଠରେ ଗାଇ ଉଠିଲେ । ତାଙ୍କର ସେ ମନ୍ଦ୍ର ଝଂକାରରେ ସମୁଦାୟ ଶ୍ରୀ ରାମଚନ୍ଦ୍ର ଭବନ କଂପି ଉଠିଲା । ସମବେତ ଜନତା ମନ୍ତ୍ରମୁଗ୍ଧ ହୋଇ ସେ ଗୁରୁ ଗମ୍ଭୀର ସଙ୍ଗୀତ ଝଂକାର ଶୁଣୁଥିଲେ । ଏବେବି ତାଙ୍କର ସେ ମନ୍ଦ୍ର ଝଂକାର ସ୍ୱର ମୋର ହୃଦୟର ନିଭୃତ କନ୍ଦରରେ ଝଂକୃତ । ଜୀବନରେ ଥରେ ଯେ ସୌମ୍ୟ ଦର୍ଶନ ଲାଭ କରି ପ୍ରାଣରେ ଅପୂର୍ବ ଆନନ୍ଦ ପାଇଛି, ଯାହାକି କେବେ ଭୁଲିବାର ନୁହେଁ ।

ତାଙ୍କର ପ୍ରାଣ ଜଗନ୍ନାଥଙ୍କ ଠାରେ ସଂପୂର୍ଣ୍ଣ ରୂପେ ସମର୍ପିତ । ସତେ ଯେମିତି ଭକ୍ତାଧୀନ ଭଗବାନ ତାଙ୍କ ଡାକ ଶୁଣି ତାଙ୍କ ପବିତ୍ର ବାହୁଡ଼ା ଯାତ୍ରା ଦିବସରେ ତାଙ୍କୁ ଏ ମରଧାମରୁ ବାହୁଡ଼େଇ ନେଇଗଲେ, ତାଙ୍କର ପ୍ରିୟ ଅମର ଧାମକୁ । ଜୟ ଭକ୍ତାଧୀନ ଜଗନ୍ନାଥ, ଜୟ ଭକ୍ତ ପ୍ରବର ବାଣୀକଣ୍ଠ ନିମାଇଁଚରଣ ହରିଚନ୍ଦନ ।

●

ପୂର୍ବତନ ଉପ-ସଭାପତି,
ମିଳନୀ ସାହିତ୍ୟ ସଂସଦ
ବିଦୁର କୁଟୀର, କେଉଁଝର

# ଚିଠାଉ

## ॥ ପ୍ରଥମ ॥

ପୁରୀ
ତା ୨। ୧। ୬୭

ପ୍ରିୟ ନମାଇଁ ବାବୁ,

ଆଜି ତୁମ୍ଭଙ୍କୁ ସ୍ୱତଃ ପ୍ରବୃତ୍ତ ହୋଇ ଲେଖୁଅଛୁ । ଆଜି ରେକର୍ଡରେ ଘଣ୍ଟା ଘଣ୍ଟା ହୋଇ ଓଡ଼ିଆ ଗୀତ ବାଜୁଅଛି । କିନ୍ତୁ ତୁମ୍ଭର ଗୀତ ପାଞ୍ଚ ଗୋଟିଏ ବାଜୁଅଛି । ତୁମ୍ଭ ଗୀତ-ଗୁଡ଼ିକ ଅତି ସୁନ୍ଦର, ମନମୁଗ୍ଧକର ହୋଇଅଛି । ତୁମ୍ଭେ କେବଳ ଓଡ଼ିଆ ସଙ୍ଗୀତର, ଓଡ଼ିଆ ଜାତିର ବୈଶିଷ୍ଟ୍ୟ ରକ୍ଷା କରି ପାରିଛ । ଏଥିଲାଗି ତୁମ୍ଭଙ୍କୁ ଆନ୍ତରିକ କୋଟି ଧନ୍ୟବାଦ ଦେଉଅଛି । ଓଡ଼ିଆ ସଙ୍ଗୀତକୁ ବଙ୍ଗଳା ଗ୍ରାମରେ ଢାଳିବା, ବଙ୍ଗଳା ସ୍ୱରରେ ଗାଇବାରେ କିଛି ବିଶେଷତ୍ୱ ନାହିଁ ବରଂ ଅନେକ ସମୟରେ ତାହା ବିଜାତୀୟ ଧାରଣ କରେ । ତୁମ୍ଭେ ଯେ ପଥରୁ ଏକାବେଳକେ ଅଲଗା ରହି ଖାଣ୍ଟି ଓଡ଼ିଆ ଛାନ୍ଦ ଓ ସଙ୍ଗୀତକୁ ଯେପରି ଗାଇଛ, ସେଥିଲାଗି ତୁମକୁ ଧନ୍ୟବାଦ ।

ଆଶା କରେ ତୁମ୍ଭେ ଏହି ନୀତି ରକ୍ଷା କରି ଏହିପରି ଅନେକ ଗୀତ ଓ ଛାନ୍ଦ ରେକର୍ଡରେ ଦେଇ ଓ ନିଜେ ଜଣାଣ ଭଜନ ରଚନା କରି ଓଡ଼ିଆ ସଙ୍ଗୀତ ତଥା ସାହିତ୍ୟର ବିଶେଷତ୍ୱ ଜଗତକୁ ଦେଖାଇବ । ଭଗବାନ ତୁମ୍ଭଙ୍କୁ ଦୀର୍ଘାୟୁ କରନ୍ତୁ ଏବଂ ତୁମ୍ଭେ ଅଦ୍ଭୁତ ଅନେକ ସଙ୍ଗୀତ ଅଧିକ କୃତିତ୍ୱ ସହିତ ରେକର୍ଡରେ ଦେବା ପାଇଁ ଅନୁରୋଧ କରୁଛି ।

ଆଶା କରିଥିଲି, କଟକ ସଙ୍ଗୀତ ସମ୍ମିଳନୀରେ ତୁମ୍ଭଙ୍କୁ ଏ କଥା କହିବି, ମାତ୍ର ତୁମ୍ଭେ ଆସି ନ ଥିଲ କହି ପାରିଲି ନାହିଁ । ତେଣୁ ଏ ପତ୍ର ଦ୍ୱାରା ଜଣାଇଲି । ଇତି॥

ତୁମର
**ଜଗବନ୍ଧୁ ସିଂହ**

●

## ॥ ଦ୍ୱିତୀୟ ॥

କେନ୍ଦ୍ରାପଡ଼ା
ତା ୧୨। ୫। ୬୫

ମହାଶୟ,

ଆପଣ ଯେଉଁ ପତ୍ରଟି ମୋର ଗୁରୁଦେବଙ୍କ ନିକଟକୁ ପଠାଇଥିଲେ, ତାହା ମୁଁ ସଂପୂର୍ଣ୍ଣ ପଢ଼ିଛି । ତା'ର ଶେଷରେ ମୋର ନାମ ସହିତ ଗୀତ ଅକ୍ଷର ଗୁପ୍ତଭାବେ ଲେଖାଅଛି ଦେଖି, ଆପଣଙ୍କ ଠାକୁ ପତ୍ର ଦେବାକୁ ପ୍ରୟାସୀ ହେଲି । ଆପଣ ଲେଖିଛନ୍ତି—'ମୋତେ ତ ଦୂରକୁ ଠେଲି ଦେଲ' କିନ୍ତୁ ଆପଣ ଦୂରରେ ଅଛନ୍ତି ବୋଲି ଆଉ କିଏ ଭାବୁଥିବେ; ମୁଁ ଯାହା ଭାବେ ତାହା ଲେଖୁଛି—

ପ୍ରଭାତୁ ଉଠି ମୁଁ ଦନ୍ତ ଧାବନର ବେଳେ
ତୁମ କଣ୍ଠ ଶୁଣେ ହିନୁ ମନେ ମନେ ଭାଳେ ॥୧॥

ନିର୍ମଳ ଚନ୍ଦ୍ରମଣ୍ଡଳ ଶୁଭଇ ତା' ପରେ
ପୂର୍ଣ୍ଣି ଶୁଣେ ପକ୍ଷୀଚିଠା ଘୋର କୋପ କରେ ॥୨॥

ପ୍ରଭାତ ଯାମିନୀ ଯାଏ ଅପ୍ରମାଣ ଥର
ଶୁଣେ ମୁଁ ଆନନ୍ଦ ମନେ ତବ କଣ୍ଠ ସ୍ୱର ॥୩॥

ଚକାଡୋଳା କପାଂ ଉଚା ଶୁଣଇ ଯେ ବେଳେ
ଶ୍ରୀ ଜଗନ୍ନାଥ ଚିତ୍ର ଦର୍ଶେ ମୋର ହେଲେ ॥୪॥

କେବେ ଗାଉଥାଅ ଗୋପାଳ ସାହୁ ଦୋକାନରେ
କେବେ ବଳଦେବ ଜୀଉ ମିଷ୍ଟାନ୍ନ ଭଣ୍ଡାରେ ॥୫॥

ତେଣୁ ଦୂରେ ଥିଲି ପରି ନ ପଡ଼ଇ ଜଣା
ବାଣୀକଣ୍ଠ ତୁମ କଣ୍ଠସ୍ୱରେ ବନ୍ଦ ପଣା ॥୬॥

ପିଅନ୍ତି ଉତ୍କଳ ସାରା ପୁରପଲ୍ଲୀ ଜନ
ଧନ୍ୟ ଧନ୍ୟ ଧନ୍ୟ ତୁମେ ଶ୍ରୀ ହରିଚନ୍ଦନ ॥୭॥

ଓଡ଼ିଶୀ ଛାନ୍ଦ ଗାରିମା ବୁଡ଼ିଲା ବେଳରୁ
ତୁମେ ଲଗାଇଛ ତାହା ଅଣାଇ କୂଳକୁ ॥୮॥

ଭୁଲି ପାରିବନି ଏହା ଏ ଓଡ଼ିଆ ଜାତି
କାଳେ କାଳେ ଥିବ ତୁମ ଅକ୍ଷୟ କୀରତି ॥୯॥

ଆମ୍ଭ କେନ୍ଦ୍ରାପଡ଼ା ଅଟେ ଜନ୍ମଭୂମି ତବ
ଆଉ ଯହିଁ ଜନ୍ମଭୂମି ପାଶୋରି ନ ଦେବ ॥୧୦॥

ଶ୍ରୀ ରାଧାଗୋବିନ୍ଦ ଜୀଉ ପ୍ରଭୁ କାମପାଳ
ଦୁଃଖେ ସୁଖେ ଯାହା ହୋନ୍ତୁ, କରନ୍ତୁ ମଙ୍ଗଳ ।

ଆପଣଙ୍କର ଶ୍ରଦ୍ଧେୟ
**ଶ୍ରୀ ଶ୍ୟାମସୁନ୍ଦର ପଣ୍ଡା**

●

# ଆମ ଅଜା ସାଆନ୍ତ

## ଶ୍ରୀମତୀ ଗୀତା ସାମନ୍ତରାୟ, ଏମ୍. ଏ.

ଜନ୍ମ ଏବଂ ମୃତ୍ୟୁ । ଆସିବା ଏବଂ ଯିବା । ପ୍ରତିଦିନ ପୃଥିବୀରେ ଭଗବାନଙ୍କର ଏ ଲୀଳା ଲାଗି ରହିଛି । ଜନ୍ମ ମାନେ ମୃତ୍ୟୁ ଧ୍ରୁବ । ସେଥିରେ ବ୍ୟତିକ୍ରମ ନାହିଁ ।

ସେ ଦିନ ପ୍ରତ୍ୟୁଷରୁ ଶୁଣିଲି ଆମ ଅଜା ସାଆନ୍ତ ଚାଲିଗଲେ । କାନକୁ ବିଶ୍ୱାସ କରି ପାରିଲିନି । କାରଣ ମାସେକ ଆଗରୁ ମୁଁ ତାଙ୍କ ପାଖରେ ଦୁଇସପ୍ତାହ ବିତାଇ ଫେରିଥିଲି । ତାଙ୍କ ପାଖରେ ଥିଲାବେଳେ, କୌତୁକରେ କହୁଥିଲେ—ଆରେ, ମାମା ତୁମର ତ ଆଗେ ଚାଲିଯିବେ । ମୋ ଖବର କିଏ ବୁଝିବ ? ତୁମେ ମୋ ପାଖରେ ରହିଯାଅ, ଆମ ସେବା କରିବ । ମୁଁ ଉତ୍ତରରେ କହୁଥିଲି, ସେ ଭାଗ୍ୟ ମୋର କାହିଁ ? ଆପଣ ତ ଜଗନ୍ନାଥଙ୍କ ପରମଭକ୍ତ । ଜଗନ୍ନାଥଙ୍କ ପରମ ଭକ୍ତଙ୍କୁ ସେବା କରିବା ଅର୍ଥ ତାଙ୍କୁ ସେବା କରିବା । ସେ ଭାଗ୍ୟ କେବଳ ଆଈ ମାମାଙ୍କର । କିନ୍ତୁ ଏ କ'ଣ ହେଲା ? ଆଈ ମା'ଙ୍କୁ ଛାଡ଼ି ଅଜା ଚାଲିଗଲେ ।

ଦିନକର ଘଟଣା । ଦୁଇ ପହର ଖାଇବା ସରି ଅଜାଙ୍କ ପାଖରେ ଗପ କରିବାକୁ ଭାରି ଭଲ ଲାଗେ । ଆମେ ତାଙ୍କ ପାଖରେ ଘେରି ବସିଥିଲୁ । ମୋର କଲେଜ ଖୋଲିବ ବୋଲି ବାବା ଭୁବନେଶ୍ୱରରୁ ଆସିଥିଲେ ମାମାଙ୍କୁ ଏବଂ ମୋତେ ନେଇଯିବାକୁ । କଥା ପ୍ରସଙ୍ଗରେ ଅଜା ବାବାଙ୍କୁ କହି ପକାଇଲେ—'ତୁମର ଏ ଝିଅଟି ବଡ଼ ଲକ୍ଷ୍ମୀବନ୍ତ । ଆମର ବହୁତ ଯତ୍ନ ନେଉଛନ୍ତି । ତାଙ୍କୁ ଏମ୍. ଏ. ପର୍ଯ୍ୟନ୍ତ ପଢ଼ାଇ ତା'ପରେ ବାହାଘର କରି ଦେବ । ତାଙ୍କ ଭାଗ୍ୟରେ ତ ଇଂଜିନିୟର ଜୋଇଁ ଲେଖାଅଛି । କଥା ମଝିରେ ବାଧା ଦେଇ ସେଦିନ କହିଥିଲି—ଅଜା କେଉଁଠି ଶାସ୍ତ୍ର କେବେଠାରୁ ଅଭ୍ୟାସ କଲେ ? କିନ୍ତୁ ତାଙ୍କ ଭବିଷ୍ୟତ ବାଣୀ ସତ୍ୟ ହୋଇଛି । ମୁଁ ଅର୍ଥନୀତିରେ ଏମ୍ ଏ. ପାସ୍ କରି ଏବେ ଭିଲାଇର ଜଣେ ଇଂଜିନିୟରଙ୍କ ଧର୍ମପତ୍ନୀ । ହେଲେ ମୋ ଅଜା ସାଆନ୍ତ ? ମୋ ସୁଖର କାଣିଚାଏ ହେଲେ ଧାରି ଧାରିଲେନି । ଜଗନ୍ନାଥେ ତାଙ୍କ ବାହୁଡ଼ା ଯାତ୍ରାରେ ଅଜାଙ୍କୁ ବାହୁଡ଼ାଇ ନେଲେ, ତାଙ୍କ କୋଳକୁ ।

ସବୁ ଗୁଣ ଭିତରେ ତାଙ୍କର ବଳିଷ୍ଠ ବ୍ୟକ୍ତିତ୍ୱ ମୋତେ ସବୁଠାରୁ ମୁଗ୍ଧ କରିଥିଲା । ଶେଷ ପର୍ଯ୍ୟନ୍ତ ତାଙ୍କର ସମସ୍ତ ଜ୍ଞାନ ଅତୁଟ ଥିଲା । ତାଙ୍କର ସମସ୍ତ କାର୍ଯ୍ୟ ସେ ନିୟମିତ ଭାବେ ସଂପାଦନ କରୁଥିଲେ । ପ୍ରତିଦିନ ପ୍ରତ୍ୟୁଷରୁ ଉଠି ନିତ୍ୟକର୍ମ ସାରି ଚକାଡୋଳାଙ୍କର ମଙ୍ଗଳ ଆଳତି ଦର୍ଶନ ତାଙ୍କୁ ଅପାର ଆନନ୍ଦ ଦେଉଥିଲା । ଦିନେ ତାଙ୍କ ସଙ୍ଗେ ପ୍ରଭୁଙ୍କର ମଙ୍ଗଳ ଆଳତି ଦର୍ଶନ କରିବାର ସୌଭାଗ୍ୟ ମୋତେ ମିଳିଥିଲା । ଅଭୁଲା ସେ ସ୍ମୃତି । ଯେ ଥରେ ଅନୁଭବ କରିଛି, ସେ ସବୁଦିନେ ଚାହିଁବ । ସେ ଦିନ ଅଜା ମୋତେ ତାଙ୍କ ଜଣାଶୁଣା ଅନେକଙ୍କ ସଙ୍ଗେ ପରିଚିତ କରାଇ ଦେଉଥିଲେ ଯେ—ଏଇ ମୋ ନାତୁଣୀ କଲେଜରେ ବି. ଏ. ପଢ଼ୁଛି । ମୋ ପାଠପଢ଼ା କଥା କହିଲା ବେଳେ ସେ ଯେପରି ଏକ ଚରମ ଆତ୍ମତୃପ୍ତି ପାଉଥିଲେ । ସେ ବିଶେଷ ପାଠ ପଢ଼ି ନ ଥିଲେ ମଧ୍ୟ, ପାଠ ପଢ଼ୁଆଙ୍କ ପାଇଁ ତାଙ୍କର ଏକ ବିଶେଷ ଅନୁରକ୍ତି ଥିଲା । ସେଇ ଅନୁରକ୍ତି ବୋଧହୁଏ ଆମ ଦୁଇଜଣଙ୍କ ମଧ୍ୟରେ ଭଲ ପାଇବାର ଏକ ବିଶେଷ ଆକର୍ଷଣ ହୋଇଥିଲା ।

'ଜଗନ୍ନାଥ' ଓଡ଼ିଶାର ପ୍ରତି ପରିବାରର ଜଣେ ଆପଣାର ଲୋକ ଆମେ ହୃଦୟଙ୍ଗମ କରୁ । ଯେମିତି ବାଣୀକଣ୍ଠ ଏବେବି ଓଡ଼ିଶାର ପ୍ରତ୍ୟେକ ପରିବାରରେ ଅମର ହୋଇ ରହି ପାରିଛନ୍ତି । ସେ ସଙ୍ଗୀତକୁ ପେଶା କରି ନ ଥିଲେ । ତାଙ୍କ ସଙ୍ଗୀତରେ ପ୍ରଭୁଙ୍କର କରୁଣା ଝରି ପଡ଼ୁଥିଲା । ଭାବ ବିହ୍ୱଳ ହୋଇ ସେ ଯେତେବେଳେ ଜଗନ୍ନାଥଙ୍କ ଜଣାଣ ସ୍ତବ ଗାଉଥିଲେ, ତାଙ୍କ ଆଖିରୁ ଲୁହ ଝରୁଥିଲା । ସେ ଥିଲା ତାଙ୍କର ଆନନ୍ଦର ଅଶ୍ରୁ । ମୋର ଦୁଃଖ ଯେ ଆମେ ତାଙ୍କର କେତେ ନାତି-ନାତୁଣୀ, କେହି ହେଲେ ତାଙ୍କର ସେ କଳାରୁ କାଣିଚାଏ ପାଇ ପାରିଲୁନି । ଚକାଡୋଳାଙ୍କୁ ମୋର ବିନୀତ ନିବେଦନ, ତାଙ୍କର ଅଣନାତି-ନାତୁଣୀଙ୍କ ଭିତରୁ କାହାକୁ ହେଲେ ସେଥିରୁ କାଣିଚାଏ ଦିଅନ୍ତୁ ।

●

ଶ୍ରୀମତୀ ଗୀତା ସାମନ୍ତରାୟ, ମାର୍ଫତ — ଶ୍ରୀ ପ୍ରଫୁଲ୍ଲ କୁମାର ଦାସ
କ୍ୱାଟର ନଂ ୦/ଏଫ୍, ସେକ୍ଟର -୭
ରିସିଅନ ବ୍ଲକ, ଭିଲାଇ (ମଧ୍ୟପ୍ରଦେଶ.

# ନୀଳାଞ୍ଜଳି

## ନମାଇଁ ଚରଣ ପଞ୍ଚକମ୍

ଶ୍ରୀ ବୀରହନୁମାନ ଶାସ୍ତ୍ରୀ

॥ ୧ ॥

ପ୍ରାତରୁତ୍ଥାୟ ଯୋ ନିତ୍ୟଂ ସୌଧୋପରି ବିରାଜିତଃ
ନୀଳ ଚକ୍ରୋପରି ଭ୍ରାନ୍ତଂ ଧ୍ୱଜଂ ପଠତି ପାବନମ୍ ।

॥ ୨ ॥

ନତ୍ୱା, ସ୍ନାନାଦି ସଂସ୍କାରଂ କୃତ୍ୱା, ଗୃହ୍ନନ୍ ଚ ଗୃମରଂ
ଜଗମ୍ମୋହନ ମଧ୍ୟସ୍ଥଃ ସମ୍ମୁଖେ ଗରୁଡ଼ସ୍ୟ ଚ

॥ ୩ ॥

ଧୀନକୃଷ୍ଣୋପେନ୍ଦ୍ର ଭକ୍ତ୍ୟାଭି ମନ୍ତ୍ୟ ବନମାଳି ନାଂ
ଗୋପାଳକୃଷ୍ଣ ବଳଦେବାଦିନାଂ ଭକ୍ତି ଗୀତକମ୍ ।

॥ ୪ ॥

ଗାୟନ୍ ଭକ୍ତି ସମାବିଷ୍ଟୋ ବାଣୀକଣ୍ଠ ସ୍ୱରେଣ ତୁ
ଦତ୍ତ୍ୱାତାଳଂ ଗୃମରେଣ ସଂଚଳୟନ୍ତି ମସ୍ତକମ୍ ।

॥ ୫ ॥

ନମାଇଁ ଚରଣଂ ଭକ୍ତଂ ହରିଚନ୍ଦନ ସଂଜ୍ଞକଂ
ସ୍ମରାମି ଜଗନ୍ନାଥସ୍ୟ ସମ୍ମୁଖେ ସଂସ୍ଥିତଂ ମୁଦା ।

●

ମାଉସୀ ମା' ଚକ,
ପୁରୀ

## ଜଗନ୍ନାଥ ସ୍ୱଣ

ଶ୍ରୀ ବିକ୍ରମକେଶରୀ ବର୍ମା

॥ ୧ ॥

ଲଘୁ ସଂଗୀତର ବନ୍ୟା
ଦେଶ ସାରା ଯେବେ ପକାଏ ଚହଳ,
ବାଣୀକଣ୍ଠ ! ତବ କଣ୍ଠ
ଶୁଣିବାକୁ ଆମ ମନ ହୁଅଇ ବିକଳ ।

॥ ୨ ॥

ବାଣୀ ଗୁଡ଼ି ହର୍ଷଣୀରେ ଆଜି ଆମ ମନ
ସଙ୍ଗୀତର ଅନ୍ୟ ନାମ ଶସ୍ତା ଗୀତ ଗାନ,
ପିଲାଠାରୁ ବୃଦ୍ଧର ବଢ଼ାଇ ଆଦର
ଭାଟ ମାଳ ଲଭୁଛନ୍ତି ଗାୟକ ସମ୍ମାନ ।

॥ ୩ ॥

ହରିନାମ ଥିଲା ତୁମ
ହୃଦରେ ଚନ୍ଦନ, ହେ ହରିଚନ୍ଦନ !
କୋଟି ଜନେ କରୁଥିଲେ ପରା ବିମୋହିତ
ତବ କଣ୍ଠ ଗାନ ।
କେ ଗାଇବ ବଡ଼ଦାଣ୍ଡେ
ଭଜନ ଜଣାଣ,
ବାଣୀକଣ୍ଠ ଆସ ଫେରି
'ଜଗନ୍ନାଥ ସ୍ୱଣ' ।

●

ଅଧ୍ୟକ୍ଷ, ଜବାହାରଲାଲ ନେହେରୁ କଲେଜ
ବୁଆଁପାଳ, କଟକ

# ଅର୍ଘ୍ୟ

## କୁମାରୀ କଲ୍ୟାଣୀ ମିଶ୍ର

ହେ ପରମ ପୂଜ୍ୟ !
ଭାବିପାରୁନି ମୁଁ ଆଜି ତୁମେ ସତେ ଯାଇଅଛ ଚାଲି
ଭାବିପାରୁନି ମୁଁ ତୁମର ସେ ସୌମ୍ୟ ମୂରତି
କାଳର କରାଳ ଗର୍ଭେ ହୋଇଅଛି ଲୀନ
ବରଂ ମୁଁ ଭାବୁଛି ତାହା
ଆହୁରି ତେଜୋସ୍ନାନ ହୋଇ ଉଠୁଛି କ୍ରମଶଃ ।

ହେ ପୁରୁଷୋତ୍ତମ !
ଅକାଳର ସେ କେଉଁ ନିର୍ମମ ସର୍ବଗ୍ରାସୀ ଝଡ଼
ତୁମ ଜୀବନ ଆକାଶେ ଦେଖା ଦେଇ ଧୂମକେତୁ ସମ
ହାତ ଧରି ନେଇଗଲା ଆସି
ବାହୁଡ଼ା ବାସୀରେ
ଲିଭି ଗଲା ତୁମ ଜୀବନର ଶେଷ ଦୀପ ଟିକି
ରହି ଗଲା ତୁମ ସଙ୍ଗୀତର ଲଳିତ ମାଧୁର୍ଯ୍ୟ
ଚିର ଅମଳିନ ହୋଇ ।

ତୁମର ସେ ଭଜନର ସ୍ୱର
ପ୍ରତିଧ୍ୱନି ସୃଷ୍ଟି କରୁଥିବ ଚିରଦିନ
ପୁରୀ ବଡ଼ ଦେଉଳରେ ବଡ଼ ଦିଅଁ କାନେ,
ବାଳସୂର୍ଯ୍ୟ ସମ ତୁମେ ରହିଗଲ ଆଜି
ତୁମ ସ୍ୱର ମୂର୍ଚ୍ଛନାରେ ଭାସି ଭାସି
ଚିରଦିନ ମନେ ପକାଇବେ ଏ ଓଡ଼ିଶା ବାସୀ
ତୁମକୁ ଆଉ, ତୁମର ସଙ୍ଗୀତ କଳାକୁ ନିତି ।



ମାର୍ଫତ୍—ପ୍ରଫେସର ଡକ୍ଟର ଶ୍ରୀନିବାସ ମିଶ୍ର
ଭକ୍ତିବିହାର, ବ୍ରହ୍ମପୁର

# ବାହୁଡ଼ା ବିଜୟ

## ଶ୍ରୀ ଦୁର୍ଗାଚରଣ ମହାନ୍ତି

ବର୍ତ୍ତ ଦଶମୀରେ ବାହୁଡ଼ା ବିଜୟ
କରିବାକୁ ପ୍ରଭୁ ! ନିର୍ଗମନ,
ବାହୁଡ଼ା ବେଳାରେ ବାହୁଡ଼ାଇ ନେଲ
ସାଥେ, ଆଠଗଡ଼ ହରିଚନ୍ଦନ ॥ ୧ ॥

ବାନ୍ଧିଥିଲ କେତେ ଛନ୍ଦି ଥିଲ ପାଦ
ବନ୍ଧ ଥିଲ ତୁମ ଚରଣ ତଳେ,
"ତୁମ ବାହୁଡ଼ାରେ ବାହୁଡ଼ାଇ ନିଅ"
ବୋଲି କହିଥିଲ ଭକତ ମେଳେ ॥ ୨ ॥

ଦିଗ ହଜା ଆଜି ଗଡ଼ଜାତ ଗୃହି
ସ୍ତବ, ସ୍ତୋତ୍ର, ଛାନ୍ଦ ବିଳାପେ ଖାଲି,
ଆନନ୍ଦ ବଜାର ବଡ଼ଦାଣ୍ଡ ଧାର
ଅଧା ପ୍ରାଣ ଆଜି ଶାରଧା ବାଲି ॥ ୩ ॥

ଚକା ନୟନକୁ ଡ଼ାକ', ପକାଇବ,
କୁହ କିଏ ତେଲ୍ନା ବନା ଠାକୁର,
ଆମକୁହାଁ ଏକା ବୋକା କରି ଦେଲ
ଏକା ନେଲ ତାଙ୍କୁ ସରଗ ପୁର ॥ ୪ ॥

ହଜି ଯିଏ ଅଛି ହଜି କି ପାରିବ
ଅଛନ୍ତି ଯେଉଁ କୀରତି ରଖି,
ବନ୍ଦିଅଁ ପାଦେ ପ୍ରାଣ ଫୁଲ ଦେଇ
'ବାହୁଡ଼ା ବିଜୟ' ରଚିଛି ଆଜି ॥ ୫ ॥



ଶିକ୍ଷକ, ବିଶ୍ୱନାଥ ବିଦ୍ୟାପୀଠ
ଆଠଗଡ଼, କଟକ

## ନମାଇଁ ଚନ୍ଦନ

### ଡକ୍ଟର କେଶବଚନ୍ଦ୍ର ସାହୁ

ସରଗରେ ଇନ୍ଦ୍ର ମର୍ତ୍ତ୍ୟରେ ନରେନ୍ଦ୍ର
ରଖିଲେ ଯଶ କୀରତ
ନମାଇଁର ଜନ୍ମ ଏଇ ବଂଶେ ଥିଲା
ଜାଳି ଦେଲା ପୁଣ୍ୟ ବର୍ତ୍ତି ॥ ୧ ॥
ନମାଇଁ ଧଇଲେ 'ନମାଇଁ'ର ଧର୍ମ
ଭଜନ କଲେ ସଦା
ନମାଇଁ ଚନ୍ଦନ ବାସେ ବାର ବାର
ଶୁଣେ ଲୋକେ ଗଦା ଗଦା ॥ ୨ ॥
ରେକର୍ଡ଼ କଲେ ଧରମ ସଙ୍ଗୀତେ
ସବୁ ପ୍ରବେ ଗଲା କୀର୍ତ୍ତି
ନମାଇଁ ଚନ୍ଦନ ଭୋଗ କଲେ ପ୍ରଭୁ
ବର ଦେଲେ ତାଙ୍କୁ କୀର୍ତ୍ତି ॥ ୩ ॥
ମୋର ବାହୁଡ଼ାରେ ବାହୁଡ଼ିବ ସେହୁ
ମୁଖରୁ ଦେଲେ ଆଦେଶ
ତା' ପୀରତ ପ୍ରୀତ ହୋଇ ମହାପ୍ରଭୁ
ବୁଝି ଅଣୀ କାଳ ଶେଷ ॥ ୪ ॥
ସହାନୁଭୂତରେ ସେ ଘନ କୁହୁଡ଼
ବରଷ ଏ ଦେଶେ ପ୍ରଭୁ
ନମାଇଁ ଚନ୍ଦନ ସୁବାସିତ ହେଉ
ଧର୍ମ ପାଳୁ ଥାଅ ହୃଭୁ ॥ ୫ ॥



ପ୍ରଫେସର ପଡ଼ା,
କଟକ

## ବାଣୀକଣ୍ଠ

### ଶ୍ରୀ ନବକିଶୋର ମହାରଣା

ବାଣୀକଣ୍ଠ ତୁମେ ତୁମର ତୁଳନା ଖାଲି
ସୀମାହୀନ ଯୁଗ କାଳ ଗ୍ରାସେ ଯାଉ ଭୁଲି
ବିସ୍ମୃତିରେ ତୁମେ ସିବ ନାହିଁ ହଜି
ଅମର ଆସନେ ରହିବ ବିରାଜି
ଉତ୍କଳ ପ୍ରତିଭା ବଳେ,
ସୁରଣୀୟ ହୋଇ ରହିଥିବ ଧରା ତଳେ ।

ନମାଇଁ ଚରଣ ହରିଚନ୍ଦନ ଯେ ନାମ,
ସାର୍ଥକ କରିଛ ନାମକୁ ହେ ଗୁଣଧାମ ।
ଓଡ଼ିଶା ଠାକୁର ଭକ୍ତ ଗୀତ ଗାଇ
ଓଡ଼ିଆ ପରାଣ ଦେଲ ଉଲ୍ଲସାଇ
ବିଷାଦୀ ଅନ୍ତର ଗତେ,
ହରି ଚନ୍ଦନଙ୍କୁ ବୋଲି ଦେଲ ପରି ସତେ ।

ଲେଖାହୁଏ ଯେବେ କଳାକାର ଇତିହାସ
ପୃଷ୍ଠାରେ ତାହାର ତୁମେତ ରହିବ ବାସ
ଉତ୍କଳ କୁଞ୍ଜେ ତୁମର ବାଂଶରୀ
ଢୋଳୁଥିବ ସ୍ୱର ଚିରକାଳ ଧରି
ଏ ଓଡ଼ିଆ ଜାତି ହୃଦେ,
ଅଶ୍ରୁ ତର୍ପଣ ଅର୍ପଣ କରୁ ପଦେ ।



ସଂପାଦକ, ଭଗବତୀ ମଣ୍ଡଳ
ପାଲଗାୟକ ପରିଷଦ, ବାଣପୁର

ଶ୍ରୀ ରଘୁନାଥ ଛୋଟରାୟ

ସେଦିନ ତ ତୁମେ ଗାଇ ପାଗଳିନି କାଳିଆ ସାଆନ୍ତେ ଚାହିଁ
ଝରାଇ ଦେଇଥିଲ ଶେଷ ଅଶ୍ରୁଧାର ପ୍ରେମେ ଗଦ୍ ଗଦ୍ ହୋଇ
ସେ ଦାରୁ ପରାଣେ ବାଜିଥିଲା କି ତମ ମରମ ତଳର କୋହି
ସେ ଦିନ ଭକତେ ଦେଖିଲେ ଚକିତେ କାଳିଆ ଆଖିରେ ଲୁହ
ସେତେ ବଡ ସିଏ ଠାକୁର ହେଲେବି ଭକତ ଭାବେ ସେ ବନ୍ଧା
ସେତେ ସେ ବିଧାନ କରନ୍ତୁ ପଛେ ଯାହା ଭକତର ପ୍ରେମେ ଛନ୍ଦା
ନୀଳାଦ୍ରି ମଣ୍ଡପେ ନିତି ଦେଖୁଥିଲ ନୀଳ ସୁନ୍ଦର ବଦନ
ମରମ ଫଟାଇ କରୁଛ କଣାଣ ମାଗିନା ତ ଧନ ଜନ
ମାଗିଥିଲ ପରା କାଳିଆ ସାଆନ୍ତେ ଶରଧା ବାଲିରୁ ହା'ତେ
ତୁମ ନିବେଦନ କଲକି ମଂଜୁର ଆଜି ଆଉ ଭକ୍ତ ଏତେ
କାହା କଣ୍ଠ ସ୍ୱନେ ହେବ ନିନାଦିତ ନୀଳାଚଳ ରଥ ବେଳେ
କା' କଣାଣ ଶୁଣି ନନ୍ଦିଘୋଷ ତା'ର ଗଡ଼ିବ ବଡ଼ ଦାଣ୍ଡରେ
ଦଣ୍ଡେ ଛାଡ଼ି ବାଡ଼ ହେଉଛ ତ ନ ଥିଲ କାଳିଆ ସାଆନ୍ତ ଠାରୁ
ମୁରୁଛି କପଟ ରହିଗଲ ପଛେ ବଡ ଦେଉଳେ ନ ଫେରୁ?
ଆଜି ଲୁଚି ଗଲା ବାଣୀକଣ୍ଠ ତୁମ ମୃଦୁ ସହାସ୍ୟ ବଦନ
ଶୁଭେ ଅନୁକ୍ଷଣେ ନିତି କାନେ କାନେ ବୀଣା ଜଣା କଣ୍ଠ ସ୍ୱନ
ବାଟରେ ବାଟୋଇ ଚଷା ଗାଏ ବସେ 'ବଉଳକୁ ଆଲିଙ୍ଗନ'
ଚକା ନୟନକୁ ଚାହିଁ ତୁମ ଛନ୍ଦେ ପଣ୍ଡିତ ଗାଏ କଣାଣ
ଚାଲିଗଲ ତୁମେ ସବୁରି ପରାଣେ ବିଚ୍ଛେଦ ରାଗିଣୀ ତୋଳି
ହଜିଗଲ ତୁମେ ଛିନ୍ନ ବୀଣା ତା'ର ଶେଷ ମୂର୍ଚ୍ଛନା ପରି ।

●

ନରଣ ଗଡ,
ପୁରୀ

# କୋଟି ଜୁହାର

ଶ୍ରୀ ବଂଶୀଧର ମିଶ୍ର

ଆଉ ନ ଶୁଣିବୁ ତୁମ ବୀଣା ଜଣା
କୋକିଳନ୍ତୁଁ ବଳି ମଧୁର ସ୍ୱର,
ଆଉ ନ ମିଳିବେ ତୁମ ପରି ଜଣେ
ଅଦ୍ୱିତୀୟ ବାଣୀକଣ୍ଠ ପ୍ରବର ॥୧॥
ଗୁଣ୍ଡିଚା ମନ୍ଦିରେ ଗୀତ ଗାଉଥିଲ
ଗୀତ ଗାଉ ଗାଉ ଜୀବନ ଯାଉ,
ପ୍ରଭୁ ଜଗନ୍ନାଥ ବାହୁଡ଼ିବା ଦେଖି
ତୁମେ ବାହୁଡ଼ିଲ ନ ରହି ଆଉ ॥୨॥
ଶ୍ରୀ ଜଗନ୍ନାଥଙ୍କ କଣାଣ ଭଜନ
କିଏ ସେ ଗାଇବ ଆଳତି ବେଳେ,
ଶ୍ରୀମନ୍ଦିରେ ଉଭା ସେ ଚାମର ସେବା
କିଏ ସେ କରିବ ସଞ୍ଜ ସକାଳେ ॥୩॥
ଶିଳ୍ପୀ ସାଧକ, ଭକ୍ତ ସଙ୍ଗୀତଜ୍ଞ
ଧର୍ମପ୍ରାଣ ପରମାର୍ଥୀ ପ୍ରବର,
ଦେଶ ଜାତି ପ୍ରାଣେ ରହିଛ, ରହିବ
ତୁମ ପୁଣ୍ୟ ନାମ ଚିର ଅମର ॥୪॥
ସଙ୍ଗୀତ ଜୀବନ, ସଙ୍ଗୀତ ଯା' ପ୍ରାଣ
ସଙ୍ଗୀତ ସର୍ବସ୍ୱ ଅଟେ ଯାହାର,
ସେଇ ବାଣୀକଣ୍ଠ ଗାୟକ ସମ୍ରାଟ
ତା' ପଦେ ଜଣାଏ କୋଟି ଜୁହାର ॥୫॥

●

ପଟାପୋଲ,
କଟକ

# ବାହୁଡ଼ାଇ ନଅ ବାହୁଡ଼ା ବଜଯ୍ରେ

**ଶ୍ରୀ କୁଳମଣି ମହାନ୍ତି**

॥ ୧ ॥

ବାଣୀକଣ୍ଠେ ତବ ବାଣୀ କଣ୍ଠ ସ୍ୱନେ
ଉଡ଼ାଇ ଅଛ ପତାକା,
ବାଣୀ ରସାଣିତ ବାଣୀକଣ୍ଠ ମୂର୍ତ୍ତି,
ଭୂଷଣେ ପକାଇ ଡଙ୍କା–ବାଣୀକଣ୍ଠ ହେ !

॥ ୨ ॥

ଅନବଦ୍ୟ ସ୍ୱନ ଅନବଦ୍ୟ ତାନେ
ଅନବଦ୍ୟ ଶିହରଣ,
ଅନବଦ୍ୟ-ନାଦ୍ୟ ପଦ୍ୟ-ପଦଙ୍କରେ
ଅନବଦ୍ୟ ଛନ୍ଦମାନ—ବାଣୀକଣ୍ଠ ହେ !

॥ ୩ ॥

ଶ୍ରୀଛନ୍ଦା ଚରଣ ଛନ୍ଦେ ଛନ୍ଦାର୍ପିତ
ଛାନ୍ଦ ବନ୍ଧନ-ଗୀତିକା,
ବଛନ୍ଦ ଚତ୍ୱରେ ବୃନ୍ଦାରକ ବନ୍ଦ୍ୟ
ବନ୍ଦନେ ହାରନ୍ତ ଦକ୍ଷା—ବାଣୀକଣ୍ଠ ହେ !

॥ ୪ ॥

ଓଡ଼ିଆ ସଙ୍ଗୀତ ଓଡ଼ିଆ ଭଙ୍ଗୀରେ
ଓଡ଼ିଆ ଢଙ୍ଗରେ ଗାଇ,
ଓଡ଼ିଆ ରଙ୍ଗୀତ ଓଡ଼ିଆ ଭଙ୍ଗୀମା
ରଙ୍ଗିଲ ଓଡ଼ିଆ-ଭୂଇଁ-ବାଣୀକଣ୍ଠ ହେ !

॥ ୫ ॥

ଆକାଶବାଣୀର ବାଣୀ ମୂର୍ଚ୍ଛନାରେ
ବାଣୀ ଯନ୍ତ୍ର ଗାନ ସ୍ୱନ,
ବାଣୀ ଭଣ୍ଡାରକୁ କାଣିଚ୍ଛ ଆଉ
ଶୁଭୁନାହିଁ ଘନ ଘନ—ବାଣୀକଣ୍ଠ ହେ !

॥ ୬ ॥

କାଳ ବଳେ ସର୍ବେ କାଳ କ୍ରୋଡ଼େ ଯିବେ
ଯଶ ଥିବ ମହୀ ତଳେ,
କାଳେ କାଳେ କଳା ବାନା ଉଡ଼ୁଥିବ
କଳା-ନୀଳଚକ୍ର ଚୂଳେ—ବାଣୀକଣ୍ଠ ହେ !

॥ ୭ ॥

ଚକା-ବଇଠାରେ ବକାତୋଳା ଆଗେ
ପକ୍କା ସିଆଣିଆ ଗୁଣେ,
ଚକାନୟନଙ୍କୁ ଛକାଇ ଚକାରେ
ବସିଲ ତରକା ପଣେ—ବାଣୀକଣ୍ଠ ହେ !

॥ ୮ ॥

ଜଗତ ବନ୍ଦନ ଶ୍ରୀ ନନ୍ଦନନ୍ଦନ
କଳାଚ୍ଛନ୍ଦ ମହାବାହୁ,
ଚରଣାର ବନ୍ଧ ବନ୍ଦନ ଆନନ୍ଦେ
ଦନ ଗଲ ଗ୍ରନ୍ଥ ଗ୍ରନ୍ଥ —ବାଣୀକଣ୍ଠ ହେ !

॥ ୯ ॥

ବାହୁଡ଼ାଇ ନଅ ବାହୁଡ଼ା-ବଜଯ୍ରେ
ଥିଲ ଅନ୍ତିମ ମାଗୁଣୀ,
ବାହୁଡ଼ା-ସାଆନ୍ତ ବଢ଼ାଇଲେ ହାତ
ପ୍ରଣମୁଛି କୁଳମଣି—ବାଣୀକଣ୍ଠ ହେ !

●

ବାସୁଳ ସାହି,
କଟକ-୧

## ହେ ଅକ୍ଷୟ ! ହେ ଅମର

### ବାସନ୍ତୀଲତା ବାରିକ

ଉତ୍କଳ ଜନନୀ ବରପୁତ୍ର ହେ ହୃଦେଚନ୍ଦନ !
ବାଣୀକଣ୍ଠ ତୁମେ ବାଣୀଙ୍କ ମାନସ-ପୁତ୍ର ରତନେ ।
ଷାଠୋଇଣି କଣ୍ଠେ କରିଲ ସର୍ବଦା ହରି ଗାୟନ
ଭକ୍ତି-ରସ-ପ୍ଲୁତେ କରୁଥିଲ ସଦା ଅବଗାହନ ॥ ୧ ॥
ମା' ସରସ୍ୱତୀ ବରାଭୟଦାୟୀ ସ୍ୱ-କର ତୁଳି
ବାଲ୍ୟକାଳୁ କୋଳେ ନେଇଥିଲେ ଟେକି ଆଶିଷ ଢାଳି ।
ସାରସ୍ୱତ ମନ୍ତ୍ରେ ବିମଣ୍ଡିତ ସ୍ୱର ଝଙ୍କାର ତୋଳି
ଜଗତ-ଜୀବନ ଶ୍ରୀ ଚରଣ-ରେଣୁ ହୋଇଲ ବୋଲି ॥ ୨ ॥
ନିତି ପ୍ରତ୍ୟୁଷରୁ ପ୍ରଦୋଷ ପର୍ଯ୍ୟନ୍ତ ତୁମର ତୁଳି
କଳା ବଦନକୁ ଅନାଇ ଅନାଇ ଅନ୍ତରେ ଖେଳି ।
ନଇବେଦ୍ୟ ବାଢ଼ି ଦେଉଥିଲ ଭକ୍ତି-କୁସୁମ-କଳି
ଶ୍ରୀରଙ୍ଗା ପଦ୍ମର ଧୋଉଥିଲ ନିତି ଲୋତକ ଢାଳି ॥ ୩ ॥
ବାଲ୍ୟ-କଇଶୋର ଯଉବନ-ଜରା ଜୀବନ-ପଥେ
ଆସିଥିଲେ ସତ୍ୟ ପରଖି ଦେବ କି ଜୀବନ-ବ୍ରତେ ।
ଡ଼ୁବିଲ ତୁମର ପବିତ୍ର ଆତ୍ମା ଗୋ ପୂତ ସଙ୍ଗୀତେ
ହରି ବିନା କିଛି ବୁଝି ସେ ନ ଥିଲ ଅନବରତେ ॥ ୪ ॥
ଛନ୍ଦାଚରଣକୁ ବାନ୍ଧିଲ ଭକତ ମମତା-ଡୋରେ
ହଁସାଇଲ ତନୁ କୃପାମୟ-କୃପା ସାଗର-ଜଳେ ।
ସଂସାରରେ ଥାଇ ପରମ ବୈରାଗୀ ଧରମ-ବଳେ
କୃତୀ-କଳାକାର ରଖାଇଲ କୀର୍ତ୍ତି ମର୍ତ୍ତ୍ୟ-ମଣ୍ଡଳେ ॥ ୫ ॥
ବିତରିଲ ଯାହା ସୁଧାମୟ-ସୁଧା କରି ସିଞ୍ଚନ
ବିମୋହିତ କଲ ପ୍ରତ୍ୟକ୍ଷ ବିନାଶି ଜଗତ-ଜନ ।
ସବୁରି ହୃଦୟେ ସ୍ମୃତି-ପଟ ତବ କରି ଖୋଦନ
ଚାଲିଗଲ କାଲ କାଳକୁ ଅମର ବଶ୍ୟ-ବନ୍ଧନ ॥ ୬ ॥

ଧନଶୋ, ବାଇଗଣୀ
କଟକ

## ସ୍ମୃତିତର୍ପଣ

### କୁମାରୀ ସରଳାବାଳା ମହାପାତ୍ର

ହେ ମହାନ ! ହେ ଚିର ନମସ୍ୟ !
ହେ ସ୍ୱର୍ଗତ କଣ୍ଠଶିଳ୍ପୀ ବାଣୀକଣ୍ଠ
ସଙ୍ଗୀତର ମହାକାଶେ ତୁମେ ଥିଲ ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କ
ତୁମରି ଏ ବିସ୍ଫୋଟ ବିଷାଦେ, ଅଶ୍ରୁ ସଜଳ ଆଜି ସବୁରି ନୟନ ।
କିଏ ଆଉ ଆଜି ଲଳିତ କଣ୍ଠରେ ଶୁଣାଇବ
ଭକ୍ତିର ଉଚ୍ଛ୍ୱସିତ ପ୍ରାଣଭରା ମଧୁର ସଙ୍ଗୀତ ମୂର୍ଚ୍ଛନା,
ଗଗନ ପବନ ନିନାଦିତ କରିଦେବ ଆଜି
ଭକ୍ତିର ମୂର୍ଚ୍ଛନା ତୋଳି
ପ୍ରାଣେ ପ୍ରାଣେ ଭରିଦେବ କିଏ ଉନ୍ମାଦନା ।

ଯା' ମଧୁର ଭକ୍ତି ସଙ୍ଗୀତକୁ ଆନନ୍ଦରେ ଭାବ ବିହ୍ୱଳରେ
ଶୁଣିବା ପାଇଁକି କର୍ଣ୍ଣଡେରି ରହିଥିଲେ ପ୍ରଭୁ ଜଗନ୍ନାଥ,
ଯା' କଣ୍ଠର ଲଳିତ ସ୍ୱରରେ ଭାବ ଆଉ ଭକ୍ତିର ବିଭୋରେ
ସ୍ଥଗିତ ହୋଇବ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରାଙ୍କ ରଥ
ଯା' ଭକ୍ତିର ଅମୃତ ନିର୍ଝରେ ଶ୍ରୀମନ୍ଦିରେ କିଏ ଆଉ ଆଜି
ଭକ୍ତି ଗଦ୍ ଗଦ୍ ହୋଇ କାନ୍ଦି କାନ୍ଦି ଅଶ୍ରୁ ଝରେ
ପ୍ରଭୁପଦ କିଏ ପଖାଳିବ ?
ମଣିମା ଶୁଣିମା ହେଉ ଟିକେ କିଏ ଆଉ ଉଚ୍ଚସ୍ୱରେ ଡ଼ାକି
ଶ୍ରୀମନ୍ଦିର ସିଂହଦ୍ୱାର ଠାରୁ କିଏ ପ୍ରଭୁ ପଦ ଶଙ୍ଖୋଳିବ ।
ଏ ମହାନିଦ୍ରାରେ ତୁମେ କ'ଣ ସତେ ଆଜି ଘୋର ନିଦ୍ରା ଗତ
ସ୍ୱପ୍ନ କ'ଣ ସରିବନି ? ନିଦ୍ରା କ'ଣ ଆଉ ଭାଙ୍ଗିବନି ? ?
ନିଦ୍ରା ଭାଙ୍ଗି ଗାଅ ବାଣୀକଣ୍ଠ, ତୁମ କଣ୍ଠୁ ଭକ୍ତି ସଙ୍ଗୀତକୁ
ଏ ସାରା ଜୀବନ ପାଇଁ ଆଉ କଣ ଆମେ ଥରେ ଶୁଣି ପାରିବୁନି ?

ଯୁଗ୍ମ-ସଂପାଦିକା, କର୍ମଚାରୀ ସାଂସ୍କୃତିକ ପରିଷଦ
କଲେକ୍ଟରେଟ୍, କଟକ

# ତୁମ ପାଇଁ ଛନ୍ଦ ହବ ଆଜି ଏ ପୃଥିବୀ !

ଡ଼ାଃ ଉପେନ୍ଦ୍ର ପ୍ରସାଦ ନାୟକ

ତୁମେ ସିନା ଚାଲିଗଲ ହସି ହସି
ବାହୁଡ଼ା ଯାତ୍ରାରେ, ନିଜେ ନିଜକୁ ବାହୁଡ଼ାଇ ନେଲ
କାଳିଆର ଚକା ଆଖି ଦେଖି ଦେଖି
ମୁକ୍ତିର କୋରସ୍ ଗାଇ
ନିର୍ବାଣର ସତ୍ୟକୁ ଛୁଇଁଲ ।
ଜୀବନ ତମାମ ତୁମ
ସ୍ଫୁଲିତ କଣ୍ଠ ସ୍ୱର ଲହରେଇ
ତା'ର ସଙ୍ଗୀତ ଗାଇ
ନିଜ ଦେହ / ନିଜ ମନ
ସୌରଭରେ ଉଜୁଡ଼ାଇ ଦେଲ ।
ମଜ୍ଜି ଗଲ, ତା' ପ୍ରେମରେ ଖାପି ଖାପି
ସାରା ଦେହ / ସାରା ଜୀବନ ପୁଲକିତ କଲ ।
ପ୍ରଚଣ୍ଡ ପ୍ରତିରୋଧକୁ ଅପେକ୍ଷା ନ କରି କେବେ
ପ୍ରତି ମୁହୂର୍ତ୍ତରେ ଅବା କରୁଥିଲ ନୃତ୍ୟ ମୁକ୍ତାବଳୀ
ଆହାଃ କି ବିଚିତ୍ର ତୁମ ସତ୍ୟମୟ ଲୀଳା !
ସକଳ ଜଞ୍ଜାଳ / ଅନେକ ଝଞ୍ଜା ସତ୍ତ୍ୱେ ବି
ତୁମେ ଥିଲ ନିତ୍ୟ ଅନାବିଳ
ଐଶ୍ୱର୍ଯ୍ୟ ଓ ପ୍ରାଚୁର୍ଯ୍ୟକୁ ମଣୁଥିଲ ହେୟ
କଳାରେ ବିତାଇ ଦେଲ ସମଗ୍ର ସମସ୍ତ ।
ପ୍ରତିଦାନେ କି ପାଇଲ, ନ ପାଇଲ ଭିନ୍ନ ଚିନ୍ତା
ଯେ ହିସାବ କରିବାକୁ ମିଳିନାହିଁ କେବେ ଅବକାଶ
ଜଣାଣକୁ ଜଣାଇ ଜଣାଇ ବିତିଗଲ ସମସ୍ତ ବୟସ ।
ସେଇ କାଳିଆର ଅନ୍ତର୍ହିତ ଅଭୟ
ବାଣୀଙ୍କର ଅସୀମ ଦୟାରେ ତୁମେ
ବାଣୀକଣ୍ଠ ହୋଇଗଲ

ଘରେ ଘରେ, ଗଳି କନ୍ଦି ପୁର ପଲ୍ଲୀ
ସହର ବଜାରେ ତୁମେ ହେଲ ପରିଚିତ
ଜନତାର ପ୍ରିୟ ପାତ୍ର, ଏକାନ୍ତ ନିଜର ।
କି ମୋହନ ମନ୍ତ୍ର ଗାଇ
ସଭିଁଙ୍କୁ ଯେ କରିଲ କମିଆଁ,
ଲିଭାଇଲ ପୃଥିବୀରୁ
ଜ୍ୱାଳାମୟ ଅସତ୍ୟର ତୀବ୍ର ରକ୍ତ ନିଆଁ
ତୁମରି ଏଷଣା ଚେଷ୍ଟା
ଜୀବନର ଅକଳନ ନିଷ୍ଠା
ସୃଷ୍ଟି କରିଥିଲ ଯେଉଁ ସତ୍ୟ ଧାରା
ଭକ୍ତି ଆଉ ପ୍ରେମର ନିର୍ଝର
ତୁମ ବିଚ୍ଛେଦରେ ଆଜି
ସେ ସବୁର ଲୁପ୍ତ ହେଲା, ଯୁଗ ଯୁଗାନ୍ତର ।
ଆସିଥିଲ ଦେବଦୂତ,
ବିଭୁ ପ୍ରେମ ଶିକ୍ଷା ଦେଇ
ଚାଲିଗଲ ଆପଣା ବାଟରେ
ଚିହ୍ନର ଚିହ୍ନିବ ସିନା
ଗ୍ରହଣ କରିବ ଯେତେ ସତ୍ୟର ମହକ
ମୂର୍ଖ ତ ସର୍ବଦା ଅନ୍ଧ / ସେ କାହୁଁ ଜାଣିବ କହ ?
ତୁମ ସତ୍ୟ ରୂପ ରଂଗ ଗନ୍ଧ ?
ତଥାପି ତ ତୁମେ ମୂଢ଼ର ପ୍ରାଣକୁ ଦୋହଲାଇ
ଅନନ୍ତ କାଳ ପାଇଁ,
ସୃଷ୍ଟି କରିଗଲ ଯେଉଁ ସ୍ୱତନ୍ତ୍ର ଅଧ୍ୟାୟ
ତାହା ତ ସ୍ୱର୍ଣ୍ଣାକ୍ଷରେ ଝଲସିବ
ଯୁଗ ଯୁଗ ଏ କାଳରୁ ଅନନ୍ତ ସମୟ !



ଅଧ୍ୟାପକ, ଡାକ୍ତର ଅଭିନ୍ନ ଚନ୍ଦ୍ର ହୋମିଓପ୍ୟାଥି
ମେଡ଼ିକାଲ କଲେଜ, ଭୁବନେଶ୍ୱର

# ଶାଳଗ୍ରାମର ନିସ୍ତାର

ଶ୍ରୀ ଚନ୍ଦ୍ରଧର ଦାସ

ଅନ୍ତଂତମର ନିଗମ ଚେତନା ତଳେ
ତୁମେ କିନ୍ତୁ ସାଜିଥିଲ ମହାନ୍ ଉଦ୍‌ଗାତା ।
ଉଦାତ୍ତ କଣ୍ଠରେ ତୁମ
ସାନ୍ଦ୍ର ଜୀବନାନୁଭୂତ,
ସମ୍ବଗତ ପିଆସାର ସୂକ୍ଷ୍ମତମ ସ୍ୱର ।

ଆବର୍ତ୍ତିତ ବିଶ୍ୱର ସଶଧ୍ୱ...
ରୂପାୟିତ ହେଲେ ଯାଇ ତୁମ ହୃଦ କେନ୍ଦ୍ରେ
ତୁମ କଣ୍ଠେ ବୋଲେ ମହାନାଦ,
ଉଦ୍‌ବର୍ତ୍ତିତ ହୁଏ ମହାବେଳା ଅମୃତ ସାଧନେ,
ଝରିପଡ଼େ ଆତ୍ମା କେତେ ପ୍ରାଣର ସଙ୍ଗୀତ,
ସିମିତକ ନିଃଶବ୍ଦ ଆକାଶ ତଳ
ଝରିପଡେ ଶବ୍ଦର ବରଷା,
ବିନ୍ଦୁ ବିନ୍ଦୁ ହୋଇ
ରେଣୁ ରେଣୁ ହୋଇ
ଠୂଳୀଭୂତ ଏକାକାର ପ୍ରାଣର ଉନ୍‌ମେଷେ ।

ତୁମେ କିବା ଦେବଦାରୁ ଏକ
ବଢ଼ିଥିଲ ଦେବତାର ଦ୍ୱାରେ —
ଦେବ ଜନ୍ମ ତରୁ ତୁମେ — ଜମାଇଁ ଚନ୍ଦନ,
ଆଲଟିଲ ଶୀତଳ ସମୀର, ବାନ୍ଧି ଦେଲ ଗ୍ରୀଷ୍ମ
ଆପେ ସହୁ ସୂର୍ଯ୍ୟାତପ
ଅନଭୀପ୍ସୁ ଆପଣା ମସ୍ତକେ ।

ଝଞ୍ଜପବନର ମର୍ମର ପରି ଅମୃତସ୍ୱର ତୁମେ,
ମୁକୁଳର ସ୍ୱପ୍ନ ପରି ନବୋଢ଼ ବଧୂର,
ଫୁଟନ୍ତ ଫୁଲର ନିଃଶବ୍ଦ ପ୍ରସାଦ ଭଳି ଉତ୍‌ଫୁଲ୍ଲ ।
ଏଣୁ ସିନା ତୁମ ଠାରେ
ବୈରୀ ହୁଏ ବନ୍ଧୁ,
ଦ୍ୱେଷ ହୁଏ ଦୀକ୍ଷା,
ଦୂର ହୁଏ ଦସ୍ୟୁର ଦସ୍ୟୁଣା ।

କିବା ତୁମେ ଶାଳଗ୍ରାମ ଏକ
ନିମଜ୍ଜିତ ଆପଣା ସ୍ୱବରେ ।
ବିଖଣ୍ଡିତ ଭୈରବ କି ପଡ଼ିଛି ଛିଟିକି ?
ପଲ୍ୱଳେ ତଡ଼ାଗେ ଅବା ନଦୀ କଲୋଚ୍ଛ୍ୱାସେ
କଲ୍ଲୋଳିତ ସିନ୍ଧୁ ତଳେ କିବା ଶଇଳେ କାନ୍ତାରେ
ବନାନୀର ଏକାନ୍ତ ଅଂଗନେ
ନଗରର ଅନ୍ଧାସ୍ୱ ବସ୍ତିରେ
ତୁମେ କିବା ଅବକ୍ଷିପ୍ତ ପୁଞ୍ଜ ଗର୍ଭ-ପ୍ରାଣ !
ସତେ ଅବା ପ୍ରେମର ମଞ୍ଜୁଷା !
ସ୍ନେହର ଶ୍ରାବଣ !
ହ୍ଲାଦିନୀର ହୃଦ ସମ ଉଦାର, ଗଭୀର
ଉଚ୍ଛଳ ତରଂଗିଣୀ ସମ ନିଜେ ଯାଅ ବହି
ନିଜ ଗିରି ଖୋଳେ ।
ଗିରି ନୁହଁ, ତୁମେ ଏକା ଗିରୀଶ ଗରିଷ୍ଠ
ମଣି-ପୁର ନାଭି ସ୍ଥଳେ ଯାଂର
ଛଣି କଣି ନିକ୍ୱଣର ନଟ୍ଟର ନିଃସ୍ୱନ,
କଣ୍ଠ ଗିରେ ନାଦ ହୋଇ ସେ ନିଃସ୍ୱନ ଝରେ ।
ବୀଣା ସମ ମଧୁସ୍ରାବୀ — ଉଲ୍ଲାସ ତରଂଗ ।
ଏଣୁ ତୁମେ ହେଲ ବାଣୀକଣ୍ଠ —
ବାଣୀ ଲଗି କଣ୍ଠ ଉତ୍‌ସାରିଣ,
ବାଣୀ ସୁରେ ପୁଞ୍ଜୀଭୂତ ସ୍ୱର୍ଗ,
ସତେ କିବା ଶବ୍ଦର ଆକାଶ
ଏକାନ୍ତେ ପଡ଼ିଛୁ ଲେଟି ବଲ୍ଲକୀର ତାରେ !

ପଶ୍ମକ୍ଷିତ ଭକତର ହେ ଉତ୍ତୀର୍ଣ୍ଣ ସାଧକ !
ଚକାଡୋଳା-ମୁକୁଟରେ ଆବର୍ତ୍ତିତ ତୁମେ,
ଗୁରୁଭାର ସହୁ ସହୁ ଗରୁଡ ସାଜିଛ,
ସମ୍ମୁଖରେ ପ୍ରଶାନ୍ତ ଗଗନ,
ପଶ୍ଚାତରେ ଭାରତର ପୃଷ୍ଠ ତବ ବିପୁଳାୟତନ,
ବହୁପାର ବ୍ରହ୍ମାଣ୍ଡର ପ୍ରାଣର ପୁଳକେ ।

ଲଲାଟରେ ଆଲିଂପନ ଶୋହେ, ବୈଷ୍ଣବ ସନ୍ତକ—
ବିନ୍ଦୁ ବଳୟର ଆପୂର୍ଣ୍ଣ ପ୍ରତିଭୂ ।
ଆର୍ଯ୍ୟପୁତ୍ର ତୁମ୍ଭେ ବ୍ରହ୍ମବାଦୀ ପୁରୁଷ ପୁଙ୍ଗବ,
ସ୍କନ୍ଧେ ସାଜେ ବ୍ରହ୍ମ-ଉପବୀତ,
ଯେଉଁ ହାତେ ଝଣତ୍କାର ଷଡ଼ରିପୁ ନିଶାଣ,
ସେଇ ହାତେ ଶୋଭାପାଏ ତମାଲ ଚମ୍ପକ,
କେତକୀ କମଳ—ସମର୍ପିତ ବ୍ରାହ୍ମଣ ଅଞ୍ଜଳି ।

ଭକ୍ତମଣି ସୁଦାମା ଓ ସାଲବେଗ ପରି
ତୃଣର ମସୃଣ ତଳେ ତୁମେ ଦେଖ
ଗୋଲକର ନିତ୍ୟାନନ୍ଦ-ବିଳାସ-ଭୁବନ,
ନୋହିଲେ କି ହେବ ସଙ୍ଗୀତ-ନିର୍ବାଣ !
ବଡ଼ ଦାଣ୍ଡେ ସିଂହଦ୍ୱାରେ
ଅବା ଶ୍ରୀମନ୍ଦିରେ ଗରୁଡ଼ ପଶ୍ଚାତେ,
ଚନ୍ଦନ ଅର୍ଗଳି ଦେଇ
ଶିଶିଖାରେ ନେନ୍ଦିଭୂତ ଚନ୍ଦ୍ରପାଢ଼ୀ ତଳେ,
ଊର୍ଦ୍ଧ୍ୱେ ତୋଳି ପ୍ରସାରିତ ଭୁଜ,
ଊର୍ଦ୍ଧ୍ୱମୁଖ ନିମଜ୍ଜିତ କରି
ବିଚ୍ଛୁରିତ ଶିଖାର ଝଙ୍କାରେ—
ଦୀପ୍ତ ସେଇ ଚକାଆଖି ତଳେ,
ଅଷ୍ଟାଙ୍ଗରେ ମନ୍ତ୍ରଗତ କରି
ଗାଉଥାନ୍ତ ମହାରସେ
କଣାଣ ଭଜନ, ଛାନ୍ଦ, ଚମ୍ପୂ, ଓଡ଼ିଶୀ କୀର୍ତ୍ତନ,
ଲୋକଗୀତ କାବ୍ୟ-ଗୀତ ଅମୃତ ସଂସ୍କୃତରେ ?

ତୁମ ଲାଗି ରଥଯାତ୍ରା ମନୋରଥ-ଯାତ୍ରା ।
ଉଚ୍ଛଳିତ କଣ୍ଠ ତୋଳି ମାଳଣୀ-ବେଦୀରେ
ଗାଅ ତୁମେ ପ୍ରତିବର୍ଷ ଚକାଡୋଳା-ଗୀତ ।
ମେଦିନ ସେ ବାହୁଡ଼ା ଯାତରା,
ପାର୍ଶ୍ୱରେ ଅବସନ୍ନ କ୍ଳାନ୍ତ ବ୍ରହ୍ମଦାରୁ,
ନିମୂର୍ତ୍ତିର ଗଣ୍ଡଦେଶେ ଝରେ ସ୍ୱେଦ ବିନ୍ଦୁ ।

ଚକିତ ଦେବତାଗଣ ଊର୍ଦ୍ଧ୍ୱେ ଛନ୍ତି ମହା ପ୍ରତୀକ୍ଷାରେ—
ତଳେ ଉଠେ ମହାରୋଳ ଭକ୍ତଙ୍କ ଗହଣେ ।
ବଡ଼ଦାଣ୍ଡ, ମରୁନଦୀ-ପଠା ସମ ବିଶାଳ ବିସ୍ତୃତ ।

ଅଭ୍ୟନ୍ତରେ ବିରାଜନ୍ତି
ବଳିଆର ଭୁଜ ଯୋଗାରୂଢ଼ ନିପଟ କାଳିଆ ।
ତୁମେ କିନ୍ତୁ ବାଣୀକଣ୍ଠ ହେ ହରଚନ୍ଦନ !
ମାଗିନେଲ ତୁମ ଶେଷ ଭିକ୍ଷା—
"ତୁମର ଏ ବାହୁଡ଼ା ଯାତ୍ରାରେ
ବାହୁଡ଼ାଇ ନିଅ ମୋତେ ହେ ଚକାଡୋଳିଆ,
ନାହିଁ ଆନ ଅଭୀପ୍‌ସା ମୋହର,
ଏକମାତ୍ର ସାଧନ ମୋ ତୁମର ସଙ୍ଗମ ।"

ଜୀବ ଗଲା ପରମର ସାଙ୍ଗେ,
ସିଂହଦ୍ୱାରୁ ସ୍ୱର୍ଗଦ୍ୱାର ଆଉ କେତେ ପଥ !
ଶରଧାରୁ ବେଲାଭୂଇଁ କେତେଦୂର ସତେ !
ମାତ୍ର ତୁମେ ରେଣୁ ରେଣୁ ହୋଇ ପଞ୍ଚଭୂତେ ମିଶି
ସେ ଦୂରତା ଛିନ୍ନ କଲ,
ଏକାକାର କରିଗଲ ମନ୍ଦିର ମଶାଣି,
ସାଗରର ଉଚ୍ଛଳ ତରଙ୍ଗ ହଜିଗଲା ଶରଧା ବାଲିରେ !

ଶ୍ରୀଚୈତନ୍ୟ ସମ ତୁମେ
ନେତ୍ର-ବଳୟରେ ଆପେ ଗଲ ହଜି,
ସତେକି ସେ ବିଗ୍ରହ ଶ୍ରୀବକ୍ଷର
ଅଭିହାର ହେଲା ଅଭିସାର,
ସମର୍ପଣ ହେଲା ସନ୍ଦୀପନ ।

ଶ୍ରୀରାଧାର ପ୍ରାଣ-ଜୀବଜୀବ ଲଭିଲା ଅଗାଧ ।
ଭକ୍ତମଣି ହେଲା ଭଗବାନ ।
ଜୀବଜୀବ-ଡେଣା ତଳେ
ଶାଳଗ୍ରାମ ଭଜିଲା ନିସ୍ତାର ।



ତପୋବନ, ଖଣ୍ଡଗିରି,
ଭୁବନେଶ୍ୱର ।

# ହେ ବାଣୀକଣ୍ଠ !

## ଶ୍ରୀ ରମେଶ ଚନ୍ଦ୍ର ଧଳ

ହେ ବାଣୀକଣ୍ଠ !
ତୁମ ସ୍ୱର ନନ୍ଦନ କୂଳେ କୂଳେ
କେତେ ତରୁ କେତେ ଲତା
ତା'ର ସ୍ନିଗ୍ଧ ଛାୟା ତଳେ ବସି
ମଣିଷ ଭୁଲି ଯାଉଥିଲା ତା'ର
ଯେତେ ସବୁ ଅସୁମାର ଶୋକ
ଆଉ ଭଲ ପାଇ ବସୁଥିଲା
ଉଡ଼ି ବୁଲୁଥିବା ଛବିଲ ପ୍ରଜାପତି
ଠେକୁଆ ଛୁଆ, ଜଳ ଜନ୍ତୁ, ବନ ହରିଣା
ଘରଝାଡ଼ି ଉଡ଼ି ଯାଉଥିବା ଗେଣ୍ଡାଳିଆ
ଓ ନଜେ ନଜକୁ
ସତରେ ତୁମ କଣ୍ଠ ନେଜତେ ମଧୁର
କେତେ ଅନୁରାଗ ଆପଣାର

ଯମୁନା ତଟରେ ମୁରଲୀ ମୂର୍ଚ୍ଛନା
ବାଣୀକଣ୍ଠର ସ୍ୱର ସଙ୍ଗୀତ
ଛୁଇ ଆଲୁଅର ଅନେକ ଦିଗନ୍ତକୁ
ସ୍ମରଣ କରାଇ ଦିଏ
ସବୁ ଏକ କଥା ।
ତେଣୁ ଆଜି ଶାନ୍ତ
ଶାନ୍ତ ତୁମର ସ୍ୱର
ମଣିଷର ଦୁଃଖର ସୀମା
ଆଜି କେତେ ଦୂର ବଢ଼ିଗଲା ସତେ ?
ଏ ଜାତି ଆଜି
ତୁମକୁ ନମସ୍କାର କରୁଛି,
ସ୍ମରଣ କରୁଛି ।

●

ପ୍ଲଟ ନଂ-୧୩/ଏ
ଷ୍ଟେସନ ବଜାର, ୟୁନିଟ-୩
ଭୁବନେଶ୍ୱର-୭୫୧୦୦୯

# ଯୋଗଜନ୍ମା

## କେନା ଆଦିତ୍ୟ ପ୍ରତାପ ବାଘସିଂହ

॥ ଏକ ॥

ହେ ବାଣୀକଣ୍ଠ !
ତୁମର କଣ୍ଠ
ଝରିଲା ଯେ ଗାନ/ଭଜନ ଜଣାଣ
ଚମ୍ପୂ, ଓଡ଼ଶୀମାନ
ସାରା ଉତ୍କଳ ଚମକାଇ ଦେଲା/ଚହଲାଇ ଦେଲା
ଜାତୀୟ ମନ୍ତ୍ର ମନ୍ଥିତ କରି/ମନ୍ଥିତ କରି
ଏ ଜାତି ଜାତୀୟ ପ୍ରାଣ ॥

॥ ଦୁଇ ॥

ଯୋଗଜନ୍ମା ହେ ତୁମେ ଜନ୍ମିଲ
ଏ ଜାତି ପ୍ରାଣକୁ ସୁନ୍ଦର କରି/ଗଢ଼ି ତୋଳିବାର ପାଇଁ
ଭକ୍ତି ରସର ଆସ୍ୱାଦନାରେ ଡୁବାଇ ଡୁବାଇ
ମାନବକୁ ପୁଣି ମାଧବ କରିବା ପାଇଁ
ଯୁଗ ଯୁଗ ପାଇଁ/ତୁମରି ଏ ଦାନ
ଏ ଜାତି କଦାପି ପାଶୋରି ପାରିବ ନାହିଁ ॥

●

ଉଗତପୁର,
କଟକ-୯

# His Golden Voice Echoes In

**Smt. Padmalaya Das**

His golden voice echoes in the hearts of two generations of Oriyas. Homesick men and women, residing outside the State, crowd round gramophones to hear his songs. For the singing of Nimai Charan Harichandan spells home to them. It brings back memories. Of the lonely cart-man twisting the tails of his bullocks and bursting into melody. Of the sometimes cruel, sometimes beautiful river or stream by their backyards. Of the surging waves restless sea. Of a hoary past and hazy future. Of splendid sagas and plain home-truths. And most of all of the Black-faced Round eyed one Jagannath.

For, besides his wide repertoire of songs including chhanda and palligeeta, Nimai Charan Harichandan specialises in singing jananas, those moving hymns to Jagannath that reveal the endearing familiarity of the Oriya with his god.

When those passion-filled notes reverberate in an auditorium or float from a simple open air stage, they bring tears to the eyes of his audience. They call a halt to mundane thoughts. The sorrow and sordidness of life. The pinching and the striving. The ridiculous rat race. Everything is put in proper perspective as the mind soars upwards seeking something higher.

He sings in the rugged parlance of the countryside. whose unsophisiticated people take their god to task for neglecting them and who scoff at modern mores, at so-called sophisticated,

He chooses his songs with care to suit his ethos and sets them to his own tunes. And he has his favourites among lyric writers

'There can be none like the late Nikunja Kishore Das' he said a little sadly. 'He could write a song for me within a few hours. I only had to hum within the tune for him. And he would start writing.' He has sung many of his songs.

'Garajila megha barase nahin go' (The clouds that roar bring no rain) composed by Nikunja Kishore Das was one of his earliest songs It was recorded in 1934. Nimai Charan Harichandan reminisced, he had sung it first at the marriage of the present Raja of Kanika.

About Madhusudan Das, the architect of modern Orissa—'A Great

Man. He used to encourage me. As Nikunja Babu and I followed the coffin of Madhu Babu, along with thousands of others, I told him to write a song for me. To sing at the condolence meeting at the Town Hall that evening. He scribbled it as I sat talking with him at his house. In an hour and a half. "

**The Round Eyed One :**

He has been singing since boyhood. 'After all, how much longer can I sing? Another two years at the most' said the 68 year old singer. His hair is grey, but he looks younger than his age. He has a buoyancy and boundless energy which keep him young in spirit.

He is no faded singer past his prime, craving for crumbs of appreciation. Tune into All India Radio, Cuttack on Ratha Yatra day (July 16) and find out for yourself, For he has just recorded eight songs to be specially broadcast that day.

That great voice has not lost an iota of its old magic or vigour. His music continues to hold one enthralled, and most people have their favourite songs. Here is one composed by Vinayak Mishra:

Chaka-dola Kipan Daka
Kipan daka na suna.

( Round-eyed one, why don't you heard my call ? )

A bright optimist, he can put the younger generation to shame with his bold faith in the future. Once, when he came to see me, he seemed very happy. 'The Utkal University boys have invited me to sing,' he said happily, his eyes glistening with unshed tears. It seemed a small triumph for him to find that the younger generation did not consider him a fossil, but enjoyed the vigour and verve of his music.

The grand volume of his voice can not be cowed down by modern contraptions. He was recording the opening song for the film Sree Jagannath at Calcutta. The massed musicians were ready. The conductor's baton was poised. Down came the sign and up soared the voice.

Stop ! Stop ! yelled the sound engineer, dashing in to rescue his mike whose delicate mechanism must have been splintered by the stupendous volume of sound Nimai had let loose.

He is no crooner with affected gimmicks, who whispers softly into a mike. For, he is one of those stalwarts who has sung of mammoth audiences and awakened latent nationalism at the meetings of the Utkal Sammilani of yore with no loud speakers to aid him.

And he is a seasoned gramophone artists too with 120 recordings to his credit. Once the royalty he received

from the sale of his records came to quite a handsome sum. But now it has dwindled, from several thousand rupees to some tenners. "Only Rs. 34.50 last time," he said with a deprecating smile.

**Court Singer :**

He lives in Athgarh in a large double-storied house gifted to him by the Raja of Athgarh, Radhanath Deb Burman or Radhanath Bebarta Patnaik

Married in 1926, he has a devoted and charming wife, who still wears her lovely dandi ( nose pendant ). (But ah, are n't our girls going around adorned with nose-rings again ? Height of fashion now. )

"My first guru was Gokula Chandra Srichandan. Madhav Rao taught me Hindusthani classical music. He used to stay at Kendrapara and teach music to D da ( Gokula Chandra Srichandan ) and me."

Nimai is quite candid about his antecedents No chip on the shoulder. Of the Kendrapara zamindar family to which he belongs, he says, 'They were Jenas three or four generations earlier. Then they were given the titles of Srichandan and Harichandan Because of money power.'

When he is home at Athgarh every day at eventide he sings before Jagannath at the local Jagannath temple. And many come to hear him.

A deeply religious man, he is a vegetarian and does not take even onion and garlic. And whatever he eats is first offered to god. Every time he comes to Cuttack, he goes to the Chandi temple. And every three or four months, he makes a trip to Puri to sing in the great assembly hall before the Lord of the Universe.

He always wears a religious mark on his forehead. A sign of his deep faith in god.

"You have seen I myself don't sing. Someone else sins," he said.

**Great Grandpa Going Strong :**

Why is there a slump in the sale of your gramophone discs ? Why ? "Because of the radio," he said. "And also because younger people prefer adhunika songs." he said candidly.

" I started singing on the radio for Rs. 5 in Calcutta. Now, I receive Rs. 9'. 90 ( including my travel expenses) I am an 'A' class artist."

'For ten years I used to get four programmes a month from All India Radio. Now I get one every two months"

"As it is, people buy less gramophone records now-a-days. And at marriage parties and pujas, they now play only film music. Radios and transistors have swallowed the rest of the market."

"Some one asked me, 'What's new ?' And I said, 'Now we are running after people strapped behind their bicycles,' he grinned good-humouredly, implying the ubiquitous portable transistors. There is no bitterness in him, whatever the frustrations of life. He leaves it all to Jagannath.'

Now more people are learning to sing. It's good to see so many girls also singing.

"Moffusil people particularly appreciate my clear pronunciation of words.'

"When the first Sarvodaya conference was held in Orissa, about 900 people were spinning. When I started singing 'Patita jananku uddhariba payin' ( To redeem sinners ) their hands stayed poised in one position. Like so many still figures.

"In 1953 I performed in Delhi with another party of musicians. The Sangeet Natak Akademi had arranged it." He has given recitals all over Orissa as well as at Delhi, Jamshedpur and Titaghur.

Father of three sons and three daughters, he has twenty-six grandchildren and one ana-nati or great-grandchild.

"I have been advised to drink milk to keep up my strength, since I'm a vegetarian. I'm not able to get milk since some months now. My cows died.' A cheerful jovial person, you would not think he's nudging seventy.

Daily he gets up at 4 a m. "By the time I finish reading the Ramayana and doing my meditation and prayers, it's 8 a. m. I go daily to the temples for darshan of Govinda and Jagannath." He wears a stone-set silver ring. "This is gomeda to counteract my Rahu dasa" he twinkled.

Before this great singer becomes but a memory, may be we could do something to better his latter days.



Hindustan Standard, July 8, 1969.

Bhasakosa Lane, Cuttack.

My Songs are only for him

# Banikantha Nimai Charan Harichandan

**Shri Himansu Kumar Mohanty**

Every morning, while entering into the temple, one will hear a melodious microphone Bhajan either from the man himself singing at the mouthpiece or from the record. After the Alati of Lord Jagannath, the same man could be seen in front of the Almighty singing Bhajans and serving Chamar devoted to him. One can easily guess the young tone of 75 and that man is Padmashree Banikantha Nimai Charan Harichandan.

Everyday I see him at the aforesaid places and hear the beautiful bhajans coming out of the unique golden tone. Wearing a pair of Mathas and a Chamara in his hand, the man looks very decent. He walks with the help of a stick for the troubles in the old age.

One day in the temple I approached him for an interview at his convenience, usual loving words came out from him, "O. K. Come to my house at Matimandap Sahi. Perhaps you have seen mine. It will be better to have an interview there."

In an evening. I reached his dwelling house while he was hearing to the Regional News at 6-20 P. M.

My first attempt was at his identification. He began answering my question. "I was born on 9th July 1901 at Kendrapara. Right from our forefathers till myself we were residing there. My great grand father was the Zamindar of Kendrapara. Radhashyama Narendra was my grand father. The name of my father was Brundabana Chandra Harichandan People of the locality wonder when I am not able to read an English letter. To them it is a humour of mine towards them. Really I am not highly educated. I passed Minor in second class and I had to leave the school for family disorders."

Then he answered my next approach about the beginning of his musical career. "There was Govinda Temple at Kendrapara where regular kirtons were being held. I was a spectator and participant in those kirtons My affection for music developed there which helped me very much in emergence of my musical potentiality. After leaving the school, at the age of sixteen, I began to learn music with all my attention devoting for it. Late Gokula Chandra Srichandan and late Artabandhu Patra

were my Gurus. I was completely mixed up with gradually I became a professional singer singing only for the Lord of the Universe, whom you call Lord Jagannath."

Suddenly I wanted to know why he says that all his songs are only for Him. "I never liked to sing anything other than odisi Champu, Chhanda, Janana, Vajan. He has created us. In my days, people were appreciating and were very much fond of the said types of songs. Under these circumstances, I began to sing these and was accustomed in singing nothing other than these.

He says, "I had achieved the climax of popularity and the taste of the people allowed and helped me in this aspect In 1933. the Raja of Athagarh invited me to his court as his singer. He provided me a house, other necessaries and one hundred acres of land. Besides all these he gave me a monthly income of thirty rupees. I remained there for fourteen years quite happily."

**120 Songs:**

About his records he said; "HMV company has made sixty records of mine in which I have sung one hundred and twenty songs The company made my first record in 1934 and it continued to make till 1966. After 1966 my rocords stopped selling becat se the choice of the people has changed. The Orissa government has made fifteen records. At about thirty songs are there. Delhi Sangit Natak Akademy has made seventeen records. It does not matter whetner my rocords sell or not, I have been singing as a professional singer since 1933."

Previously I had heard that he participated in some films. I asked him. He replied, " In 1949 an Oriya film 'Sri Jagannath' was made. I sang two songs. In the beginning of the picture I sang 'Nila sindhu tire nila achala' and towards the end 'Chaka dola kimpa daka'. Then aftar I have not participated in any film Of coursc, some documentary pictures were made in 1960 by the government.'

Modern songs and pop song ara now headche to some, I enquired about his attitude towards the modern Singers and sings. Answering me he said, "The modern singers are undoubtedly singing well. But you see the modern songs are not stable. The old traditional Odissis, Champus, Chhandas, Bhajans, Janans have their originality in Orissa. They are stable and they will exist. Perhaps the degree may differ from the old days in relation to today and coming days."

About his financial condition, he said, " I have three sons. One is an ex-military man, another is an advocate and

the last is working in PWD. So I am not in a bad financial position. From the month of August last I have been receiving a pension from the Government of Orissa Rs. 100 per month and will continue to get till the end of my life. All India Radio is giving a monthly pension of Rs. 100 for an year from the last March and I shall get it till the month of February 1977. They are giving me because I have been singing over A. I. R. since its establishment of Cuttack Station in 1948 I sung on its opening day. And till to day, I am-singing.''

About his family and social life he says, "I have three sons and three daughters. All are married. I have a happy family life, I have come in contact with all kinds of people I came to Puri in 1969 and in 1971. I got the opportunity of 'Chamar seva' for Lord Jagannath and I shall perform my duties till my death."

The Government of India has awarded him 'Padmashree' in 1976, in recognition of his talents. Banikantha, this designation was conferred to him by the HMV company. Once our beloved leader Dr. Harekrushna Mahtab described him as 'Binakantha'. He is very lucky to serve Lord Jagannath for his whole life through his immortal music. For ages together people will remember him and his songs.

My last question was about his favourite songs and poets. He says that he has sung many songs of different poets. Even his advocate son Rajendra kishore Harichandan writes and he sings He is very fond of the songs composed by Kabisurya Baladeb Rath, Kabisamrat Upendra Bhanja, Dinakrushna and Salabeg. And some of his favourite songs are 'Nila sindhu tire, Patita jananku uddhariba payin, Chakadola kimpa Daka, Chakanayanaku patita kahi, Krupa sindhu badan, Jagatarnath Kalia saanta, Mana uddharan etc.



The Eastern Times—12. 1. 77

# ନିମାଇଁ ଚରଣ

ଶ୍ରୀ ରବିନାରାୟଣ ମହାପାତ୍ର

ସେ ଶସ୍ତା ଲୋକପ୍ରିୟତା ପରିବର୍ତ୍ତେ ଆଧ୍ୟାତ୍ମିକତାକୁ ସଙ୍ଗୀତର ଉପଜୀବ୍ୟ କରି ନେଇଥିଲେ । ତାଙ୍କର କଣ୍ଠ ଲକ୍ଷ ଲକ୍ଷ ଜନତାଙ୍କୁ ଆମୋଦିତ କରି ଦେଇଛି । ତାଙ୍କର କୌଣସି ଶତ୍ରୁ ଅଛନ୍ତି ବୋଲି ସେ ସ୍ୱୀକାର କରୁ ନ ଥିଲେ । କାନ୍ତ-କୋମଳ ପଦାବଳୀର ସାଧକ ହିସାବରେ ସେ ଜଣେ ଭଲ ଏବଂ ଉଦାର ମଣିଷ ଥିଲେ ।

ଆଠଗଡ ବିଦ୍ୟାପୀଠର ତତ୍କାଳୀନ ଶିକ୍ଷକ ବାଇଧର ପାଠୀ ଜେଲଖାନା ପାଖ ଗୋଟିଏ ସ୍କୁଲଘରେ ରହୁଥା'ନ୍ତି । ନିମାଇଁ ଚରଣଙ୍କ ପୁତ୍ର ରାଜେନ୍ଦ୍ର ଏବଂ ଏଇ ଲେଖକ ବାଇଧର ବାବୁଙ୍କ ନିକଟରେ ପଢ଼ୁଥାଉଁ । ନିମାଇଁ ଚରଣ ଦିନେ ଦିନେ ସଂଧ୍ୟାବେଳେ ବୁଲି ଆସନ୍ତି । ଚାଲେ ସାହିତ୍ୟ ଓ ସଙ୍ଗୀତର ଚର୍ଚ୍ଚା । ବାଇଧର ପାଠୀ କବି, ସ୍ୱତଃସ୍ଫୂର୍ତ୍ତି କବି । ଅବଶ୍ୟ ସେ ଓଡ଼ିଶାର ବର୍ତ୍ତମାନ ବାତାବରଣରେ କବିର ପ୍ରତିଷ୍ଠା ହାସଲ କରି ନାହାନ୍ତି । ସେଥିପାଇଁ ତାଙ୍କର ଅଭିଯୋଗ ମଧ୍ୟ ନାହିଁ । କବି ପତ୍ନୀ ତିଳୋତ୍ତମା ଏବଂ ପୁତ୍ର 'କବି' ଯେପରି ଏକ ସୁନ୍ଦର ଶାନ୍ତ ପରିବାରରେ ଫୁଲ ପରି ଫୁଟି ଥାନ୍ତି, କବି ବାଇଧରଙ୍କ କବିତା—"ଥିଲେ ଦୁଟିହିଁ ଶୁଆ ଶାରୀ—ଶୁଆଟିର ନାମ ମୋହନ ସୁନ୍ଦର, ଶାରୀ ନାମଟି କସ୍ତୁରୀ ।" ନିମାଇଁ ଚରଣଙ୍କ କଣ୍ଠରେ କବି ବାଇଧରଙ୍କ କଳ୍ପନା ଓ ସ୍ୱପ୍ନ ଯେପରି ଦିଗନ୍ତ ବିସ୍ତାରି ଥାଏ ।

୧୯୪୮ ମସିହାର ଏ ଘଟଣା ଏବେ ମଧ୍ୟ ଜୀବନ୍ତ । ବାଇଧର ବାବୁ ଆମର ଶିକ୍ଷକ । ସେ ଶିକ୍ଷକ ହିସାବରେ ଆମର ମଧ୍ୟ ଅନ୍ତରଙ୍ଗ ବନ୍ଧୁ । ଶାସ୍ତ୍ରୀୟ ଗୁରୁର ସମ୍ମାନ ସେ ଆମଠାରୁ କେବେ ଦାବୀ କରି ନାହାନ୍ତି । ମୋ ପିତାଙ୍କ ଠାରୁ ବୟସ୍କ ଓ ସାମାଜିକ ଚଳଣୀରେ ଦଦେଇ ଡାକୁଥିବା ନିମାଇଁ ଚରଣ ମଧ୍ୟ ଆମର ବନ୍ଧୁ । ତାଙ୍କ ପୁତ୍ର ମୋର ସହପାଠୀ ହେଲେ ମଧ୍ୟ ବନ୍ଧୁତା ଯେପରି ବୟସର ପାର୍ଥକ୍ୟକୁ ଅତିକ୍ରମ କରି ଯାଇଥିଲା । ତାଙ୍କର ହୃଦ ଖୋଲା ହସ ଏବଂ ଅକୃତ୍ରିମ ସ୍ନେହ ତାଙ୍କୁ ମହନୀୟ କରିଛି । ଏଇ ଉଦାରତା ତାଙ୍କ ସଙ୍ଗୀତକୁ ପ୍ରାଣବନ୍ତ ଏବଂ ପ୍ରଭାବଶାଳୀ କରିଛି ।

ପୁଣି ଚକାଡୋଳାଙ୍କ ନିକଟରେ ତାଙ୍କର ସଂପୂର୍ଣ୍ଣ ଆତ୍ମ ସମର୍ପଣରେ ନିବେଦିତ ପ୍ରାଣର ମହକ ଯେପରି ସର୍ବତ୍ର ସଞ୍ଚରି ଯାଉଛି । ସେ ଯଥାର୍ଥରେ ସଙ୍ଗୀତଜ୍ଞ ।

ଏହାଛଡ଼ା ନିମାଇଁ ଚରଣ ନିଜେ ସ୍ରଷ୍ଟା । ସେ ବହୁ ସଙ୍ଗୀତ ରଚନା କରି ନିଜେ ଗାନ କରିଛନ୍ତି । ତାଙ୍କ ରଚନାର ପ୍ରଧାନ ମାଧ୍ୟମ ସଙ୍ଗୀତ ହୋଇଥିବାରୁ ସମାଜ ସମୁଦାୟର ପ୍ରତିସ୍ତରକୁ ସ୍ପର୍ଶ କରି ପାରିଥିଲା । ଆଧ୍ୟାତ୍ମିକତା ଏଇ ସ୍ପର୍ଶକୁ ନିବିଡ଼ କରିଥିଲା । ନିମାଇଁ ଚରଣ ଯେଉଁ ହିସାବରେ ଓଡ଼ିଆ ସ୍ୱାଭିମାନର ପ୍ରତୀକ । ଆଧୁନିକ ସାହିତ୍ୟରୁ ସଙ୍ଗୀତକୁ ନିର୍ବାସିତ କରାଯାଇଛି । ନିମାଇଁ ଚରଣ ସାହିତ୍ୟ-ସହିତ ସଙ୍ଗୀତର ପୁନର୍ମିଳନ ପାଇଁ ନିଜସ୍ତରରେ ସାଧ୍ୟମତେ ଉଦ୍ୟମ କରିଛନ୍ତି । ତାଙ୍କର ଯୁକ୍ତିଥିଲା ଯେ ଆଧୁନିକ ସାହିତ୍ୟ ପାଶ୍ଚାତ୍ୟ ଚିନ୍ତାଧାରାରେ ପ୍ରଭାବିତ ହେଉଥିବାରୁ ଅନୁଭୂତି ସୁଲଭ ନୁହେଁ । ତେଣୁ କେବଳ ସହସ୍ର ଆଧୁନିକ ଶିକ୍ଷିତ ଗୋଷ୍ଠୀରେ ସୀମାବଦ୍ଧ । ମାତ୍ର ସଙ୍ଗୀତ ଭରା ସାହିତ୍ୟ ସମକାଳୀନ ସମାଜର ପ୍ରତିସ୍ତରକୁ ଅନାୟାସରେ ସ୍ପର୍ଶ କରି ପାରିବ ।

ସେଥିପାଇଁ ସେ ଖଣ୍ଡନର ଆଶ୍ରୟ ନ ନେଇ, ମଣ୍ଡନକୁ ଶ୍ରେୟ କରିଛନ୍ତି । ଏଇ ମଣ୍ଡନ ମନ୍ତ୍ର ତାଙ୍କୁ ସୌନ୍ଦର୍ଯ୍ୟର ଉପଯୁକ୍ତ ପୂଜାରୀ କରି ଗଢ଼ିଛି । ଏଇ ପରି ମଣିଷ ସମାଜର ଉପବନରେ ସୁବାସିତ କୁସୁମ, ନିମାଇଁ ଚରଣ ଓଡ଼ିଶାର ସାମାଜିକ-ଉପବନର ଜଣେ ସୁବାସିତ କୁସୁମ ହିସାବରେ ଦେଶ-ଦଶର ମନପ୍ରାଣକୁ ଆମୋଦିତ କରି ପାରିଥିଲେ । ଆଧୁନିକ ଓଡ଼ିଶା ଏଇ ପ୍ରତିଭାବନ୍ତ ସଙ୍ଗୀତଜ୍ଞ ସ୍ରଷ୍ଟାଙ୍କୁ ବହୁକାଳ ଧରି ମନେ ରଖିବ । ଜଗନ୍ନାଥେ ଓଡ଼ିଶାକୁ ଆଶୀର୍ବାଦ କରନ୍ତୁ ନିମାଇଁ ଚରଣଙ୍କ ପରି ଗୁଣୀ ଓ ଗୁଣଧରଙ୍କ ବାଣୀଗୁଞ୍ଜନରେ ଓଡ଼ିଶାର ବାତାବରଣ ସ୍ୱର୍ଗୀୟ ହୋଇ ଉଠୁ ।

ଝିତ ହାଟ,
କଟକ-୭୫୩୦୦୧

# ମୋ ଜେଜେ ବାବା

## ଶ୍ରୀ ପ୍ରଶାନ୍ତ କିଶୋର ହରିଚନ୍ଦନ

୧୯୮୩ ମସିହାରେ ମୁଁ ଆଠଗଡ଼ କଲେଜରେ ବି. ଏ. ପଢୁଥାଏ । ପରୀକ୍ଷା ଆରମ୍ଭ ହେବା ପୂର୍ବରୁ ମୋର ଶରୀର ଏପରି ଅସୁସ୍ଥ ହେଲା ଯେ, ପରୀକ୍ଷା ଦେଇ ନ ପାରି କଟକ ବଡ ଡାକ୍ତରଖାନା ନର୍ସିଂହୋମରେ ଭର୍ତ୍ତି ହେଲି । ସେଠାରେ ଥିଲା ବେଳେ ଜେଜେ ବାବା ମୋ ନିକଟକୁ ନିୟମିତ ରିପ୍ଲାଇ କାର୍ଡ଼ରେ ଚିଠି ଦେଉଥିଲେ, ମୋର ଦେହ ବିଷୟରେ ଅବଗତ ହେବା ପାଇଁ । ସେହି ସମୟରେ ଜେଜେ ବାବାଙ୍କ ଦେଇଥିବା କେତେଖଣ୍ଡ ଚିଠିର ନକଲ ନିମ୍ନରେ ପ୍ରକାଶ କରୁଛି ; ଯେଉଁଥିରୁ ଜଣାପଡ଼ିବ ଯେ ତାଙ୍କର ଜଗନ୍ନାଥଙ୍କ ଉପରେ କିପରି ଅଟଳ ବିଶ୍ୱାସ ଥିଲା ଓ ତାଙ୍କୁ ନିଜ ପରିବାରର ଜଣେ ମୁରବି ପରି ମାନୁଥିଲେ ।

॥ ପ୍ରଥମ ଚିଠି ॥

ଶ୍ରୀ ଶ୍ରୀ ରାଧା ଗୋବିନ୍ଦ ଦେବ ଶରଣଂ ତା ୬।୫।୮୩

ଜୟଶ୍ରୀ ଗୁରୁଦେବ ଶ୍ରୀଧାମ, ପୁରୀ

କଲ୍ୟାଣ ବରେଷୁ ଶ୍ରୀମାନ୍ ବାବୁଲି ।

ପ୍ରିୟ ନାତି,

ଶ୍ରୀ ଶ୍ରୀ ଜଗନ୍ନାଥ ମହାପ୍ରଭୁ ତମକୁ ଦୟା କରି ବଡ ଡାକ୍ତରଖାନା ପଠାଇଲେ । ଶୀଘ୍ର ଭଲ କରି ଆଣିବେ । ଦୁଃଖ କରିବ ନାହିଁ । ତୁମକୁ ଶୀଘ୍ର ଘରକୁ ନେଇ ଆସିବେ । ମୁଁ ସିଂହାସନରେ ମୁଣ୍ଡିଆ ମାରି ତମ କଥା କହୁଛି । ତମେ ତୁଳସୀ ପାଇବଣି । ଆଜି କାଲି ଚିଠି ସବୁ ବଡ ଡେରିରେ ପହଞ୍ଚୁଛି । ତମକୁ କହିଥିଲି ମୋର ଏକାଦଶ ସ୍କନ୍ଧ ଭାଗବତ ଦେବି ବୋଲି । ତାହା ମଧ୍ୟ ଦେବାକୁ ଭୁଲିଗଲି । ତମେ ସବୁବେଳେ ଚକାଡୋଳାଙ୍କୁ ମନେ କର । ସେ ଭଲ କରି ଘରକୁ ଘେନି ଆସିବେ । ତମେ କଟକରେ ରହି ମାମା ଓ ବାବାଙ୍କ ପାଖରେ ପଢ଼ । ଆଉ ଆଠଗଡ଼ ଯାଇ ପାରିବ ନାହିଁ । ଜେଜେମାମା ତମକୁ କଲ୍ୟାଣ କରିଛନ୍ତି । ଚକା-ଡୋଳାଙ୍କ ଦୟାରୁ ତମ ଦେହ ଭଲ ହୋଇ ଆସୁଥିବ । ରିପ୍ଲାଇ କାର୍ଡ଼ ଦେଲି । ଉତ୍ତର ଲେଖି ପଠାଇବ ।

ଶୁଭାକାଂକ୍ଷୀ

ଜେଜେ ବାବା

॥ ଦ୍ୱିତୀୟ ଚିଠି ॥

ଶ୍ରୀ ଶ୍ରୀ ରାଧା ଗୋବିନ୍ଦ ଦେବ ଶରଣଂ ତା ୧୩।୫।୮୩

ଜୟଶ୍ରୀ ଗୁରୁଦେବ ଶ୍ରୀଧାମ, ପୁରୀ

କଲ୍ୟାଣ ବରେଷୁ ଶ୍ରୀମାନ୍ ବାବୁଲି ।

ପ୍ରିୟ ନାତି,

ତମର ଉତ୍ତର ତା ୧୬।୫।୮୩ ରିଖ ଦିନ ପାଇ ଆନନ୍ଦିତ ହେଲି । ତମେ ଶ୍ରୀ ଶ୍ରୀ ଜଗନ୍ନାଥଙ୍କ ତୁଳସୀ ପାଉଛ । ତାଙ୍କ କଥା ମନେ ରଖି ମତେ ଜଣାଇବାକୁ ଲେଖିଛ । ଏଣୁ ତମେ ଶୀଘ୍ର ଭଲ ହୋଇ ଆସି ତାଙ୍କ ଶ୍ରୀଚରଣ ଦର୍ଶନ କରିବ । ମତେ ଜଣାଇବାକୁ ଲେଖିଛ । ସେ ଏବେ ମୋ କଥା ଶୁଣୁ ନାହାନ୍ତି । ସବୁଦିନେ ମଙ୍ଗଳ ଆଳତି ଦର୍ଶନ ଦେଉ ନାହାନ୍ତି, କି ଚାଲିବା କଷ୍ଟ ହେବାରୁ ଦିନେ ବିଶ୍ରାମ ଦେଉଛନ୍ତି । ତାଙ୍କ କଥ କିଏ ବୁଝିବ ? ଆଜି ନେଇଥିଲେ । ମଙ୍ଗଳ ଆଳତି ଦର୍ଶନ କରିଛୁ, ସିଂହାସନରେ ମୁଣ୍ଡିଆ ମାରି ତମ କଥା କହିଛୁ । ଆଜି ଜେଜେ ମାମା ମଧ୍ୟ ଯାଇଥିଲେ । ତାଙ୍କୁ ମନେ ରଖି ସବୁବେଳେ ଜଣାଇଲେ ତମକୁ ଶୀଘ୍ର ଡାକ୍ତରଖାନାରୁ ଘେନି ଆସିବେ ।

ଜେଜେମାମା କଲ୍ୟାଣ କରିଛନ୍ତି । ଜଗନ୍ନାଥ ମୋ କଥା ଶୁଣୁଛନ୍ତି ଯେ, ବେଳେ ବେଳେ ଟିକେ ଅଡୁଆ କରୁଛନ୍ତି ।

ଶୁଭାକାଂକ୍ଷୀ

ଜେଜେବାବା

॥ ତୃତୀୟ ଚିଠି ॥

ଶ୍ରୀ ଶ୍ରୀ ରାଧା ଗୋବିନ୍ଦ ଦେବ ଶରଣଂ ତା ୧୮।୫।୮୩

ଜୟଶ୍ରୀ ଗୁରୁଦେବ ଶ୍ରୀଧାମ, ପୁରୀ

କଲ୍ୟାଣ ବରେଷୁ ଶ୍ରୀମାନ୍ ବାବୁଲି ।

ପ୍ରିୟ ନାତି,

ଶ୍ରୀ ଶ୍ରୀ ଜଗନ୍ନାଥ ମହାପ୍ରଭୁ, ତମ କଥା ଶୁଣୁଛନ୍ତି ତମ ପତ୍ରରୁ ଜାଣିଲି ତା ୨୩।୫।୮୩ ରେ ଡାକ୍ତର-ଖାନାରୁ ଆସିବ । ତମେ ଡାକ୍ତର ଓ କାଢିବାକୁ ହେବ । ତମେ

ଲେଖିଛ ମୋ କଥା ଶୁଣିବେ । ମତେ କେଳେମାମାଙ୍କୁ ଆଜି କେଲେ ନାହିଁ । ଆଉଥରେ ଦର୍ଶନ ଦେଲେ ନାହିଁ । ତାଙ୍କ କଥା ଭୁଲିବା ବଡ଼ କଷ୍ଟ । ମୁଁ ପିଲାଦିନୁ ଡାକି ଡାକି ଏବେ ଆଣି ପାଖରେ ରଖିଛନ୍ତି । କେଳେମାମା କଲ୍ୟାଣ କରିଛନ୍ତି, ତମେ ଶୀଘ୍ର ଭଲ ହୋଇ ପରୀକ୍ଷା ଦେବ । ତମକୁ ଦେବା ଭାଗବତ ଏକାଦଶ ସ୍କନ୍ଧଟି ମୋ ପାଖରେ ଅଛି । ତମ ପାଖରେ ଥିଲେ ତମର ବହୁତ ଦୁଃଖ ହରୁଥାନ୍ତା ।

ଶୁଭାକାଂକ୍ଷୀ
କେଳେ ବାବା

ତା ୬ । ୭ । ୮୩ ରିଖ ଦିନ, ମୋର ପିତା ଶ୍ରୀ ରାଜେନ୍ଦ୍ର, କିଶୋର ହରିଚନ୍ଦନ କେଳେ ବାବାଙ୍କ ଠାରୁ ଉକ୍ତ ଏକାଦଶସ୍କନ୍ଧ ବହିଟି ଆଣି ମୋତେ ଦେଲେ ଓ କହିଲେ କେଳେ ବାବା କହିଛନ୍ତି—ଏହି ବହିଟି ପ୍ରତିଦିନ ଗାଧୋଇ ସାରି ଏକ ଅଧ୍ୟାୟ ପଢ଼ିବ । ମୁଁ ସେ ବହି ବାବଙ୍କ ଠାରୁ ଗ୍ରହଣ କଲି ଓ ଖୋଲି ଦେଖିଲି ଯେ, ସେ ଲେଖିଛନ୍ତି—

ପ୍ରିୟ ବାବୁନି,

ଆଠଗଡ଼ରେ ତମକୁ କହିଥିଲି—ଏକାଦଶ ସ୍କନ୍ଧ ଭାଗବତ ପଢ଼ିବ । ତମର ବି.ଏ. ପାସ୍ ହୋଇ ଯିବ । ମୋର ବହିଟି ସରିଲେ ତମେ ନବ । ତାହାତ ଶ୍ରୀ ଜଗନ୍ନାଥ କରାଇ ଦେଇ ନାହାନ୍ତି । ଏହିକ୍ଷଣି ଭାଗବତ ପଠାଇଲି । ଏକ ଅଧ୍ୟାୟ କରି ପ୍ରତିଦିନ ପଢ଼ିବ, ଗାଧୋଇ ସାରି ପଢ଼ିବ । ଶେଷ ଦିନ ଭୁଲିକରି ଜଗନ୍ନାଥଙ୍କ ଦର୍ଶନକୁ ଆସିବ ।

॥ ଇତି ॥
ଶୁଭାକାଂକ୍ଷୀ
କେଳେ ବାବା

ସେହି ଦିନ ଠାରୁ ମୁଁ ଗାଧୋଇ ସାରି ପ୍ରତିଦିନ ଏକ ଅଧ୍ୟାୟ ଭାଗବତ ପଢ଼ିବାକୁ ଆରମ୍ଭ କଲି । ସେ ବହିଟି ଶ୍ରୀଗୁଣ୍ଡିଚା ଦିନ ଶେଷ ହେଲା । କିନ୍ତୁ ଅସୁବିଧାବଶତଃ ପୁରୀ ଯାଇ ଶ୍ରୀ ଜଗନ୍ନାଥଙ୍କ ଦର୍ଶନ କରି ପାରି ନ ଥିବାରୁ ବାହୁଡ଼ା ଆଗଦିନ ସଂଧ୍ୟା ୭ ଟାରେ ( ୧୯ । ୭ । ୮୩ ) ବାବା, ମାମା ଓ ମୋର ସାନଭାଇ ଟୁକୁ ସହ ଯାଇ ପୁରୀରେ କେଳେ ବାବାଙ୍କ ପାଖରେ ପହଞ୍ଚିଲି । ଯାଇ ଦେଖିଲି, କେଳେ ବାବା ବସି ରାମାୟଣ ପଢ଼ୁଛନ୍ତି । ମୋତେ ଦେଖି ଭାରି ଖୁସି ହୋଇ ପଚାରିଲେ—'ଭାଗବତ ପଢ଼ା ଥରେ ସରିଗଲା, ମୁଁ ହଁ କଲି । ତା'ପରେ ମୋର ଡାକ୍ତରଖାନାରେ ରହିବା ବିଷୟରେ ଅନେକ କଥା ପଚାରିଲେ । ମୁଁ ସବୁ ବିଷୟ ଧିରେ ଧିରେ ବର୍ଣ୍ଣନା କଲି । ତା'ପରେ କହିଲେ—'ଭଲ ତ ହୋଇଗଲ । ଆସନ୍ତାକାଲି ବାହୁଡ଼ାରେ ଜଗନ୍ନାଥ ରଥରେ ବସିଥିଲା ବେଳେ ତାଙ୍କୁ ଯାଇ ଦର୍ଶନ କରିବ । ସେହିଥିଲା ସେ ଦିନର ଜଗନ୍ନାଥଙ୍କ ପ୍ରତି ତାଙ୍କ ଭକ୍ତିର ଶେଷ ଭକ୍ତି ।

ତାଙ୍କ କହିବା ଅନୁସାରେ ସେ ଦିନ ମୁଁ ତାଙ୍କ ସହ ଗୋଟିଏ ଖଟରେ ଶୋଇଲି । ରାତି ପ୍ରାୟ ୨-୩୦ ହେବ, ମୋ ନିଦ ଭାଙ୍ଗିଗଲା । ମୁଁ ଶୁଣିଲି ସେ ମୋ ବାବାଙ୍କ ନାମ ଧରି ଡାକୁଛନ୍ତି । ମୁଁ କଣ ହେଲା ପଚାରିବାରୁ ସେ ମୋ ହାତକୁ ଜୋରରେ ଧରିପକାଇ କହିଲେ—ବାବାଙ୍କୁ ଡାକ । ସେତେବେଳକୁ ତାଙ୍କର ଦୀର୍ଘ ନିଃଶ୍ୱାସ ଚାଲିଥାଏ । ବାବା ଆସି ତାଙ୍କୁ ଉଠାଇ ଖଟରେ ବସାଇଲେ । ସେ ଜଗନ୍ନାଥଙ୍କ ଫଟୋକୁ ସାମାନ୍ୟ ଅନାଇ ମୁଣ୍ଡକୁ ତଳକୁ କରିଦେଲେ ଓ ଶୋଇବାକୁ ଉଦ୍ୟମ କଲେ । ବାବା ତାଙ୍କୁ ଖଟ ଉପରେ ଶୁଆଇ ଦେଲେ । ତା'ପରେ ତାଙ୍କୁ ଡାକ୍ତରଖାନାକୁ ନେବାକୁ ସବୁ ବ୍ୟବସ୍ଥା ହେଲା ଓ ଯିବା ବାଟରେ ସେହି ବଡ଼ଦାଣ୍ଡରେ ତାଙ୍କର ଶେଷ ନିଃଶ୍ୱାସ ତ୍ୟାଗ କରି, ସେହି ଜଗାକାଳିଆର କୋଳକୁ ବାହୁଡ଼ାରେ ବାହୁଡ଼ି ଗଲେ ।

ଶ୍ରୀ ଜଗନ୍ନାଥଙ୍କର ତାଙ୍କ ଉପରେ ଯେପରି ଅପାର କୃପା ଓ ଆଶୀର୍ବାଦ ଥିଲା, ତାଙ୍କର ମଧ୍ୟ ଆମ ପରିବାର ଉପରେ ସେହିପରି ସ୍ନେହ ଓ ଆଶୀର୍ବାଦ ପୂରି ରହିଥିଲା । ସେ କେବଳ ଯେ ଆମ ପାଇଁ ଜଗନ୍ନାଥଙ୍କୁ ଜଣାଉଥିଲେ ତାହା ନୁହେଁ, ଅନ୍ୟର ଦୁଃଖ ଓ ଅସୁବିଧା ଦେଖିଲେ ସେ ସମ ଦୁଃଖୀ ହୋଇ ତା' ପାଇଁ ମଧ୍ୟ ଜଗନ୍ନାଥଙ୍କ ନିକଟରେ ଗୁହାରି କରୁଥିଲେ । ମୋର ମନେ ହୁଏ, ସେ ଯେପରି ଜଗନ୍ନାଥ ଓ ଆମ ପରିବାର କାହିଁକି ଅନ୍ୟମାନଙ୍କ ପାଇଁ ମଧ୍ୟ ଗୋଟିଏ ମାଧ୍ୟମ ରୂପେ କାର୍ଯ୍ୟ କରୁଥିଲେ ।

ହଜାରି ଲେନ୍, କଟକ-୯



ଯାହାଙ୍କ କଲ୍ୟାଣ ଓ କରୁଣାରେ ନିମାଇଁ ଚରଣ ଏଡ଼ିକ ପ୍ରଖ୍ୟାତ, ସେହି ହେଉଛନ୍ତି ତାଙ୍କର ପୂଜ୍ୟଗୁରୁ **ରାମଦାସ ବାବାଜୀ**

 

ନିମାଇଁ ଚରଣ ଯେଉଁ ପ୍ରିୟ ନାତି **ବସନ୍ତ କିଶୋର**କୁ ଖୁବ୍ ଭଲ ପାଉଥିଲେ, ସେ ମଧ୍ୟ ୧୯ । ୨ । ୮୫ ତାରିଖରେ ଏ ସଂସାର ଛାଡ଼ି ତାଙ୍କ ପାଖକୁ ଚାଲିଗଲା ।



# କିଂଚିତେକ ସ୍ମୃତି

## କେନା ଅମରେନ୍ଦ୍ର ପ୍ରତାପ ବାଘସିଂହ

ବାଣୀକଣ୍ଠ ନିମାଇଁ ଚରଣ ହରିଚନ୍ଦନ ୧୯୦୧ ମସିହା ଜୁଲାଇ ୯ ତାରିଖରେ କେନ୍ଦ୍ରାପଡ଼ାର ପ୍ରଖ୍ୟାତ ଦାନଶୀଳ ଜମିଦାର ରାଧାଶ୍ୟାମ କେନା ଓରଫ ରାଧାଶ୍ୟାମ ନରେନ୍ଦ୍ରଙ୍କ ବଂଶରେ ଜନ୍ମ ଗ୍ରହଣ କରିଥିଲେ। ତାଙ୍କ ପିତାଙ୍କ ନାମ ବୃନ୍ଦାବନ ଚନ୍ଦ୍ର ହରିଚନ୍ଦନ ଓ ମାତାଙ୍କ ନାମ ଇନ୍ଦ୍ରମଣି ଦେବୀ। ତାଙ୍କ ପିତା ହେଉଛନ୍ତି ରାଧାଶ୍ୟାମ ନରେନ୍ଦ୍ରଙ୍କ ଚତୁର୍ଥ ନାତି ଓ ଏଇ ରାଧାଶ୍ୟାମ ନରେନ୍ଦ୍ରଙ୍କ ଭଗିନୀ ବିମଳା ଦେବୀ ଆମର ଅନ୍ୟତମ ଶ୍ରେଷ୍ଠ କବି ଅଭିମନ୍ୟୁ ସାମନ୍ତ ସିଂହାରଙ୍କର ସହ-ଧର୍ମିଣୀ ଥିଲେ।

ନିମାଇଁ ଚରଣଙ୍କ ଜନ୍ମ ବେଳକୁ ତାଙ୍କ ବଂଶର ପୂର୍ବ-ଗୌରବ ଓ ସଂପଦର ଶିଖା ତୁଟି ତୁଟି ଆସିଲାଣି। ଯେତେବେଳେ ସେ ମାଇନର ତଳ କ୍ଲାସରେ ପଢ଼ୁଥା'ନ୍ତି, ସେତେବେଳେ ତାଙ୍କ ପିତାଙ୍କର ମସ୍ତିଷ୍କ ବିକୃତ ଦେଖାଦେଲା। ପିତାଙ୍କର ସ୍ୱାସ୍ଥ୍ୟଲାଭ ବନ୍ଦୋବସ୍ତରେ ତାଙ୍କୁ ସାଙ୍ଗରେ ଧରି ଓଡ଼ିଶାର ବିଭିନ୍ନ ସ୍ଥାନ ବୁଲିବା ଫଳରେ ଅଧ୍ୟୟନ ପାଇଁ ତାଙ୍କ ପାଠ ପଢ଼ାରେ ଡୋରି ବନ୍ଧା ହେଲା। ତା'ପରେ ବଂଶର ଇଷ୍ଟ ଦେବତା ଶ୍ରୀ ଶ୍ରୀ ରାଧାଗୋବିନ୍ଦ ଜୀଉଙ୍କ ମନ୍ଦିରରେ ନିଇତି ସନ୍ଧ୍ୟାରେ ଯେଉଁ ଜଣାଣ/ଭଜନ/ କୀର୍ତ୍ତନମାନ ପରିବେଷଣ ହେଉଥିଲା, ସେଇଥିରେ ତାଙ୍କ ମନ ବିଶେଷ ଭାବେ ମଜ୍ଜିଲା। ସେତେବେଳକୁ ତାଙ୍କ ବୟସ ମାତ୍ର ୧୪ ବର୍ଷ। ଏଇ ସମୟରୁ ସେ ନନ୍ଦା ଦାସ ମାଧିଙ୍କ ଠାରୁ ଢୋଲକ ଓ ଅନ୍ୟ ଜଣେ ଦାଦା ଗିରିଧାରୀ କେନାଙ୍କ ଠାରୁ ମୃଦଙ୍ଗ ଶିକ୍ଷା କରି ସାରିଥିଲେ। ସେତେବେଳେ ସଙ୍ଗୀତ ଶିଖି ଗାଇବା ତାଙ୍କ ଅଭ୍ୟାସରେ ପରିଣତ ହେବାକୁ ଲାଗିଲାଣି। ଏହି ସମୟରେ ହଠାତ ସେ ଦେଖିଲେ ଯେ—ବିସଲ୍ଲାଙ୍କର ଜଣେ ଅନ୍ୟତମ ବିଶିଷ୍ଟ ଲେଖକ ମୋହନ ସୁନ୍ଦର ଦେବ ଗୋସ୍ୱାମୀଙ୍କୁ ତାଙ୍କର ଦାଦା ଗୋକୁଳ ଶ୍ରୀଚନ୍ଦନ ତାଙ୍କ କେନ୍ଦ୍ରାପଡ଼ାର ଦୋତାଲା କୋଠା ଉପରେ ହାରମୋନିୟମରେ ସଙ୍ଗୀତ ଶିକ୍ଷା ଦେଉଛନ୍ତି। ଏହା ଦେଖିବା ମାତ୍ରେ ହାରମୋନିୟମ ଶିଖିବା ପାଇଁ ତାଙ୍କର ଆଗ୍ରହ ବେଳକୁ ବେଳ ବଢ଼ିବାରେ ଲାଗିଲା। ନିମାଇଁ ଚରଣଙ୍କ ହାରମୋନିୟମ ଦେଖିବାର ଆଗ୍ରହ ଜାଣିପାରି ଦାଦା ଗୋକୁଳ ଶ୍ରୀଚନ୍ଦନ ନିମାଇଁଙ୍କୁ ଗୋଟିଏ ଗୀତ ଗାଇବାକୁ କହିଲେ—ଦାଦାଙ୍କ ଆଦେଶ ମାତ୍ରେ ନିମାଇଁ ତାଙ୍କର ସୁଲଳିତ କଣ୍ଠରେ ଯେତେବେଳେ ଗୀତଟିଏ ଗାଇ ଦେଲେ, ଦାଦା ସେତେବେଳେ ଭାରି ଖୁସି ହେଲେ ଏବଂ କହିଲେ—"ତୁ ମୋର ନାଁ ରଖିବୁ। ଏ ବଂଶର ସେ ପୂର୍ବ ଗୌରବ ଆଉ ନାହିଁ, ହେଲେହେଁ ସେ ଗୌରବୋଜ୍ଜ୍ୱଳ ଦୃଢ଼ିକୁ ତୁ ସଙ୍ଗୀତ ଗାଇ ପୁଣି ଥରେ ଜୀବନ୍ତ କରିବୁ, ଏହା ହିଁ ମୋର ଆଶୀର୍ବାଦ।" ଏହା ପରେ ଦାଦା ଗୋକୁଳ ଶ୍ରୀଚନ୍ଦନ ତାଙ୍କୁ ବିଶେଷ ଯତ୍ନ ସହକାରେ ସଙ୍ଗୀତ ଓ ହାରମୋନିୟମ ଶିକ୍ଷା ଦେବାରେ ଲାଗିଲେ।

ଜମି-ବାଡ଼ି ମାଲି-ମୋକଦ୍ଦମା ବୁଝିବୁଝା ପାଇଁ ତାଙ୍କ ବାପା ମାଆ ନିମାଇଁ ଚରଣଙ୍କୁ ସାଙ୍ଗରେ ଧରି କଟକ ଆସିଲେ। ଏଇ କଟକ ରହଣୀ ସମୟରେ ମାସିକ ମାତ୍ର ଦଶ ଟଙ୍କା ଦରମାରେ ଆର୍ତ୍ତବନ୍ଧୁ ପାତ୍ର ନାମକ ଜଣେ ସଙ୍ଗୀତଜ୍ଞ ତାଙ୍କୁ ସଙ୍ଗୀତ ଶିକ୍ଷା ଦେଲେ ଓ ସେଇ ସମୟରେ ମଧ୍ୟ ସେ ଜଗମୋହନ ନାୟକଙ୍କ ଠାରୁ ତବଲା ବାଦନ ଶିକ୍ଷା କଲେ। ଖୁବ୍ ଅଳ୍ପ ସମୟ ମଧ୍ୟରେ ସେ ତବଲା ବାଦନରେ ଏପରି ପାରଙ୍ଗମ ହୋଇ ଉଠିଲେ ଯେ, ଦାଦା ଗୋକୁଳ ଶ୍ରୀଚନ୍ଦନଙ୍କ ଚମତ୍କାର ସୀତାର ବାଦନ ସହ ତାଳକୁ ତାଳ ଦେଇ ତବଲା ବାଦନ କରି ପାରିଲେ। ସେତେବେଳକୁ ତାଙ୍କୁ ୧୬ ବର୍ଷ ମାତ୍ର।

ଏଇ ସମୟରେ ସେ ପ୍ରସିଦ୍ଧ ଲେଖକ ଓ କଳାକାର ନୟାଗଡ଼ ରାଜବଂଶର ଗୋବିନ୍ଦ ଚନ୍ଦ୍ର ଶୂରଦେଓଙ୍କ ସଂସ-

ଦଳରେ ଯୋଗ ଦେଲେ । ଏଇ ଶୂରଦେଓ ମଧ୍ୟ ତାଙ୍କର ଝଙ୍କର ତାଙ୍କ ବଡ଼ ବାପା ଶ୍ୟାମସୁନ୍ଦର ନରେନ୍ଦ୍ରଙ୍କ କନ୍ୟାଙ୍କୁ ବିବାହ କରିଥିଲେ । ତାଙ୍କ ସହିତ କୌଣସି କାରଣରୁ ମନାନ୍ତର ହେବାରୁ କମାଇଁ ଚରଣ ପୁଣି ନିଜର ଭିଟାମାଟି କେନ୍ଦ୍ରାପଡ଼ାକୁ ଫେରି ଆସିଲେ ଓ ହିନ୍ଦୁସ୍ଥାନୀ ଓସ୍ତାଦ ମାଧୋ ରାଓଙ୍କ ଠାରୁ ହିନ୍ଦୁସ୍ଥାନୀ ସଙ୍ଗୀତ ଶିକ୍ଷା କରି ବିଶେଷ ପାରଦର୍ଶିତା ଲାଭ କଲେ । ତାଙ୍କୁ ଯେତେବେଳେ ମାତ୍ର ୨୦ ବର୍ଷ, ସେ ସେତେବେଳେ ରାମଦାସ ବାବାଜୀଙ୍କ ସହିତ କଲିକତା ଗଲେ ଓ ସେଠାରେ ବିଭିନ୍ନ ସଙ୍ଗୀତ ଶିକ୍ଷା କରିବାର ସୁଯୋଗ ପାଇଲେ । କଲିକତାରୁ ପୁଣି କେନ୍ଦ୍ରାପଡ଼ା ଫେରିବା ପରେ ୧୯୨୪ ମସିହା ଏପ୍ରିଲ ମାସରେ ଆଠଗଡ଼ ରାଜ ପରିବାରରେ ଶ୍ରୀନାଥ ସାମନ୍ତଙ୍କ ଏକମାତ୍ର କନ୍ୟା ଲକ୍ଷ୍ମୀପ୍ରିୟା ଦେବୀଙ୍କ ସହିତ ତାଂକର ବିବାହ ସମ୍ପନ୍ନ ହୋଇଥିଲା ।

ଏଇ ସମୟକୁ ମାମଲା-ମୋକଦ୍ଦମା ଯୋଗୁଁ ତାଂକ ପରିବାରର ଋଣ ଭାର ଉତ୍କଟ ଆକାର ଧାରଣ କରିଥାଏ ।

ଏଣୁ ଯାହା ବି କିଛି ଜମିଦାରୀ ଥିଲା, ଗୋଟିଏ ପରେ ଗୋଟିଏ ବିକ୍ରୀ ହୋଇ ଋଣ ଟଂକା ପରିଶୋଧ ହେଉଥିଲା । ଶେଷକୁ ଯାହା ଜମିଦାରୀ ରହିଲା, ସେଥିରେ ପରିବାରର ଭରଣ-ପୋଷଣ ହୋଇ ପାରିଲା ନାହିଁ । ଶେଷକୁ ପରିବାରର ଭରଣ-ପୋଷଣ ପାଇଁ କମାଇଁ ଚରଣ କଟକ ଆସି ବସ୍ ସର୍ଭିସ୍‌ରେ ଏକ ଅଂଶୀଦାର ରୂପେ ରାଜକିଶୋର ଦାସଙ୍କ ପୁତ୍ରମାନଂକ ସହିତ ଯୋଗ ଦେଇ ବ୍ୟବସାୟ ଆରମ୍ଭ କଲେ ଓ ମଟର ଗାଡ଼ି ଚାଳନା (ଡ୍ରାଇଭିଂ) ମଧ୍ୟ ଶିଖିଲେ । କିନ୍ତୁ ଏ ବ୍ୟବସାୟରେ ସେ ଆଦୌ କୃତକାର୍ଯ୍ୟ ହୋଇ ପାରିଲେ ନାହିଁ । ତା'ପରେ ଅନ୍ୟ ଉପାୟ ନ ଦେଖି କଟକରେ ସଙ୍ଗୀତ ଶିକ୍ଷକ ରୂପେ ନିଜ ପରିବାରର ଭରଣ-ପୋଷଣ ପାଇଁ ଜୀବିକା ଆରମ୍ଭ କଲେ । ବ୍ୟବସାୟୀ ଚକ୍ରଧର ମିଶ୍ର, ବାଂକର ହରମୋହନ ପଟ୍ଟନାୟକ, ଡ଼କ୍ଟର ପ୍ରାଣକୃଷ୍ଣ ପରିଜା, ଡ଼କ୍ଟର ଅନ୍ତର୍ଯ୍ୟାମୀ ମହାନ୍ତି, ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋଂକ ପ୍ରିୟମାନଂକର ସେ ସେତେବେଳେ ସଙ୍ଗୀତ ଶିକ୍ଷକ ଥିଲେ । ୩୧ ବର୍ଷ ବୟସ ପର୍ଯ୍ୟନ୍ତ ଏଭଳି ଜୀବନ କାଟିଲା ପରେ ତାଙ୍କୁ ଯେତେବେଳେ ୩୨ ବର୍ଷ ଅର୍ଥାତ୍ ୧୯୩୩ ମସିହାରେ ତାଙ୍କ ଜୀବନରେ ଏକ ନୂତନ ଅଧ୍ୟାୟ ସୃଷ୍ଟି ହେଲା । ତାଙ୍କର ଦାଦା ଗୋକୁଳ ଶ୍ରୀଚନ୍ଦନ ଓ ହିଜ୍ ମାଷ୍ଟରସ୍ ଭଏସ୍‌ର ଗ୍ରାମୋଫୋନ ବ୍ୟବସାୟୀ ମନ୍ମଥ ବାବୁଙ୍କ ସହାୟତାରେ କମାଇଁ ଚରଣ କେତୋଟି ବଛା ବଛା ଓଡ଼ିଶୀ ସଙ୍ଗୀତ ଓ ଜଣାଣ ରେକର୍ଡ କଲେ । ତା'ପରେ ଶ୍ରେଷ୍ଠ ସଙ୍ଗୀତଜ୍ଞ ଭାବରେ ତାଙ୍କର ସୁନାମ ଓ ଯଶ ଚାରିଆଡ଼େ ବିଛୁରି ପଡ଼ିଲା । କମାଇଁ ଚରଣଙ୍କର ଗ୍ରାମୋଫୋନ ସଙ୍ଗୀତ ଶୁଣି ସେତେବେଳର ବହୁ ଜଣାଶୁଣା ଲୋକେ ତାଙ୍କୁ ପତ୍ର ଜରିଆରେ ଜଣାଇଲେ—"ଯେପରି ଧ୍ୟାନରେ ଗଣ, ଗଣ କବିତା ଶୁଣିବାକୁ ଲୋଡ଼ୁଥିଲେ, ଆପଣ ପ୍ରକୃତରେ ଠିକ୍ ସେହିପରି ତାହା ପରିଣି ଦେଲେ । ତେଣୁ ଏଥିପାଇଁ ଆପଣ ଯେପରି ଲୋକପ୍ରିୟ ହୋଇ ଉଠିଲେ, ସେଇପରି ଓଡ଼ିଆ ସଙ୍ଗୀତର ଧାର୍ମିକ ପରିପ୍ରକାଶ ପାଇଁ ଆପଣ ରାସ୍ତା ମଧ୍ୟ ଖୋଲିଦେଲେ । ଏଥି ପୂର୍ବରୁ ଓଡ଼ିଆ ସଙ୍ଗୀତର ରେକର୍ଡିଂ ଅନଗ୍ରସର ଅବସ୍ଥାରେ ପଡ଼ି ରହିଥିଲା ।" ବହୁ ବର୍ଷ ଧରି ତାଙ୍କର ଭଜନ/ଜଣାଣ/ଓଡ଼ିଶୀ/ଚମ୍ପୂ/ଛାନ୍ଦ ମାନ ରେକର୍ଡ ହେଲା ପରେ ଗ୍ରାମଫୋନ କମ୍ପାନୀର କର୍ମକର୍ତ୍ତାମାନେ ତାଙ୍କୁ 'ବାଣୀକଣ୍ଠ' ଉପାଧିରେ ଭୂଷିତ କଲେ । ପୁଣି ୧୯୩୩ ମସିହାରେ ଆଠଗଡର ରାଜା ସ ହେବ, ତାଙ୍କ ସଙ୍ଗୀତ ଗାନରେ ଏପରି ମୁଗ୍ଧ ହୋଇଥିଲେ ଯେ, ସେ ତାଙ୍କୁ ତାଙ୍କ ରାଜଦରବାରରେ 'ରାଜ ସଙ୍ଗୀତଜ୍ଞ' ପଦରେ ସମ୍ମାନିତ କରିବା ସଙ୍ଗେ ସଙ୍ଗେ ତାଙ୍କ ପାଇଁ ସୁବୃହତ ରାଜପ୍ରାସାଦ ସହିତ ଶହେ ଏକର ଜମି ଛାଡ଼ି ଦେଲେ ଓ ମାସିକ ତିରିଶ ଟଙ୍କାର ଭତ୍ତା ବ୍ୟବସ୍ଥା କଲେ । ତେଣୁ କମାଇଁ ଚରଣ ସପରିବାର କେନ୍ଦ୍ରାପଡ଼ା ଛାଡ଼ି ଆଠଗଡ଼ରେ ସ୍ଥାୟୀ ଭାବରେ ସେଇଦିନ ଠାରୁ ବସବାସ କଲେ ।

୧୯୩୩ ଠାରୁ ୧୯୬୬ ପର୍ଯ୍ୟନ୍ତ ଦୀର୍ଘ ତେତିଶି ବର୍ଷ ଧରି ହିଜ୍ ମାଷ୍ଟରସ୍ କମ୍ପାନୀରେ ସେ ଅନ୍ୟୁନ ଦୁଇ ଶହରୁ ଅଧିକ ଓଡ଼ିଶୀ/ଛାନ୍ଦ/ଜଣାଣ/ଭଜନ ରେକର୍ଡିଂ କରିଛନ୍ତି ।

୧୯୩୪ ମସିହାରେ 'ଉତ୍କଳ ସାହିତ୍ୟ ସମାଜ' ଦ୍ୱାରା ଆୟୋଜିତ ସଙ୍ଗୀତ ପ୍ରତିଯୋଗିତାରେ ପ୍ରଥମ ହୋଇ ପୁରୀ ଗଜପତି ମହାରାଜାଙ୍କ ସ୍ୱର୍ଣ୍ଣପଦକ ଲାଭ କରିଥିଲେ । ୧୯୩୮ରେ ସେ 'ଉତ୍କଳ ସଙ୍ଗୀତ ସମାଜ' ଦ୍ୱାରା ଆୟୋଜିତ ସଙ୍ଗୀତ ପ୍ରତିଯୋଗିତାରେ ମଧ୍ୟ ପ୍ରଥମ ହୋଇ ସ୍ୱର୍ଣ୍ଣପଦକ ପାଇଥିଲେ ।

୧୯୪୭ ମସିହା ଠାରୁ ୧୯୮୦ ପର୍ଯ୍ୟନ୍ତ ସେ କଟକ ବେତାର କେନ୍ଦ୍ରର ବିଶିଷ୍ଟ ସଙ୍ଗୀତ-ଶିଳ୍ପୀ ଭାବେ ସଙ୍ଗୀତ ଗାନ କରି ଆସୁଥିଲେ । ୧୯୪୯ ମସିହାରେ 'ଶ୍ରୀ ଜଗନ୍ନାଥ ଚଳଚ୍ଚିତ୍ର'ରେ ତାଙ୍କ ପରିବେଶିତ ଦୁଇଟି ଜଗନ୍ନାଥ ଜଣାଣ 'ନୀଳ ସିନ୍ଧୁ ତୀରେ ନୀଳ ଅଚଳ' ଓ 'ଚକ ଡୋଳା କମ୍ପା ଡ଼କା' ଆମ ସଙ୍ଗୀତ ଜଗତରେ ଯେପରି ଚମକ ସୃଷ୍ଟି କରିଥିଲା, ତା'ର ପଟାନ୍ତର ନାହିଁ । ୧୯୫୦ ମସିହାରେ ଅନୁଗୁଳରେ ଅନୁଷ୍ଠିତ ସର୍ବୋଦୟ ସମ୍ମିଳନୀରେ ଜଣାଣ ଗାଇ କାକା କାଲେଲକରଙ୍କ ଠାରୁ ଉଚ୍ଚ ପ୍ରଶଂସା ପତ୍ର ଲାଭ କରିଥିଲେ । ୧୯୫୪ ମସିହାରେ କେନ୍ଦ୍ର ସଙ୍ଗୀତ ନାଟକ ଏକାଡେମୀ, ୧୯୬୩ ରେ ଜାମସେଦପୁର ଉତ୍କଳ ବାନ୍ଧବ ସମିତି, ପ୍ରବାସୀ ସାହିତ୍ୟ ଚକ୍ର, ଗୋଲମୁରୀ ଉତ୍କଳ ସମାଜ, ୧୯୬୬ ରେ ପ୍ରଜାତନ୍ତ୍ର ପ୍ରଚାର ସମିତି ପକ୍ଷରୁ ସଙ୍ଗୀତଜ୍ଞ ଭାବେ ବିଶେଷ ସମ୍ମାନିତ ଓ ୧୯୬୭ ମସିହାରେ ଭାରତର ରାଷ୍ଟ୍ରପତି ତାଙ୍କୁ 'ପଦ୍ମଶ୍ରୀ' ଉପାଧିରେ ଭୂଷିତ କରିଥିଲେ ।

ବାଣୀକଣ୍ଠ ନିମାଇଁ ଚରଣ ତାଙ୍କର ବୃଦ୍ଧାବସ୍ଥାରେ ୧୯୭୦ ମସିହା ଠାରୁ ପୁରୀର ନିଜ ମାଟିମଣ୍ଡପ ସାହି ଘରେ ସସ୍ତ୍ରୀକ ବାସ କରି ଆସୁଥିଲେ ଓ ଓଡ଼ିଶାର ଇଷ୍ଟ ଦେବତା ଜଗନ୍ନାଥଙ୍କ ସେବାରେ ମନ-ପ୍ରାଣ ଢାଳି ଦେଇଥିଲେ ତଥା ଜଗନ୍ନାଥଙ୍କ ପ୍ରତିଦିନ ଜଣାଣ/ଭଜନ ଗାନ ସଙ୍ଗେ ସଙ୍ଗେ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସ୍ୱରର ସେବା କରି ଆସୁଥିଲେ ।

ତାଙ୍କର ତିନିପୁଅ ଉପେନ୍ଦ୍ର, ରାଜେନ୍ଦ୍ର ଓ ଶୈଳେନ୍ଦ୍ର । ତିନି ଝିଅ ପୂର୍ଣ୍ଣମଞ୍ଜରୀ, ବିଷ୍ଣୁପ୍ରିୟା ଓ କନକବାଳା । ତାଙ୍କର ମଧ୍ୟମ ପୁତ୍ର ରାଜେନ୍ଦ୍ର କଟକର ବିଶିଷ୍ଟ ଆଡ଼ଭୋକେଟ । ବିଶିଷ୍ଟ ସାହିତ୍ୟିକ ଓ ଐତିହାସିକ ଜଗବନ୍ଧୁ ସିଂହଙ୍କ ପୁଅର ପୁଅ ନାତି ପ୍ରତାପ ସିଂହ ତାଂକର ମଧ୍ୟମ ଜାମାତା । ଜ୍ୟେଷ୍ଠ ଜାମାତା ହେଲେ ବାଲିଅନ୍ତାର ଜମିଦାର ମୁରଲିଧର ମଙ୍ଗରାଜ ଓ କନିଷ୍ଠ ଜାମାତା ହେଲେ କୁଜଙ୍ଗସ୍ଥ ଅମିୟପାଳର ଅକ୍ଷୟ କୁମାର ସାମନ୍ତରାୟ । ତାଙ୍କର ତିନି ପୁତ୍ରବଧୂ ହେଲେ ଜ୍ୟୋତ୍ସ୍ନାମୟୀ, ପ୍ରେମଲତା ଓ କନକମଞ୍ଜରୀ । ପୁଣି ଛଅଟି ଜଣ ନାତି ନାତୁଣୀ, ଅଣନାତି ପରିବେଷ୍ଟିତ ଏଇ ହରିଚନ୍ଦନ ପରିବାର ।

ବାଣୀକଣ୍ଠ ନିମାଇଁ ଚରଣ ମଧ୍ୟ ବହୁ ଜଣାଣ ଓ ଭଜନର ଲେଖକ ।

୧୯୮୦ ମସିହାରେ ଉତ୍କଳ ସାହିତ୍ୟ ସମାଜର କର୍ମକର୍ତ୍ତା ତଥା କାର୍ଯ୍ୟକାରୀ ସମିତିର ସଭ୍ୟ, ତାଙ୍କ ପ୍ରତିକୃତି ତାଂ ଜୀବଦ୍ଦଶାରେ ଉନ୍ମୋଚିତ କରାଇ, ଯେଉଁ ସମ୍ମାନ ପ୍ରଦର୍ଶନ କରିଛନ୍ତି ତାହା ନିଶ୍ଚିତ ଭାବେ ଏକ ଅବିସ୍ମରଣୀୟ ଅଧ୍ୟାୟ ।

ଏଇଭଳି ଏକ ଯୋଗଜନ୍ମା ପୁରୁଷ ବାଣୀକଣ୍ଠ ନିମାଇଁ ଚରଣ ହରିଚନ୍ଦନ ୨୦ । ୭ । ୮୩ ଶ୍ରୀ ଜଗନ୍ନାଥଂକ ପବିତ୍ର ବାହୁଡ଼ା ଦିବସରେ, ତାଂକ ପୁରୀସ୍ଥ ମାଟିମଣ୍ଡପ ସାହି ବାସଭବନରେ ଶେଷ ନିଃଶ୍ୱାସ ତ୍ୟାଗ କଲେ ।

ତାଂକର କାଳିଆ ସାଆନ୍ତ ଜଗନ୍ନାଥଙ୍କୁ ସେ ଯେଉଁଦିନ ଏ ମର ସଂସାରରୁ ତାଂକ ମରଣଘରକୁ ବାହୁଡାଇ ନେବାକୁ କହିଥିଲେ, ଭକ୍ତର ସେଇ ଭଗବାନ ତାଙ୍କୁ ସେଇ ଦିନ ନେଇ ଗଲେ । ଏଇଟା କେଡ଼େ ବଡ କଥା । ଯୁଗେ ଯୁଗେ ଯେ ଭକ୍ତର ଡାକରାକୁ ଭଗବାନ ପ୍ରକୃତରେ କାନ ଡେରି ଶୁଣନ୍ତି ଓ ତାଂକର ଗୁହାରିକୁ ବୁଝନ୍ତି, ଏହା ହିଁ ବାଣୀକଣ୍ଠ ଏ ଯୁଗରେ ମଧ୍ୟ ପ୍ରମାଣ କରି ଦେଇ ଗଲେ ।

ଭଗତପୁର,

କଟକ-୯

# ଡୋର ଛିଡ଼ି ଗଲା

## ମଳୟ କିଶୋର ହରିଚନ୍ଦନ

"ଆମେ ଯେତେ ଦିନ ପର୍ଯ୍ୟନ୍ତ ଥିବୁ ସେତେ ଦିନ ପର୍ଯ୍ୟନ୍ତ ଏଠାକୁ ଆସିବାକୁ କହୁଥିବୁ । ଆମେ ଗଲା ପରେ ତମେ ଆଉ ଆସ କି ନଆସ" ଜେଜେ ବାବାଙ୍କର ଏହି କଥା ଶୁଣିବାକୁ ପଡ଼େ ଯଦି କେବେ ପୁରୀ ଆସିବାକୁ ମୁଁ ଅନିଚ୍ଛା ପ୍ରକାଶ କରେ । ସୌଭାଗ୍ୟ ବଶତଃ ୧୯୮୩ ମସିହା ବାହୁଡ଼ା ପର୍ବଦିନ ବାବା, ମାମା ଓ ମୋର ଭାଇମାନେ ସମସ୍ତେ ପୁରୀ ଯାଇ ଜେଜେ ବାବାଙ୍କର ଅନ୍ତିମ ସମୟରେ ତାଙ୍କ ନିକଟରେ ଉପସ୍ଥିତ ଥିଲାବେଳେ ହତଭାଗ୍ୟ ମୁଁ ହିଁ କେବଳ ସେଠାରେ ନ ଥିଲି । ଜେଜେ ବାବାଙ୍କର ସେହି କଥା ମୋର ମନେ ପଡ଼େ । ସତରେ ସେ ଯେ କେବଳ ଆମକୁ ଛାଡ଼ି ଚାଲିଗଲେ ତା ନୁହେଁ; ଶ୍ରୀକ୍ଷେତ୍ରକୁ ଆମର ଡୋର ଛିଡ଼ିଗଲା ।

ସେ ଦିନର ଗୋଟିଏ ଘଟଣା, ମାଟ୍ରିକ ପରୀକ୍ଷାପରେ ମୁଁ ତାଙ୍କ ନିକଟରେ ଯାଇ ରହିଲି । ପରୀକ୍ଷା ଫଳ ବାହାରିବାକୁ ଡେରି ହେଉଥିବାରୁ ବଡ଼ ବ୍ୟସ୍ତ ଲାଗୁଥାଏ । କଟକ ଫେରି ଆସିବାକୁ କହିବାରୁ ଜେଜେ ବାବା କହିଲେ—"ସେଠାରେ ଯାଇ କ'ଣ କରିବ ? ପରୀକ୍ଷା ଫଳ ସିନା ସେଠାରେ ବାହାରିବ, ହେଲେ ପରୀକ୍ଷା ଫଳ ବାହାର କରିବାଲୋକ ତ ଏଠି । ତାଙ୍କୁ ଜଣାଅ । ଫଳ ବାହାରିଲା ପରେ ଯାଇଁ କଟକ ଯିବ ।' ତାଙ୍କ ସାଙ୍ଗରେ ପ୍ରତିଦିନ ସକାଳୁ ଶ୍ରୀମନ୍ଦିରକୁ ଯାଇ ଜଗନ୍ନାଥଙ୍କ ଦର୍ଶନ କରି ସିଂହାସନରେ ମୁଣ୍ଡିଆ ମାରେ ଏବଂ ସର୍ବୋପରି ଜେଜେ ବାବାଙ୍କର ମଧ୍ୟ ସେବା କରେ । ଶେଷରେ ମୁଁ ଯେତେବେଳେ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେବାର ଜେଜେ ବାବା ଶୁଣିଲେ, ସେତେବେଳେ ସେ ଅତ୍ୟନ୍ତ ଆନନ୍ଦିତ ହୋଇ ତାଙ୍କର ହାତ ଟିକା ଘଣ୍ଟାଟି ମୋ ହାତରେ ବାନ୍ଧିଦେଇ କହିଲେ—'ଯାଅ, ପ୍ରଥମେ ଜଗନ୍ନାଥଙ୍କୁ ତମ ପାଶ୍ କରିବା ଜଣାଇ ଆସ । ଏହା ଯେ ତାଙ୍କର ଅଗାଧ ଜଗନ୍ନାଥ ବିଶ୍ୱାସ ଏବଂ ଆମ୍ଭମାନଙ୍କ ପ୍ରତି ତାଙ୍କର ସ୍ନେହ ଓ ଆଶୀର୍ବାଦ । ଯାହାକି ମୋ ପକ୍ଷରେ ଚିରଦିନ ପାଇଁ ଅଭୁଲା ହୋଇ ରହିବ । ମୋତେ ଦେଇଥିବା ତାଙ୍କର ସେହି ଘଣ୍ଟାଟି ମୋ ନିକଟରେ ତାଙ୍କର ମୋ ପ୍ରତି ସ୍ନେହ ଓ ଶ୍ରଦ୍ଧାର ସନ୍ତକ ରୂପେ, ଆଜି ମଧ୍ୟ ମୋ ପାଖରେ ରହିଛି ।

ବେଳେବେଳେ ଆମେ ଜେଜେ ବାବାଙ୍କ ସାଙ୍ଗରେ ମଜା କରୁ । ଦିନେ ମୁଁ ମଜାରେ କହିଲି—"ଜେଜେ ବାବା ଗୋଟିଏ ଇୟର୍ ଫୋନ୍ ଲଗାଅ । ଶୁଣିବାକୁ ସୁବିଧା ହେବ ।" ସେ କହିଲେ—"ତମେ ତ ଇୟର୍ ଫୋନ୍ ଲଗାଇବାକୁ କହୁଛ, ତାହା ତ ମୁଁ ଶୁଣି ପାରୁଛି । ତେବେ ଇୟର୍ ଫୋନ୍ କ'ଣ ପାଇଁ ଲଗାଇବି ? ଜଗନ୍ନାଥ ଯଦି ଇୟର୍ ଫୋନ୍ ଲଗାଇ ମୋ ଡାକ ଶୁଣି ମୋତେ ତାଙ୍କ ନିକଟକୁ ନେଇ ଯାଆନ୍ତେ ତେବେ ଭଲ ହୁଅନ୍ତା ।" ସତକୁ ସତ ତାଙ୍କର ଡାକ ଦିନେ ଜଗନ୍ନାଥ ଶୁଣିଲେ ଓ ପବିତ୍ର ବାହୁଡ଼ାରେ ତାଙ୍କୁ ବାହୁଡ଼ାଇ ନେଲେ ।

ଯେତେ ଅସୁବିଧା ହେଉ ପଛେ ସେ ପ୍ରତିଦିନ ଜଗନ୍ନାଥଙ୍କର ମଙ୍ଗଳ ଆଳତି ଦେଖିବାକୁ ଯାଉଥିଲେ । କେବେ ତାଙ୍କ ସାଙ୍ଗରେ ମଙ୍ଗଳ ଆଳତି ଦେଖିବାର ସୌଭାଗ୍ୟ ମିଳେ । ମଙ୍ଗଳ ଆଳତି ଦର୍ଶନ ପରେ ସେ କହନ୍ତି—"ରୁହ ବାଇଶି ପାହାଚରେ ମୋତେ ଓହ୍ଲାଇ ଦେଇ ଯିବ ।" ଆନନ୍ଦ ବଜାରରୁ ପ୍ରସାଦ ପାଇ ସେ ଯେତେବେଳେ ତାଙ୍କ ଘୁମରଟିକୁ ମୋ ହାତକୁ ବଢାଇ ଦେଇ, ଗୋଟିଏ ହାତ ମୋ କାନ୍ଧରେ ଭରା ଦେଇ ଏବଂ ଅନ୍ୟ ହାତରେ ତାଙ୍କର ଚିରଚରିତ ତେଜବର୍ ବାଡ଼ିଟି ଧରି ଓହ୍ଲାଇ ଆସନ୍ତି, ସେତେବେଳେ ମୁଁ ଅନୁଭବ କରେ ସତେ ଯେପରି ଜଗନ୍ନାଥଙ୍କର ରଥକୁ ପହଣ୍ଡି ବିଜେର ପୁଣ୍ୟ ଫଳ ମୁଁ ଲଭି କରିଛି । ସେତେବେଳେ ମୁଁ ଯେ ନିଜକୁ କେତେ ଗୌରବାନ୍ୱିତ ମଣେ, ତାହା ତାହା ଭାଷାରେ ବର୍ଣ୍ଣନା କରି ପାରିବି ନାହିଁ । ସତେ ଯେପରି ତାଙ୍କ ପୁଣ୍ୟଫଳରୁ ଜଗନ୍ନାଥଙ୍କର କରୁଣା ସଦା ସର୍ବଦା ଆମ ପଛେ ପଛେ ରହିଛି । ଯାହାଫଳରେ କି ମୁଁ ଆଜି ମାଡ୍ରାସରେ ଇଞ୍ଜିନିୟରିଂ ପଢ଼ିବାକୁ ସକ୍ଷମ ହୋଇ ପାରିଛି ବୋଲି ମନେ କରେ ।

●

ହଳାଖ ଲେନ୍, କଟକ-୯

# ପୂଜ୍ୟ ବାଣୀକଣ୍ଠ


## ସଙ୍ଗୀତ ସୁଧାକର ଶ୍ରୀ ବାଳକୃଷ୍ଣ ଦାଶ


ପ୍ରକୃତରେ ସେ ହରିଙ୍କର ଚନ୍ଦନ ଥିଲେ । ଏଇଠି ତାଙ୍କ ହରିଚନ୍ଦନ ନାମର ସାର୍ଥକତା । ପ୍ରଥମେ ଯେତେବେଳେ ରେକର୍ଡର ଗୀତ ତାଙ୍କର ବାହାରିଲା ସେତେବେଳେ ସୁବାସିତ ଚନ୍ଦନର ବାସ୍ନା ସାରା ଓଡ଼ିଶା ମହକେଇ ଦେଇଥିଲା । ତାଙ୍କର ରେକର୍ଡ଼ ଗୀତ ଶୁଣିଲା ପରେ ସମସ୍ତେ ମୁଗ୍ଧ ହୋଇଯାଇଥିଲେ । ମୁଁ ମଧ୍ୟ ବିଶେଷ ଭାବେ ମୁଗ୍ଧ ହୋଇଥିଲି । ସେତେବେଳକୁ ମୋର ସଙ୍ଗୀତ ସାଧନା ଆରମ୍ଭ ହୋଇ ନ ଥାଏ । ତାଙ୍କ ଗୀତ ଶୁଣିଲା ପରେ ମୋର ସଙ୍ଗୀତ ପ୍ରତି ଆଗ୍ରହ ଜନ୍ମିଥିଲା ଓ ତାଙ୍କଠାରୁ ସଙ୍ଗୀତ ଗାଇବାର ପ୍ରେରଣା ମଧ୍ୟ ପାଇଥିଲି । ତାଙ୍କ କଣ୍ଠ ସ୍ୱରର ରେଞ୍ଜ (Range) ଏତେ ଥିଲା ଯେ, ସେ ଖୁବ୍ ବଡ଼ ପାଟିରେ ବିନା ମାଇକ୍‌ରେ ସ୍ପଷ୍ଟ ଭାବେ ଉଚ୍ଚାରଣ କରି ଶହ ଶହ ଲୋକଙ୍କୁ ଶୁଣାଇ ପାରୁଥିଲେ ଓ ମୁଗ୍ଧ ମଧ୍ୟ କରି ପାରୁଥିଲେ । ତାଙ୍କ ଗାଇବାର ଶୈଳୀ ଅଦ୍ୟାବଧି ମୁଁ କାହା ପାଖରୁ ଶୁଣି ପାରିନାହିଁ ।

ମୁଁ କେବଳ ତାଙ୍କୁ ଜଣେ ସଙ୍ଗୀତ ଶିଳ୍ପୀ ହିସାବରେ ଜାଣି ନ ଥିଲି । ସେ ମୋର ଗୁରୁଭ୍ରାତା ତଥା ଆତ୍ମୀୟ ଥିଲେ । ସେ ମୋର ପୂଜ୍ୟ ସଙ୍ଗୀତ ଗୁରୁ ଶ୍ରୀ ଗୋକୁଳ ଚନ୍ଦ୍ର ଶ୍ରୀଚନ୍ଦନଙ୍କ ପୁତୁରା ।

ମୋର ଏତିକି ଭାଗ୍ୟ ଯେ, ମୁଁ ତାଙ୍କ ସଂସ୍ପର୍ଶରେ ବହୁବାର ଆସିଛି ଓ ତାଂକର ସାନ୍ନିଧ୍ୟ ଲାଭ କରିଛି । ସେ ବଡ଼ ନିଷ୍ଠାପର । ତା'ସାଙ୍ଗକୁ ତାଙ୍କର ଅତି ଚମତ୍କାର ବ୍ୟବହାର ସବୁ ଶିଳ୍ପୀମାନଙ୍କୁ ମୁଗ୍ଧ କରିବା ସଙ୍ଗେ ସଙ୍ଗେ ନିକଟର କରି ପାରୁଥିଲା । ତାଂକର ସବୁଠାରୁ ଗୋଟିଏ ବଡ଼ ବିଶେଷତ୍ୱ ଥିଲା, ସେ ଶ୍ରେଷ୍ଠ ହେଉ/ବଡ଼ ହେଉ ସମସ୍ତଙ୍କୁ ଆଦର ଗୌରବ କରିବା । ଦେଖିବା ସାଙ୍ଗେ ସାଙ୍ଗେ ଅଗେ ଖଣ୍ଡିଏ ଖିଲିପାନ, ତା' ସାଙ୍ଗରେ କମାମ ଓ ତାଂକ ନିଜ ତିଆରି ଗୁଣ୍ଡିରୁ ଟିକେ ଦେଇ ସ୍ନେହ ସମ୍ଭାଷଣ କରୁଥିଲେ । ତାଂକ ଠାରେ କେବଳ ମାତ୍ର ଭଗବତ୍ ଶକ୍ତି ଓ ପ୍ରେରଣା ଏପରି ଥିଲା ଯେ, ଯେଉଁଥିପାଇଁ ସେ ଏପରି ଭାବ-ବିହ୍ୱଳ ହୋଇ ଜଗନ୍ନାଥଂକ ଜଣାଣ, ଭଜନ ସ୍ତୁତି ଇତ୍ୟାଦି ଗାଇ, ସମସ୍ତଙ୍କୁ ସେଇ ଭାବରେ ତନ୍ମୟ କରି ପାରୁଥିଲେ । ତାଂକ ବିଷୟରେ ତ କହିବାକୁ ଗଲେ ବହୁତ କିଛି ଅଛି, ଯାହାକି ଯେତେ ଲେଖିଲେ ବି ସରିବ ନାହିଁ । ମୋର ପୂଜ୍ୟ ଭ୍ରାତା ବାଣୀକଣ୍ଠ ନିମାଇଁ ଚରଣ ହରିଚନ୍ଦନ ଯୁଗ ଯୁଗ ଧରି ସମସ୍ତଂକ ନିକଟରେ ଶ୍ରଦ୍ଧାଭାଜନ ଓ ଚିରସ୍ମରଣୀୟ ହୋଇ ରହିଥିବେ ।

ଆମ ରାଜ୍ୟର ଜଣେ ବିଶିଷ୍ଟ କବି ଓ ସାହିତ୍ୟିକ ମୁରାରି ମୋହନ ଜେନା ତାଂକ ସଂପର୍କରେ ଯେଉଁ 'ସ୍ମାରକୀ ଗ୍ରନ୍ଥ' ସଂକଳିତ କରିବାର ବଳିଷ୍ଠ ଉଦ୍ୟମ କରିଛନ୍ତି, ସେଥିପାଇଁ ତାଙ୍କୁ ମଧ୍ୟ ଆଜି ଆନ୍ତରିକ ଶୁଭେଚ୍ଛା ଓ ଧନ୍ୟବାଦ ଜଣାଉଛି ।




ଏ. ଜି. କଲୋନି
ପ୍ଲଟ ନମ୍ବର-୩/ୟୁନିଟ୍ ନମ୍ବର-୪
ଭୁବନେଶ୍ୱର ।

# ତୁମେ ସୁନ୍ଦର, ତୁମ ଗୀତ ସୁନ୍ଦର

## ଶ୍ରୀ ପ୍ରଫୁଲ୍ଲ କର

ସେ ଦିନ ବାହୁଡ଼ା ଦଶମୀ—ଜଗନ୍ନାଥେ ଫେରୁଥା'ନ୍ତି ଶ୍ରୀମନ୍ଦିରକୁ ନଅଦିନ ପରେ । କେତେ ଆନନ୍ଦର ଦିନ । ଓଡ଼ିଆ ପୁଅଙ୍କ ମନ ଫାଟି ପଡ଼ୁଥାନ୍ତି ଆନନ୍ଦରେ ଯାତ୍ରା ଦେଖିବା ପାଇଁ/ଲକ୍ଷ୍ମୀ-ନାରାୟଣ ଭେଟ ଦେଖିବା ପାଇଁ । ପଞ୍ଚକୋଶୀର ଆସିଥା'ନ୍ତି ଚୂଡ଼ା, ନଡ଼ିଆ, କଦଳୀ ନେଇ ରଥ ଭୋଗ ଦେବେ, ଦିଅଁ ଦେଖିବେ, ଘରକୁ ଫେରିବେ । କିନ୍ତୁ କାହାର ମନରେ ସୁଖ ନ ଥାଏ । ମନେ ମନେ ହେଉଥାଏ ଜଗନ୍ନାଥେ ରଥରେ ନାହାନ୍ତି । ଯଦି କେହି ଶିଖିଥିବ ଦଶୁଥାଏ ସେ ବାହୁଡ଼ା ଯାତ୍ରା-କୋଉ ଭକତ ଜଗନ୍ନାଥଙ୍କୁ ବାନ୍ଧି ରଖିଛି କୋଉଠି ନେଇ—କିଏ କହିବ ସେ କଥା ?

ସେ ଦିନ ସକାଳୁ ସକାଳୁ ଜଗନ୍ନାଥେ ବାହୁଡ଼ା ବଜେକୁ ପ୍ରସ୍ତୁତ ହେଲା ବେଳେ, ତାଙ୍କର ଭକ୍ତ ଶିରୋମଣି ବାଣୀକଣ୍ଠ ବାହୁଡ଼ା ବଜେ କଲେ ବୈକୁଣ୍ଠକୁ—ପୂର୍ବଦିନ ରାତିରେ ଭଜନ ଶୁଣେଇ ଆସି ଘରେ ଶୋଇ ପଡ଼ିଲେ ମହାନିଦ୍ରାରେ । ସେ ତ ମୃତ୍ୟୁ ନୁହେଁ, ମୋକ୍ଷ । ଭଗବାନ ଗୀତାରେ କହିଛନ୍ତି—

"ତେଷା ମହଂ ସମୁଦ୍ଧର୍ତ୍ତା ମୃତ୍ୟୁ ସଂସାର ସାଗରତ୍
ଭବାମି ନଚିରାତ୍ ପାର୍ଥ ମଯ୍ୟାବେଶିତ ଚେତସାମ୍ ।"
(ଗୀତା—ଦ୍ୱାଦଶ ଅଧ୍ୟାୟ)

ଅର୍ଥାତ୍ ଯେଉଁମାନେ ମଦ୍‌ଗତ ପ୍ରାଣ ହୋଇ ନିବିଷ୍ଟ ଚିତ୍ତରେ ମୋର ଭଜନ କରନ୍ତି, ମୁଁ ମୃତ୍ୟୁ ରୂପକ ସଂସାର ସାଗରରୁ ସେମାନଙ୍କୁ ଉଦ୍ଧାର କରି ମୋକ୍ଷ ପ୍ରଦାନ କରିଥାଏ ।

ସେ ତ ମୋକ୍ଷ ପାଇଲେ, କାରଣ ସେ ଯୋଗଜନ୍ମା ଲୋକ ଥିଲେ । ହେଲେ ଆମେ କଣ ପାଇଲୁ ? ଏ ପ୍ରଶ୍ନ ସମସ୍ତଙ୍କ ମନରେ ଉଠିଥାଏ ।

କିଏ ଆଉ ଗାଇବ ନିଛକ ଓଡ଼ିଆ ସଙ୍ଗୀତ ? କିଏ ଶୁଣାଇବ କାଳିଆକୁ ଗୀତ ? ସଙ୍ଗୀତ ସୃଷ୍ଟି ହେବ—ସଙ୍ଗୀତଜ୍ଞ ଜନ୍ମ ନେବେ । ହେଲେ ଆଉ ଜଣେ ନିମାଇଁ ହରିଚନ୍ଦନ ଜନ୍ମ ହେବା ସମ୍ଭବ ନୁହେଁ ।

ତାଙ୍କ ସହିତ ମୋର ସଂପର୍କ ଅତି ଘନିଷ୍ଠ । ଶେଷ ଜୀବନରେ ସେ ପୁରୀ ମାର୍କଣ୍ଡେଶ୍ୱର ସାହିରେ ଘର ଖଣ୍ଡିଏ କରି ରହୁଥାନ୍ତି । ମୋ ଶ୍ୱଶୁର ଘର ସେଇ ସାହିରେ । ତେଣୁ ଯେତେବେଳେ ମୁଁ ଶ୍ୱଶୁରଙ୍କ ଘରକୁ ଯାଏ, ତାଙ୍କ ଦୁଆର ବାଟେ ମୋତେ ଯିବା ଆସିବା କରିବାକୁ ପଡ଼େ । କେତେବେଳେ ଦେଉଳରେ ତ, କେତେବେଳେ ଘରେ ନିଶ୍ଚୟ ଥରେ ଦେଖା ହୁଏ । ଅନେକ ଥର ତାଙ୍କ ହାତରୁ ଜଗନ୍ନାଥଙ୍କ ଆଲଟ, ମହାପ୍ରସାଦ ଭୋଗ ମୁଁ ଖାଇଛି । ଅନେକ କଥା ପଚାରନ୍ତି । ସଙ୍ଗୀତ ଜଗତର କଥା—କେମିତି ଆମେ ସବୁ ସଙ୍ଗୀତକୁ ପେଶା କରି ବଞ୍ଚି ରହିଛୁ—ଇତ୍ୟାଦି ଇତ୍ୟାଦି । ତାଙ୍କ ସହିତ ମୋର କଥାବାର୍ତ୍ତା ଟିକିଏ ଟିକିଲ କଲି ପରି । ସେ ମୋତେ ନାଚ ସ୍ଥାନ ଦେଇଥାନ୍ତି ଏବଂ ମୋ ପିଲାଙ୍କୁ ଅଣ୍ଟା ନାତି ନାତୁଣୀ ପରି ଦେଖନ୍ତି । ସେଇ ସୁଯୋଗ ନେଇ ମୁଁ ତାଙ୍କୁ ଅନେକ କଥା ଖୋଲିଖୋଲି ପଚାରିଥାଏ । ଥରେ କଥାରେ କଥାରେ ମୁଁ ପଚାରିଲି—"ଆପଣ ତ ଯୁବକ ସମୟରେ ଅତି ସୁନ୍ଦର ଥିବେ, ଯେତେବେଳେ ଆପଣଙ୍କ ଗୀତ

ଶୁଣି ଏବଂ ଆପଣଙ୍କ ଚେହେରା ଦେଖି କେତେ ଝିଅ ଆପଣଙ୍କ ପ୍ରେମରେ ପଡ଼ିଥିଲେ କି ?

ସେ କହିଲେ—"ଆରେ ମୁଁ କଣ ତମ ପରି ଏମିତି ଆଧୁନିକ ଗୀତ ଗାଇ ପାରୁଥିଲି ? ମୁଁ ତ ପୁରୁଣା କାଳିଆ ଗୀତ ଗାଏ—ଆଜି ସେ ଗୀତ ଶୁଣି କିଏ କାହିଁ ମୋତେ ପ୍ରେମ କରିବ ?"

ଠିକ୍ ତା'ର କିଛି ଦିନ ପରେ ଥରେ ବାଣୀକଣ୍ଠଙ୍କୁ ବାଣୀବିହାରର ଛାତ୍ରମାନେ ଡାକିଥିଲେ ଗୀତ ଶୁଣିବା ପାଇଁ । ତାଙ୍କ ସହିତ କେତେକ ପ୍ରସିଦ୍ଧ ଯୁବକ ତଥା ଆଧୁନିକ ଗାୟକମାନେ ମଧ୍ୟ ଥିଲେ । ସେ ଦିନ ମତେ ଆଶ୍ଚର୍ଯ୍ୟ ଲାଗୁଥାଏ । ଏ କଲେଜ ପିଲାଏ ବାଣୀକଣ୍ଠଙ୍କ ଠାରୁ ଗୀତ ଶୁଣିବାକୁ କେମିତି ମନେ କଲେ ?

ଆଧୁନିକ ଗାୟକମାନେ କହିଲେ—ସେ ବୁଢାଲୋକ ତାଙ୍କୁ ଆଗ ଗାଇବାକୁ ଦେଇ ଦିଅ । ସେ ଆଗ ଗାଇଲେ ଏବଂ ଏବେ ମଧ୍ୟ ବିଶ୍ୱାସ କରି ହେଉନି, ସେ ଦିନ ବାଣୀବିହାରର ଯୁବକମାନେ କି ଭାବେ ତାଙ୍କ ଗୀତରେ ଉନ୍ମାଦ ହୋଇ ତାଙ୍କୁ ଘନ ଘନ କରତାଳି ଦେଇ ତାଙ୍କ ଶ୍ରେଷ୍ଠତ୍ୱକୁ ସମ୍ମାନ ଦେଇଥିଲେ ? ତା'ପରେ ଅବଶିଷ୍ଟ ବିଶିଷ୍ଟ ଯୁବଶିଳ୍ପୀମାନେ ମଞ୍ଚକୁ ଯିବାକୁ ଭୟ କରିଥିଲେ ।

ସେ ଦିନ ମୁଁ ଭାବିଲି ଯିଏ ଗାନପ୍ରିୟ, ରସିକ ଶିରୋମଣି ଜଗନ୍ନାଥଙ୍କୁ ଭୋଳେଇ ପାରନ୍ତି, ତାଙ୍କ ଗୀତରେ ସାଧାରଣ ମାନବ ମନ୍ତ୍ରମୁଗ୍ଧ ହେବା କିଛି ନୂଆ କଥା ନୁହେଁ । ତାଙ୍କର ବିଶେଷତ୍ୱ ଥିଲା—ତାଂକର ଈଶ୍ୱରଦତ୍ତ କଣ୍ଠ ଓ ଭାବପ୍ରବଣତା । ସେ ସଙ୍ଗୀତ ଶାସ୍ତ୍ରର ନିୟମ ଠାରୁ ଅନ୍ତର୍ନିହିତ ଭାବମୟତାକୁ ବେଶୀ ଗୁରୁତ୍ୱ ଦେଉଥିଲେ ଏବଂ ତାହାହିଁ ପ୍ରକୃତ ସଙ୍ଗୀତ । ୮୨ ବର୍ଷ ବୟସରେ ମଧ୍ୟ ସେ ଗୀତ ଗାଇ ଜଗନ୍ନାଥଙ୍କୁ ନିତିଦିନ ଶୁଣାଇ ପାରୁଥିଲେ । ଏ ସୌଭାଗ୍ୟ କେତେ ଜଣ ଗାୟକଂକ ଜୀବନରେ ଆସିବ ? ତାଂକ ଭକ୍ତିର ତୁଳନା ନାହିଁ, ତାଂକ ଶକ୍ତିର ତୁଳନା ନାହିଁ, କି ତାଂକ ସାଧନାର ଉପମା ନାହିଁ । ସେ ଥିଲେ ପ୍ରକୃତରେ "ସଙ୍ଗୀତ କଳ୍ପତରୁ" । ଏ ଉପାଧି ତାଙ୍କୁ ପୁରୀ ଶ୍ରୀକ୍ଷେତ୍ର କଳା ପ୍ରକାଶିକା ତରଫରୁ ମିଳିଥିଲା । କେତେ ଗୀତ ତାଂକ ଗର୍ଭରେ ଥିଲା, ତାହା କହି ହେବନି ।

ପୁଣି ଦିନ ବିତି ଯିବ । ଅନେକ କଥା ଇତିହାସରେ ରହିବ, କିଛି ମଧ୍ୟ କିମ୍ବଦନ୍ତୀରେ । ନୂତନ ସୃଷ୍ଟି ହେବ ପୁରୁଣାର ବୁକୁ ଉପରେ । କିନ୍ତୁ ବାଣୀକଣ୍ଠ ରହିଥିବେ ଅଦ୍ୱିତୀୟ ହୋଇ, ଅମର ହୋଇ, ଓଡ଼ିଆ ପୁଅଂକ ମାନସ ପଟଳରେ ଚିରଦିନ ପାଇଁ ।

●

ମଙ୍ଗଳାବାଗ,
କଟକ

# ସେ କଣ୍ଠ ଆଉ ମିଳିବନି

## ଶ୍ରୀଛାମୁ ସୁରସେବକ ଭିକାରୀ ଚରଣ ବଳ

କେନ୍ଦ୍ରାପଡ଼ାର ବଶିଷ୍ଟ ଜମିଦାର ସ୍ୱର୍ଗତ ରାଧାଶ୍ୟାମ ନରେନ୍ଦ୍ରଙ୍କ ପରିବାରରେ ଶ୍ରୀ ନିମାଇଁ ଚରଣ ହରିଚନ୍ଦନଙ୍କ ଜନ୍ମ । ସେ ଜଣେ ଉଚ୍ଚସ୍ତରର ଗାୟକ ଏବଂ ଓଡ଼ିଶୀ ଛାନ୍ଦ, ଭଜନ, ଜଣାଣ ଗାଇବାରେ ସେ ଓଡ଼ିଶାରେ ଖୁବ୍ ସୁଖ୍ୟାତି ଅର୍ଜନ କରିଯାଇଛନ୍ତି ।

ମୋର ପିଲାଦିନର କଥା ମନେ ପଡ଼ୁଛି । ସେତେବେଳେ ମୁଁ କେନ୍ଦ୍ରାପଡ଼ାସ୍ଥ ଆମ ଯୋବଲା ଗାଁରେ ଥାଇ ଓଡ଼ିଶୀ ସଙ୍ଗୀତ ଦଳରେ ବାଦ୍ୟ ଓ ଗୀତ ଗାଇବା ଆରମ୍ଭ କରିଥାଏ ଏବଂ ଆମ ଗ୍ରାମ ଭଗବାନଙ୍କ ମଠରେ ବଡ଼ ଉତ୍ସବରେ ଭଜନ ଜଣାଣ ଗାଇ ଗୀତା ଭାଗବତ ଅଧ୍ୟାୟ କେଇଟା ପଢ଼ିଥାଏ । ସେତେବେଳେ ସଙ୍ଗୀତ ସମ୍ବନ୍ଧରେ ମୋର ବିଶେଷ ଧାରଣା ନ ଥିଲା । ସେହି ସମୟରେ ମୁଁ ନିମାଇଁ ଚରଣ ହରିଚନ୍ଦନଙ୍କ ଗ୍ରାମଫୋନ ରେକର୍ଡ଼ ଗୀତ (ଓଡ଼ିଶୀ) "ପଞ୍ଚବାଣ ବଞ୍ଚନା ରେ, କାହିଁକି ଦାସକୁ ମଞ୍ଚନା ।" ଓ "ତୁମ୍ଭ ପରି ପ୍ରଭୁ ଥାଉଁ ଥାଉଁ ମୁଁ ଯେ ।" ଆଦି ଭିନ୍ନ ଭିନ୍ନ ଏଇଭଳି କେତେ ଗୀତ ମୁଁ ଯେତେବେଳେ ଶୁଣେ, ମନେ ମନେ ଭାବୁଥାଏ ଯେ, ଏ ହେଉଛନ୍ତି ଦେବଅଂଶୀ ଲୋକ । ନଚେତ ଏପରି ଗୀତ ଗାଇବା ମନୁଷ୍ୟ ପକ୍ଷରେ ସମ୍ଭବ ନୁହେଁ । ତାଙ୍କ ଗୀତ ଶୁଣି ମୁଁ ମୁଗ୍ଧ ହୋଇପଡ଼େ ଏବଂ ଭାବୁଥାଏ ଏଭଳି ଗୀତ ସାତ ଜନ୍ମରେ ମଧ୍ୟ ମୋର ହେବ ନାହିଁ । । କେବଳ ଜଗନ୍ନାଥେ ଏତିକି କୃପା କରନ୍ତେ କି, ଥରେ ହିଁ ଏ ବାଣୀକଣ୍ଠ ନିମାଇଁ ହରିଚନ୍ଦନଙ୍କ ଦର୍ଶନ ମିଳନ୍ତା । ଏତିକି ହେଲେ ମୋ ଜୀବନ ଧନ୍ୟ ହୁଅନ୍ତା ।

ତାଙ୍କ ରେକର୍ଡ଼କୁ ଅନୁକରଣ କରି ମୁଁ ମଧ୍ୟ ଅନେକ ଗୀତ ଗାଉଥିଲି । ସମସ୍ତେ ମଧ୍ୟ ଲକ୍ଷ୍ୟ କରିଥିବେ ବାଣୀକଣ୍ଠଙ୍କ ସେ କଣ୍ଠର ମାହାତ୍ମ୍ୟ । ଯଦି ଗୋଟିଏ ସ୍ଥାନରେ ପର୍ବ-ପର୍ବାଣୀ ଯାତ୍ରା ଉତ୍ସବରେ ଏକାଧିକ ରେକର୍ଡ଼ ବାଜୁଥିଲେ ମଧ୍ୟ, ବାଣୀକଣ୍ଠ ନିମାଇଁ ହରିଚନ୍ଦନଙ୍କ ଗୀତ ବାଜିଲେ ତାଙ୍କ କଣ୍ଠର ସ୍ୱର ସ୍ୱାତନ୍ତ୍ର୍ୟ ଜଣାପଡ଼େ । ଆଉ ମଧ୍ୟ ଅନ୍ୟମାନଙ୍କର କଣ୍ଠ ଯେଉଁଠି ଶେଷ, ସେଇଠାରୁ ତାଙ୍କ କଣ୍ଠ ଆରମ୍ଭ ହୋଇଥାଏ । ତେଣୁ ସେ କଣ୍ଠର ନାମ ବାଣୀକଣ୍ଠ ରଖାଯିବା ଯଥାର୍ଥ ହୋଇଛି । ସେ କଣ୍ଠ ଆଉ ମିଳିବନି ।

୧୯୬୮ ମସିହା । ସେତେବେଳକୁ ମୁଁ କଟକ ଅସି ସାରିଥାଏ ଓ କଳାବିକାଶ କେନ୍ଦ୍ରରେ ଶିକ୍ଷକତା କରୁଥାଏ । କିଛି ଦିନ ବିତିଗଲା ପରେ ପୁରୀରେ ନିମାଇଁ ହରିଚନ୍ଦନଙ୍କ ଦର୍ଶନ ପାଇ ମନ ଉଦ୍‌ବେଗ ହେଲା । ଦିନେ ସେହି ଚକାଡ଼ୋଳାଙ୍କ ଦର୍ଶନ କରି ଫେରିବା ବେଳେ ଦେଖିଲି ମନ୍ଦିରର ବାଇଶି ପାହାଚରେ ବାଣୀକଣ୍ଠ ବସି ଜଣେ ବନ୍ଧୁଙ୍କ ସାଙ୍ଗରେ କଥା ହେଉଥାନ୍ତି । ମୁଁ ଯାଇଁ ସାଷ୍ଟାଙ୍ଗ ପ୍ରଣିପାତ ହୋଇ ପାଦଧୂଳି ନେଲି । ଦାମିକା ଧୋତି, ପଞ୍ଜାବୀ ଓ ଗରକାୟ ଚେହେରା ସାଙ୍ଗକୁ ମୁଣ୍ଡରେ ଚନ୍ଦନ ଚିତା ଏବଂ କଣ୍ଠରେ ଲମ୍ବ ଜପମାଳା ମଠା ସୁନ୍ଦର ତାଙ୍କର ଶୋଭା ପାଉଥାଏ । ହସ ହସ ମୁହଁରେ ମୋତେ ପଚାରିଲେ—"ତୁମେ କିଏ ବାବୁ ? ମୁଁ ତୁମକୁ ଚିହ୍ନିପାରୁ ନାହିଁ ।" ମୁଁ ମୋର ପରିଚୟ ଦେଲି । ସେ ଭାରି ଖୁସି ହେଲେ ଏବଂ କଲ୍ୟାଣ କଲେ ।

ତାଙ୍କର ପ୍ରାୟ ଦୁଇଶହରୁ ଅଧିକ ଗୀତ ତାଙ୍କ ମୁହଁରେ ମୁଖସ୍ଥ ବୋଲି ସେ କହନ୍ତି । ସେ ଯେତେବେଳେ ହାରମୋନିୟମ ଧରି ଗୀତ ଗାଆନ୍ତି, ଆଖି ବୁଜି ଗୋଟିଏ ପରେ ଗୋଟିଏ ଗୀତ ଏଇପରି ଏକ ଧାରରେ ଛଅ/ସାତ ଗୋଟି ଗୀତ ଗାଇ ସାରିବା ପରେ ତାଙ୍କର କାର୍ଯ୍ୟକ୍ରମ ଶେଷ ହୁଏ । ବିଶେଷତଃ ଭଜନ, ଜଣାଣ ଗାଇବା ବେଳେ ଗୀତର ଭାବରେ ସେ ଏପରି ବିହ୍ୱଳ ହୋଇଯାଉଥିଲେ ଯେ, ତାଙ୍କ ଆଖିରୁ ଖାଲି ଅଶ୍ରୁ ନିର୍ଗତ ହେଉଥାଏ । ତାଙ୍କ ଉଦାର ହୃଦୟ, ଅନ୍ୟ ପ୍ରତି ଶ୍ରଦ୍ଧା ଓ ଅମାୟିକ ବ୍ୟବହାର ପାଇଁ ସେ ଆମର ନମସ୍ୟ ।

୧୯୭୫ ମସିହାରେ ତତ୍‌କାଳୀନ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କ ତତ୍ତ୍ୱାବଧାନରେ ଓ ସଙ୍ଗୀତ-

ସ୍ୱର୍ଗୀୟ ଶଙ୍କର ବାଲକୃଷ୍ଣ ଦାଶଙ୍କ ସଙ୍ଗୀତ ନିର୍ଦ୍ଦେଶନାରେ ଭଜନ; ଜଣାଣ ଓ ଓଡ଼ିଶୀ ସଙ୍ଗୀତକୁ ଏଚ୍. ଏମ୍. ଭି. କଂପାନୀରେ ରେକର୍ଡ କରିବାକୁ ଉଦ୍ୟମ ହେଉଥାଏ । ଓଡ଼ିଶାର ବଡ଼ ବଡ଼ କଳାକାରମାନେ ଗୀତ ଗାଇବାକୁ ବସ୍ତି ଯାଇଥାନ୍ତି । ମୋ ଭାଗରେ ଛଅଗୋଟି ଗୀତ ପଡ଼ିଥାଏ । ସେଥିମଧ୍ୟରୁ "ପତିତ ଜନକୁ ଉଦ୍ଧାରିବା ପାଇଁ ଉଡ଼ାଉ ଅଛ ପତକା" ଗୀତଟି ମୋତେ ଗାଇବାକୁ କୁହାଗଲା । ଏହିକଥା ଶୁଣି ମୁଁ ବଡ଼ ଅଡ଼ୁଆରେ ପଡ଼ିଲି । ମୁଁ କହିଲି—ଆଜ୍ଞା, ମୁଁ ଏ ଗୀତଟି ଗାଇପାରିବି ନାହିଁ । କାରଣ ଏ ଗୀତଟି ନିମାଇଁ ହରିଚନ୍ଦନ ଆଗରୁ ଗାଇଛନ୍ତି । ଏଇଟି ତାଙ୍କ ଗୀତ । ମୁଁ ପୁଣି ଗାଇଲେ ତାଙ୍କ ମନରେ ଦୁଃଖ ହେବ । କିନ୍ତୁ ମୋ କଥା କେହି ଶୁଣିଲେ ନାହିଁ । ଶେଷରେ ମୁଁ ନିରୁପାୟ ହୋଇ ନିମାଇଁ ନନା ରହୁଥିବା ପୁରୀ ମାଟିମଣ୍ଡପ ସାହି ତାଙ୍କ ଘରେ ପହଞ୍ଚିଲି । ସେ ସେତେବେଳକୁ ଜଗତର ନାଥ ଜଗନ୍ନାଥଙ୍କ ଅପାର କରୁଣାର ଅଧିକାରୀ ହୋଇ ଠାକୁରଙ୍କ ଗୃମର ସେବା ପାଇ ସାରିଲେଣି । ପୁଣି ଦୈନିକ ପ୍ରାତଃ ସମୟରେ ଓ ବଡ଼ଠାକୁରଙ୍କ ବଡ଼ ସିଂହାରରେ ଜଣାଣ ଓ ଗୀତ-ଗୋବିନ୍ଦ ଗାଇବାକୁ ମଞ୍ଜୁର ପାଇ ସାରିଲେଣି ।

ଠିକ୍ ଦିନ ଦଶଟା ବେଳେ ତାଙ୍କ ଘରେ ପହଞ୍ଚିବା ପରେ ଜାଣିଲି ନିମାଇଁ ନନା ଘରେ ଅଛନ୍ତି । ତାଙ୍କୁ ପ୍ରଣାମ ଜଣାଇ ପାଦଧୂଳି ନେଲି । ମୋତେ ଦେଖି ସେ ଭାରି ଖୁସି ହୋଇଗଲେ ଏବଂ କହିଲେ—"କହୋ ବଳେ ! କୁଆଡେ ଆସିଛ ?" ମୁଁ କହିଲି—ଆଜ୍ଞା, ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ କେତେଗୁଡ଼ିଏ ପୁରାତନ ସଙ୍ଗୀତକୁ ଏଚ୍. ଏମ୍. ଭି. ଗ୍ରାମଫୋନ୍ କମ୍ପାନୀ ଦ୍ୱାରା ରେକର୍ଡ କରିବାକୁ ସ୍ଥିର କରିଛନ୍ତି । ସେଥିରେ ଆପଣ ଗାଇଥିବା "ପତିତ ଜନକୁ ଉଦ୍ଧାରିବା ପାଇଁ ଉଡ଼ାଉ ଅଛ ପତାକା" ଗୀତଟିକୁ ଆଉ ଥରେ ଗାଇବାକୁ ମୋତେ ଅନୁରୋଧ କରିଛନ୍ତି । ସେ ଗୀତକୁ କ'ଣ ମୁଁ ଗାଇ ପାରିବି ? ଏତକ କହି ଦେଇ ମୁଁ ଭାବୁଥିଲି ବାଣୀକଣ୍ଠ ନିଶ୍ଚୟ ଖରାପ ଭାବିବେ । କାରଣ ତାଙ୍କର ସେ ଗୀତରେ ସୁନାମ ହେଲା ପରେ, ଆଉ ଜଣେ ସେ ଗୀତ କାହିଁକି ଗାଇବ ? ପୁଣି ଭାବୁଥାଏ, ମୋର ଏ କଥା ଶୁଣି ସେ ନିଶ୍ଚୟ ମ୍ରିୟମାଣ ହୋଇ ପଡ଼ିବେ । କିନ୍ତୁ ସେ ଉଦାର ହୃଦୟରେ ମନରେ କିଛି ଗ୍ଲାନି ନ ରଖି ଅନାୟାସରେ ଓ ଅତି ଉତ୍ଫୁଲ୍ଲ ଚିତ୍ତରେ କହିଲେ—"ଆରେ ହଁ, ହଁ ତୁମେ ନିଶ୍ଚୟ ଗାଇ ପାରିବ । ମୁଁ କିଛି ଭାବିବି ନାହିଁ । ତୁମେ ଏ ଗୀତ ଗାଇ ସୁଖ୍ୟାତି ଅର୍ଜନ କର ।"

ଏ କଥା ଶୁଣି ମୋ ଆଖିରେ ଲୁହ ଆସିଲା । ମୁଁ କହିଲି—ଆପଣ ଯାହା ଗାଇଛନ୍ତି, ମୋତେ କୁହନ୍ତୁ ମୁଁ ଲେଖିନେବି ଏବଂ ସେଇଆ ହିଁ ଗାଇବି । ତାଙ୍କ ଠାରୁ ଗୀତଟି ଲେଖି ଆଣିଲି । ଆସିଲା ବେଳେ ଆଶୀର୍ବାଦ ଭିକ୍ଷା କଲି ଏବଂ ଗୀତଟି ଗାଇବି ବୋଲି ଅନୁମତି ନେଇ ଆସିଲି । ଏହା ମୋ'ର ସେ ଦିନର ଅଙ୍ଗେ ଲିଭାଇବା କଥା ।

ମୋର ପ୍ରତି ତାଙ୍କର ଏ ପ୍ରକାର ଉଦାରତା ଓ ମମତା ମୁଁ ମୋର ଏହି ସଙ୍ଗୀତଜ୍ଞ ଜୀବନରେ ଆଉ କାହାଠାରୁ ସେତେ ସେ ପାଇବି, ଏ ବିଶ୍ୱାସ ମୋର ନାହିଁ । ନିମାଇଁ ନନାଙ୍କ ଆଶୀର୍ବାଦ ମୋ ହୃଦୟର ଶିଙ୍ଖୁଳା ହୋଇ ସବୁଦିନେ ରହିଥିବ ।

●

ଜୋବ୍ରା,
କଟକ-୯

# ଶ୍ରଦ୍ଧାଞ୍ଜଳି

ଶ୍ରୀ ଆରତି ପୃଷ୍ଟି

୧୯୪୪ ମସିହାର ଏକ ରାତି । ମୁଁ ମୋ ମାମୁଁ (ଶ୍ରୀ ସହଦେବ ମହାରଣା)ଙ୍କ ସହିତ ବଙ୍ଗାଳି ସାହି ନିତାଇ ଗୌରଙ୍ଗ ମଠକୁ ଯାଇଛୁ । ସେଠାରେ ଏକ ନାଟକ ରିହର୍ସାଲ ହେଉଥାଏ, ହେଉଥିବେ ମୁଁ ଅଂଶ ଗ୍ରହଣ କରିଥାଏ । ରିହର୍ସାଲ ସରିବାର ଅନତି ବିଳମ୍ବରେ ହଠାତ୍ ଏକ ଗୀତ ମୋର କର୍ଣ୍ଣ ଗୋଚର ହେଲା । ସେ ଥିଲା ଗୀତ ଗୋବିନ୍ଦରୁ ଏକ ପଦ "ବନମାଳିନା" । ମୋ ଠାରୁ ୨୦/୨୫ ଗଜ ଦୂରରେ ଥିଲେ ସେ । କି ସୁନ୍ଦର ଗଳା । କଥାରେ ଯେପରି କହନ୍ତି କଂସା ପରି ଗଳା'ଟା । ତାଙ୍କୁ ମଠର ନେତେଲୋକ ଗୁରୁଭାଇ ଡାକି ପୁଣି ଅନୁରୋଧ କଲେ କିଛି ଗାଇବାକୁ । ମୋ'ର ମନେ ଅଛି, ସେ ଗାଇଥିଲେ କବିସୂର୍ଯ୍ୟଙ୍କର ଲିଖିତ ଏକ ଗୀତ "ଅନାଠି ନାହିଁ ନାଗର ମଣିକି ମୁଁ ହାଲେ ।" ମଧୁର ସ୍ୱରରେ (ଠିକ୍ ମୌଳିକ ଛାନ୍ଦରେ ଯେପରି ଗାଁ ଗହଳରେ ଚମ୍ପା ଦେଶାଖ ଛନ୍ଦରେ ଗାଆନ୍ତି) ଅଦ୍ଭୁତ ଗାଇଛନ୍ତି—"ଆହା ଧନୁର୍ଦ୍ଧର ବୀରବର," ବିଶ୍ୱନାଥ ଖୁଣ୍ଟିଆଙ୍କ ଚର ଯତଚତ ଛାନ୍ଦ, ଯାହାର କି ହିଜ୍ ମାଷ୍ଟରସ୍ ଭଏସର ରେକର୍ଡ ଅଛି ।

ତାଙ୍କର 'ଆର୍ତ୍ତିବାଣୀ ଚଉତିଶା', ଯଥା :—"କୃପାସିନ୍ଧୁ ବଦନ ଟେକି ଅବଲୋକନ" ଶୁଣିଲେ ମନରେ ସ୍ୱତଃ ଭକ୍ତିଭାବ ଜାଗ୍ରତ ହୁଏ । ପ୍ରକୃତରେ ସେହି ପରି ଗରୁଡ ସ୍ତମ୍ଭ ପାଖରେ ଗାଇ କବି ଦୀନକୃଷ୍ଣ ଦାସ ଦୁରାରୋଗ୍ୟ କୁଷ୍ଠ ରୋଗରୁ ମୁକ୍ତ ହୋଇଥିଲେ । କବି ନିତ୍ୟାନନ୍ଦଙ୍କ ଲିଖିତ ଆରତ ଧ୍ୱଂସନ, ଯଥା—"ତୁମ ପରି ପ୍ରଭୁ ଥାଉଁ ଥାଉଁ ମୁଁ ଯେ ବୁଡ଼ିଲି ବିପଦ ଜଳେ" ଶୁଣି କେତେ ପଦ ମନରେ ରଖିଛି, ତାକୁ ଠିକ୍ ସେହି ଶୈଳୀରେ ଗାଇବାକୁ ଭାରି ଭଲ ଲାଗେ । ମୋଟ ଉପରେ ସେ ଛାନ୍ଦ ଗୁଡ଼ିକ ପୁରାତନ ଶୈଳୀରେ ଗାଇଛନ୍ତି ।

ଆଜିକାଲି ଆସ୍ତେ ଆସ୍ତେ ଆମ ଓଡ଼ିଆର ସେହି ମୌଳିକତା ଛାଡ଼ିଲେଣି । ଏହିପରି ପୁରୁଣା ଛାନ୍ଦ, ଚଉପଦୀ ଗାୟକମାନେ କାଳର କରାଳ କବଳରେ ପଡ଼ି ସଂସାରରୁ ବିଦାୟ ନେଇଛନ୍ତି । ଓଡ଼ିଶାର ତେଲିଙ୍ଗି ବାଜା, ଘୋଡ଼ା ନାଚର ତା'ର ନିଜର ମୌଳିକତା ଛାଡ଼ି ଶସ୍ତା ସିନେମା ସଙ୍ଗୀତ ସ୍ୱର ବନେଇଲେଣି । ସେ ଛାନ୍ଦ ଚଉପଦୀ ସ୍ୱର ସବୁ ଜଗତରୁ ବିଦାୟ ନେଲେଣି । ଆଉ କିଛି ମୌଳିକତା ନାହିଁ । କାଳର କବଳରେ ପଡ଼ି ଗୁରୁ ସିଂହାରି ଶ୍ୟାମସୁନ୍ଦର କର ଯାଇଥିଲେ । ନମାଇଁ ହରିଚନ୍ଦନ ମଧ୍ୟ ତାଙ୍କର ପଦାଙ୍କ ଅନୁସରଣ କଲେ । ସବୁ ଜଗବନ୍ଧୁଙ୍କର ଇଚ୍ଛା । ଗୀତାରେ କଥିତ ଅଛି—"ନୈନଂ ଛିନ୍ଦନ୍ତି ଶସ୍ତ୍ରାଣି ନୈନଂ ଦହତି ପାବକଃ । ନ ଚୈନଂ କ୍ଲେଦୟନ୍ତ୍ୟାପୋ ନ ଶୋଷୟତି ମାରୁତଃ ।" ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ କହିଛନ୍ତି, "ହେ ଅର୍ଜ୍ଜୁନ ! ଏହି ଆତ୍ମାକୁ ଶସ୍ତ୍ରାଦି କାଟିପାରେ ନାହିଁ ଏବଂ ଏହାକୁ ଅଗ୍ନି ଜାଳିପାରେ ନାହିଁ, ପାଣି ବୁଡ଼ାଇ ମାରିପାରେ ନାହିଁ କି ବାୟୁ ଶୁଖାଇ ପାରେ ନାହିଁ । ପୁଣି କହିଛନ୍ତି—

ବାସାଂସି ଜୀର୍ଣ୍ଣାନି ଯଥା ବିହାୟ
ନବାନି ଗୃହ୍ଣାତି ନରୋଽପରାଣି
ତଥା ଶରୀରାଣି ବିହାୟ ଜୀର୍ଣ୍ଣା—
ନ୍ୟନ୍ୟାନି ସଂଯାତି ନବାନି ଦେହୀ ।

ମନୁଷ୍ୟ ଯେପରି ପୁରୁଣା ବସ୍ତ୍ର ତ୍ୟାଗ କରି ଅନ୍ୟ ନୂଆ ବସ୍ତ୍ରକୁ ଗ୍ରହଣ କରେ, ସେହିପରି ଜୀବାତ୍ମା ପୁରୁଣା ଶରୀରକୁ ଛାଡ଼ି ଅନ୍ୟ ନୂଆ ଶରୀରକୁ ପ୍ରାପ୍ତ ହୁଏ ।

ଠାକୁରଙ୍କ କୃପାରୁ ପୂଜ୍ୟ ବାଣୀକଣ୍ଠ ନିମାଇଁ ହରିଚନ୍ଦନଙ୍କର ଅମରାତ୍ମା ଶାନ୍ତିରେ ଅବସ୍ଥାନ କରୁ ।

ଭଗତପୁର,
କଟକ-୯

# କି ହେବ ଶୁଆ ପୋଷିଲେ

ଶ୍ରୀ ଭୂପେନ ଘୋଷ

"କି ହେବ ଶୁଆ ପୋଷିଲେ, ହରି ନାମ ନ ଜପିଲେ" ଭଜନ ଗୀତଟିର ସ୍ୱର, ଶିଳ୍ପୀ କଣ୍ଠର ଦରଦ ଓ ମାଦକତା, ସଙ୍ଗୀତପ୍ରେମୀ ଜନତାଙ୍କ ମଧ୍ୟରେ ଆଲୋଡ଼ନ ସୃଷ୍ଟି କରିଥିଲା—ଯେଉଁ ଶିଳ୍ପୀଙ୍କର ଖ୍ୟାତି ଓ ପ୍ରସିଦ୍ଧି ଚିରଦିନ ପାଇଁ ଶ୍ରୋତାମାନଙ୍କ ହୃଦୟରେ ଗଭୀର ରେଖାପାତ କରିଛି, ସେହି ସ୍ମରଣୀୟ ଶିଳ୍ପୀ ହେଉଛନ୍ତି ନିମାଇଁ ଚରଣ ହରିଚନ୍ଦନ । ସେ ଆଜି ଇହଜଗତରେ **ନାହାନ୍ତି, ମାତ୍ର ତାଙ୍କ** କଣ୍ଠର ଲାଳିତ୍ୟ ଓ ମିଷ୍ଟତା ଏ ପର୍ଯ୍ୟନ୍ତ ଓଡ଼ିଶାର **ପୁରପଲ୍ଲୀ** ଓ ସହର ବଜାରରେ ଅବିସ୍ମରଣୀୟ ହୋଇ ରହିଛି ।

ନିମାଇଁ ବାବୁଙ୍କ ଜନ୍ମ ସ୍ଥାନ କେନ୍ଦ୍ରାପଡ଼ାରେ । ମାତ୍ର ସାତବର୍ଷ ବୟସରେ ସେ ବିଶେଷ କରି ଓଡ଼ିଶୀ ଗୀତ ଶିକ୍ଷା ଆରମ୍ଭ କରି ଷୋହଳ ବର୍ଷ ବୟସରେ ଜଣେ ସୁଗାୟକର ଦକ୍ଷତା ପ୍ରତିପାଦନ କରିଥିଲେ ।

୧୯୩୩ ମସିହାରେ ଅଧ୍ୟାପକ ଲକ୍ଷ୍ମୀକାନ୍ତ ଚୌଧୁରୀ ଓଡ଼ିଶୀ ଗୀତ ଓ ଅନ୍ୟାନ୍ୟ ଓଡ଼ିଆ ଗାନ ଅଳଙ୍କାର ପର୍ଯ୍ୟନ୍ତ ପାଠ୍ୟକ୍ରମ ମାଧ୍ୟମରେ ଶିକ୍ଷାଦାନ ନିମନ୍ତେ 'ଉତ୍କଳ ସଙ୍ଗୀତ ସମାଜ' ପ୍ରତିଷ୍ଠା କଲେ । ଏହି ଅନୁଷ୍ଠାନ ପକ୍ଷରୁ ୧୯୩୪ ମସିହା ଠାରୁ ନିଖିଳ ଉତ୍କଳ ଓଡ଼ିଶୀ ଗୀତ, ନୃତ୍ୟ ସମ୍ମିଳନୀ ଓ ପ୍ରତିଯୋଗିତା ହୋଇ ଆସୁଅଛି । ସେହି ସମୟ ମଧ୍ୟରେ ନିମାଇଁ ହରିଚନ୍ଦନ, ସିଂହାରି ଶ୍ୟାମସୁନ୍ଦର କର, ଶ୍ୟାମସୁନ୍ଦର ଧୀର, ଉପେନ୍ଦ୍ର ତ୍ରିପାଠୀ ପ୍ରମୁଖ ସ୍ୱନାମଧନ୍ୟ ସଙ୍ଗୀତଜ୍ଞମାନେ ଓଡ଼ିଶୀ ଗୀତର ପ୍ରସାର/ପ୍ରଚାର ତଥା ଶାସ୍ତ୍ରୀୟ ପଦ୍ଧତିରେ ଶିକ୍ଷା ଦାନ ପାଇଁ ଉତ୍କଳ ସଙ୍ଗୀତ ସମାଜରେ ଗୋଟିଏ ପାଠ୍ୟକ୍ରମ ଅଧ୍ୟକ୍ଷ ଗୋକୁଳ ଶ୍ରୀଚନ୍ଦନଙ୍କ ସକ୍ରିୟ ସହାୟ ଓ ଉପଦେଶ କ୍ରମେ ପ୍ରଣୟନ କରିଥିଲେ ।

ତତ୍କାଳୀନ ପବ୍ଲିସିଟି ଅଫିସର ବ୍ରଜସୁନ୍ଦର ଦାସ, ସିଂହାରି ଶ୍ୟାମସୁନ୍ଦର କର, ନିମାଇଁ ହରିଚନ୍ଦନ ଓ ବାଳକୃଷ୍ଣ ଦାସଙ୍କ ଓଡ଼ିଶୀ ଗୀତର ପ୍ରଚାର ଓ ପ୍ରସାର ପାଇଁ ଆର୍ଥିକ ସାହାଯ୍ୟ ପ୍ରଦାନ କରିଥିଲେ ।

ନିମାଇଁ ବାବୁଙ୍କ କଣ୍ଠର ମିଷ୍ଟତାରେ ଅତ୍ୟନ୍ତ ପ୍ରୀତ ହୋଇ କଲିକତା ବେତାର କେନ୍ଦ୍ର ଓଡ଼ିଆ ଗୀତ ଗାଇବାକୁ ତାଙ୍କୁ ଆମନ୍ତ୍ରଣ କରିଥିଲା ଓ ସେହି ସମୟରୁ କଲିକତା ବେତାର କେନ୍ଦ୍ରରୁ ଏକଘଣ୍ଟା କରି ଓଡ଼ିଆ କାର୍ଯ୍ୟକ୍ରମ ପ୍ରଚାର କରାଯାଉଥିଲା ।

ହିଜ୍ ମାଷ୍ଟରସ୍ ଭଏସ୍ ରେକର୍ଡ଼ିଂ କମ୍ପାନୀ ପୂର୍ବେ ସ୍ୱତଃ ପ୍ରବୃତ୍ତ ହୋଇ ନିମାଇଁ ବାବୁଙ୍କର ବହୁ ଓଡ଼ିଶୀ ଓ ଭଜନ ରେକର୍ଡ଼ିଂ କରାଇଲେ ଓ ନିମାଇଁ ବାବୁଙ୍କର ଏହି ଓଡ଼ିଶୀ ଓ ଭଜନ ରେକର୍ଡ଼ମାନ ଓଡ଼ିଶାରେ ଖୁବ୍ ଚହଳ ପକାଇଲା । ଆଜିର ମଧ୍ୟ ନିମାଇଁ ବାବୁଙ୍କ ଏହି ଓଡ଼ିଶୀ ଭଜନ ରେକର୍ଡ଼ ବହୁଳ ଭାବରେ ବିକ୍ରୀ ହେବାକୁ ଲାଗିଲା ।

ନିମାଇଁ ବାବୁଙ୍କର ସବୁଠାରୁ ଗୋଟିଏ ବଡ଼ ଗୁଣ ଯେ, ତାଙ୍କର ସମସ୍ତ ଓଡ଼ିଶୀ/ଭଜନ ଗୀତଗୁଡ଼ିକ ମୁଖସ୍ଥ ଥିଲା । ସେ ଗୀତ ବୋଲିଲା ବେଳେ ଖାତା ଦେଖି ବୋଲୁ ନ ଥିଲେ । ସେ ଦୈନିକ ପାଞ୍ଚ/ଛ' ଘଣ୍ଟା ଧରି କଣ୍ଠ ସାଧନା କରୁଥିଲେ ।

ଉତ୍କଳ ସଙ୍ଗୀତ ସମାଜ ଅନୁଷ୍ଠାନ ପ୍ରତି ତାଙ୍କର ଦାନ ଅସୀମ । ଅନୁଷ୍ଠାନର ଛାତ୍ରଛାତ୍ରୀମାନଙ୍କୁ ସଙ୍ଗୀତ ଶିକ୍ଷାଦାନରେ ଏବଂ ଅନୁଷ୍ଠାନ ପକ୍ଷରୁ ଅନୁଷ୍ଠିତ ନିଖିଳ ଉତ୍କଳ ଓଡ଼ିଶୀ ଗୀତ ସମ୍ମିଳନୀ ଓ ପ୍ରତିଯୋଗିତାରେ ସେ ସକ୍ରିୟ ସାହାଯ୍ୟ କରୁଥିଲେ । ଏପରିକି ଅଂଠଗଡ଼ରେ ଥାଇ ମଧ୍ୟ ସେ ଅନୁଷ୍ଠାନର ନିମନ୍ତ୍ରଣ ରକ୍ଷା କରି, ଗୀତ ବୋଲୁଥିଲେ ଓ ଅନୁଷ୍ଠାନର ଉତ୍ତରୋତ୍ତର ଉନ୍ନତି ପାଇଁ ଚିନ୍ତା କରୁଥିଲେ ।

ଓଡ଼ିଶା ସରକାରଙ୍କ ସାଂସ୍କୃତିକ ବିଭାଗରୁ ସେ ସର୍ବ-ପ୍ରଥମେ ସଙ୍ଗୀତଜ୍ଞ କଳାକାର ପେନ୍‌ସନ୍ ପାଇଥିଲେ । ୧୯୫[illegible] ମସିହାରେ ଉତ୍କଳ ନୃତ୍ୟ ସଙ୍ଗୀତ ଓ ନାଟ୍ୟ କଳା ପରିଷଦ (ବର୍ତ୍ତମାନର ଓଡ଼ିଶୀ ସଙ୍ଗୀତ ନାଟକ ଏକାଡ଼େମୀ ସାଧାରଣ ପରିଷଦର ସଭ୍ୟ ଥିଲେ । ତାଙ୍କର ନିଷ୍ଠା ଓ ସାଧନା ଆମକୁ ପଦେ ପଦେ ପ୍ରେରଣା ପୁଷ୍ଟ କରୁ ।

ସଂପାଦକ, ଉତ୍କଳ ସଙ୍ଗୀତ ସମାଜ
ତେଲେଙ୍ଗା ବଜାର, କଟକ-୯

# ମୋ ଦୃଷ୍ଟିରେ ନିମାଇଁ ବାବୁ

## ଜଷ୍ଟିସ୍ ନବକୁମାର ଦାସ

ଓଡ଼ିଶାର ନିଜସ୍ୱ ସଙ୍ଗୀତ ଓଡ଼ିଶୀ, ଛାନ୍ଦ, ଚଂପୂ ଓ ପଲ୍ଲୀଗୀତ ଲୋକ ସମାଜରେ ପ୍ରସାର ଓ ପ୍ରଚାର କରାଇବାରେ ନିମାଇଁ ବାବୁ ଅଗ୍ରଣୀ ଥିଲେ । ଓଡ଼ିଶାର ବିଶିଷ୍ଟ କବି-ମାନଙ୍କର ଲେଖାକୁ ସଂଗୀତ ମାଧ୍ୟମରେ ଲୋକପ୍ରିୟ କରି-ବାରେ ତାଙ୍କର ଅବଦାନ ଅପୂରଣୀୟ ।

ମୋର ଛାତ୍ର ଜୀବନର ସମୟ । ସେତେବେଳେ ନିମାଇଁ ବାବୁ ସଙ୍ଗୀତଜ୍ଞ ହିସାବରେ ସୁନାମ ଅର୍ଜନ କରିଲେଣି । ରେଭେନ୍ସା କଲେଜର ସଂସ୍କୃତ ଅଧ୍ୟାପକ ଲକ୍ଷ୍ମୀକାନ୍ତ ରଥ ମିଶ୍ର ଓଡ଼ିଶାର ନିଜସ୍ୱ ସଙ୍ଗୀତର ପ୍ରଚାର ଓ ପ୍ରସାର ପାଇଁ ସେ 'ଉତ୍କଳ ସଙ୍ଗୀତ ସମାଜ' ଆରମ୍ଭ କରି ଥାଆନ୍ତି । ତାଙ୍କର ସହଯୋଗୀ ଥିଲେ ବ୍ରଜସୁନ୍ଦର ଦାସ, ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି ଓ ଉତ୍କଳ ସାହିତ୍ୟ ସମାଜର ସଂପାଦକ ଲକ୍ଷ୍ମୀନାରାୟଣ ସାହୁ । 'ଉତ୍କଳ ସାହିତ୍ୟ ସମାଜ'ର ଗୃହ ଶ୍ରୀରାମଚନ୍ଦ୍ର ଭବନରେ 'ଉତ୍କଳ ସଙ୍ଗୀତ ସମାଜ' ସ୍ଥାପିତ ହୋଇଥାଏ । ନିମାଇଁ ବାବୁ ସେତେବେଳେ ଏହି ଅନୁ-ଷ୍ଠାନକୁ ଆଗେଇ ନେବାରେ ଓ ଏହାର ଉନ୍ନତି ପାଇଁ ବହୁତ ଚେଷ୍ଟା କରିଛନ୍ତି । ଏପରିକି ନିଜେ ଗୀତ ଗାଇ, ଚାନ୍ଦା ଆଦାୟ କରି ଉତ୍କଳ ସଙ୍ଗୀତ ସମାଜ'କୁ ସାହାଯ୍ୟ କରୁଥାନ୍ତି । ସେତେବେଳେ ନିମାଇଁ ବାବୁଙ୍କ ଗୀତ ଏତେ ଲୋକପ୍ରିୟ ହୋଇଥାଏ ଯେ, ଯେଉଁଠି ନିମାଇଁ ବାବୁ ଗାଇବେ ବୋଲି ଜଣାଗଲା, ସେଠାକୁ ଲୋକେ ସ୍ୱତଃ ଆକୃଷ୍ଟ ହୋଇ ଯାଆନ୍ତି । ଏହାର କାରଣ ହେଲା ନିମାଇଁ ବାବୁଙ୍କ ବଳିଷ୍ଠ ଓ ଲଳିତ କଣ୍ଠର ସ୍ୱର । ଶେଷରେ ତାଙ୍କର ଗୀତ ଏତେ ଲୋକପ୍ରିୟ ହେଲା ଯେ, କଲିକତା ଗ୍ରାମଫୋନ୍ କଂପାନୀ ତାହା ରେକର୍ଡ କରିବାକୁ ଆରମ୍ଭ କଲେ । ପ୍ରଥମେ 'ହାତଲକୁ ଆଲିଙ୍ଗନ' ଗୀତ ରେକର୍ଡ ହେଲା । କ୍ରମେ କ୍ରମେ ତାଙ୍କର ଅନ୍ୟାନ୍ୟ ଗୀତଗୁଡ଼ିକ ରେକର୍ଡ ହେବା ସଙ୍ଗେ ସଙ୍ଗେ ତାଙ୍କ ରେକର୍ଡର ଚାହିଦା ମଧ୍ୟ ବଢ଼ିବାରେ ଲାଗିଲା ।

ବିଶେଷ କରି ନିମାଇଁ ବାବୁ ଓଡ଼ିଶାର ମୌଳିକ ସଙ୍ଗୀତ କଳା କ୍ଷେତ୍ରରେ ଯେଉଁସବୁ ଗୀତ ଓ ରାଗମାନ ଅଛି, ସେ ସବୁକୁ ନିଜେ ବାରବାର ଗାଇ/ରେକର୍ଡ କରାଇ ଲୋକପ୍ରିୟ କରାଇଥିଲେ ଓ ସେଥିପ୍ରତି ମଧ୍ୟ ଲୋକଙ୍କ ଆଗ୍ରହ ବଢ଼ାଇଥିଲେ । ତାଙ୍କର ସବୁଠାରୁ ବଡ଼ ବିଶେଷତ୍ୱ ହେଲା—ତାଙ୍କୁ ଯିଏ କେହି କେବେ ଗୀତ ଗାଇବାକୁ ଅନୁରୋଧ କରେ, ସେ ବିନା ଦ୍ୱିଧାରେ ଗୀତ ଗାଇବା ଆରମ୍ଭ କରି ଦିଅନ୍ତି । କୌଣସି ବାଦ୍ୟ ଯନ୍ତ୍ର ଦରକାର ନାହିଁ, ଲାଉଡ୍ ସ୍ପିକର ଦରକାର ନାହିଁ । ଏକାବେଳକେ ସେ ୧୦/୧୨ଟି ଗୀତ ବୋଲି ଦିଅନ୍ତି । ଲୋକେ ଏତେ ଆକୃଷ୍ଟ ହୁଅନ୍ତି ଯେ—'ଆଉ ବୋଲନ୍ତୁ, ଆଉ ବୋଲନ୍ତୁ, ବୋଲି ଫରମାଇସ କରନ୍ତି । ଗାଇବାରେ ତାଙ୍କର ଆନନ୍ଦ । କେବଳ ଗୀତ ଗାଇବା ଲାଗି ସେ ଯେପରି ସତେ ଜନ୍ମ ହୋଇଛନ୍ତି ।

ପ୍ରକୃତରେ ସେ ଜଣେ କଳାକାର । ତାଙ୍କର ପରିଧାନ ପରିପାଟୀ, ଗୋରାତକା ବିନ୍ଦୁ, ଗୋଲ୍ ଗୋଲ୍ଡ଼ ଚଷମା, ବାସନା ପାନଖିଲ, ସୁନା ବନ୍ଧା ଦାନ୍ତ ଆଉ ସର୍ବଦା ହସ ହସ ବଦନ ଦେଖିଲେ ଜଣେ ନିଶ୍ଚୟ ଜାଣିବ ଯେ ଇଏ ହେଲେ ପ୍ରକୃତ କଳାକାର । ଓଡ଼ିଆ ଭାଷାରେ ଗୋଟିଏ ଶବ୍ଦ ଅଛି 'ସଉକ' । ଏହି ଶବ୍ଦଟି ବଡ ମଧୁର । ଅନ୍ୟ କୌଣସି

ଜୀବନରେ ଏଇ ଶବ୍ଦ ଦେଖାଯାଏ ନାହିଁ । ନିମାଇଁ ବାବୁଙ୍କ ମୁହଁରେ ଏଇ 'ସମ୍ବଳ' ବିଦ୍ୟମାନ ଥିବାର ଦେଖାଯାଏ ।

ଭଗବାନଙ୍କ ଠାରେ ତାଙ୍କର ଅଚଳା ଭକ୍ତି । ତେଣୁ ସେ ଶନ୍ଧ୍ୟା ଦିବର ଗୀତ ବୋଲୁ ନ ଥିଲେ କି ଶନ୍ଧ୍ୟା ଦିବର ଲୋକଠାରେ ଯୋଗ ଦେଉ ନ ଥିଲେ । ତାଙ୍କର ସବୁ ଗୀତରେ ଭଗବତ୍-ଭାବନା । ସେଇ ଭଗବତ୍ ବିଶ୍ୱାସ ତାଙ୍କୁ ବଡ କରାଇଛି ।

ଦିନକର ଘଟଣା । ୧୯୫୬ ମସିହା । ମୋର ଦେହ ଅସୁସ୍ଥ ଥାଏ । ନିମାଇଁ ବାବୁ କିପରି ଖବର ପାଇଲେ । ହଠାତ୍ ଦିନେ ଖରାବେଳେ ଆସି ପହଞ୍ଚିଲେ । ପ୍ରାୟ ଏକଘଣ୍ଟା କାଳ ମୋ ବିଛଣା ପାଖରେ ବସି ଭଗବାନଙ୍କ ଭଜନ ଓ ଜଣାଣ ଗାଇଲେ । ତା'ପରେ ହସି ହସି କହିଲେ—"ଏଥର ଆରୋଗ୍ୟ ଲାଭ କରିବ ।" ଆଶ୍ଚର୍ଯ୍ୟ କଥା । ତା'ପରେ ଦିନେ ମୁଁ ଆରୋଗ୍ୟଲାଭ କରିବାକୁ ଲାଗିଲି । ସେତେବେଳେ ମୁଁ ଉପଲବ୍ଧି କଲି, ଭାଗବତ ବଚନ—

"ମୁଁ ତାଙ୍କ ପୁଣ୍ୟଇବ ଆଣ,
ସେ ମୋର ଏକାନ୍ତ ବିଶ୍ୱାସ ।।"

ପ୍ରକୃତରେ ନିମାଇଁ ବାବୁଙ୍କର ଭକ୍ତି ଓ ବିଶ୍ୱାସ ହେତୁ ତାଙ୍କ ମିନତି ଭଗବାନ ଶୁଣିଲେ । ଜଗନ୍ନାଥଙ୍କ ଠାରେ ତାଙ୍କର ଅଟଳ ବିଶ୍ୱାସ ଥିଲା । ତେଣୁ ତାଂକର ଶେଷ ଜୀବନ ସେ ପୁରୀରେ ଦୈନିକ ଜଗନ୍ନାଥ ଦର୍ଶନ କରି ଅତିବାହିତ କଲେ । ଅନେକବାର ମୁଁ ସକାଳୁ ଜଗନ୍ନାଥ ଦର୍ଶନ କରିବାକୁ ଗଲେ ତାଂକ ସଙ୍ଗେ ବଡ଼ ଦେଉଳରେ ଭେଟ ହୁଏ । ସେ ଡ଼ାକି ନେଇ ଯାଆନ୍ତି ତାଙ୍କ ଆତ୍ମ ନିବେଦନ ଶୁଣାଇବାକୁ । ଅନର୍ଗଳ ସେ ଗାଇ ଯାଆନ୍ତି । ସେତେବେଳର ପରିବେଶ ଯିଏ ଅଙ୍ଗେ ଲିଭେଇଛି, ସିଏ କେବଳ ବୁଝି ପାରିବ ତନ୍ମୟ ହୋଇ ଏକାବେଳକେ ଜଣେ ଭକ୍ତ କିପରି ଅନର୍ଗଳ ହୃଦୟର ନିବେଦନ କରିଥାଏ । ଏହା ହିଁ ଏକ ଦୃଶ୍ୟ । ଅବଶ୍ୟ ସେ ଜଗନ୍ନାଥଂକର ଗ୍ରାମର ସେବା ପାଇଥିଲେ । କିନ୍ତୁ ପ୍ରକୃତରେ ସେ ନିଜକୁ ଜଗନ୍ନାଥଂକ ପାଦରେ ଅର୍ପଣ କରି ଦେଇଥିଲେ । ଜଗନ୍ନାଥ ମଧ୍ୟ ତାଂକ ଶେଷ ଅଭିଳାଷ ପୂରଣ କଲେ । ସେ ଜନ୍ମ ହୋଇଥିଲେ 'ହରି'ଙ୍କ ସେବା ଲାଗି, ଅର୍ପିତ 'ଚନ୍ଦନ' ହୋଇ—ପ୍ରକୃତରେ ହରିଚନ୍ଦନ ।

●

ଉପରତେଲେଙ୍ଗା ବଜାର,
କଟକ-୯

# ସେ ଏକ ଅଭୁଲା ସ୍ମୃତି

ସେକ୍ ମତଲୁବ ଅଲ୍ଲି

ସେତେବେଳେ ମାଇକ୍‌ର ପ୍ରଚଳନ ନ ଥିଲା । ଟେପ୍ ରେକର୍ଡ଼ ନ ଥିଲା । କଟକ ରେଡ଼ିଓ ଷ୍ଟେସନ ଥିଲା, ତେବେ ଗାଁ ଗହଳରେ ରେଡ଼ିଓର ପ୍ରଚଳନ ମଧ୍ୟ ହୋଇ ନ ଥିଲା । କେବଳ ଗ୍ରାମଫୋନ୍ (କଳଗାଇଣା) ବଡ଼ଲୋକ, ଜମିଦାର-ମାନଙ୍କର ବୈଠକ ଖାନାରେ ଶୁଣିବାକୁ ମିଳୁଥିଲା । ତାହା ସତ୍ତ୍ୱେ ଓଡ଼ିଶାର ପୁରପଲ୍ଲୀରେ ଗୋଟିଏ ନାମ ଅତି ପରିଚିତ ଥିଲା—"ନିମାଇଁ ହରିଚନ୍ଦନ," ସଙ୍ଗୀତ ଗାନ ପାଇଁ ତାଙ୍କ ଯାଦୁକାରୀ ମଧୁର କଣ୍ଠ ପାଇଁ । ସେ ସମସ୍ତଙ୍କର ପ୍ରିୟ ଥିଲେ । ଓଡ଼ିଶା ଓ ଓଡ଼ିଶା ବାହାରେ କଲିକତାରେ ମଧ୍ୟ ତାଙ୍କର ସୁନାମ ଥିଲା—ସମସ୍ତଙ୍କର ପରିଚିତ ପ୍ରିୟ ନାମ ବାଣୀକଣ୍ଠ ନିମାଇଁ ଚରଣ ହରିଚନ୍ଦନ ।

ତାଙ୍କ କଣ୍ଠରେ ଥିଲା ମାଇକ୍—ହେଲେ ସ୍ୱର ଥିଲା ଅପୂର୍ବ ଓ ଅନବଦ୍ୟ । ତାଙ୍କ କଣ୍ଠରୁ ଓଡ଼ିଶୀ, ଛାନ୍ଦ, ଷୋଳପଦା, ଚଂପୁ, ଭଜନ ଓ ଜଗନ୍ନାଥଙ୍କ ଜଣାଣ ଯିଏ ଶୁଣିଛି, ସେ ମୁଗ୍ଧ ହୋଇଛି । ସେ କଣ୍ଠର ଅଲୌକିକ ମାଧୁର୍ଯ୍ୟ ଏବଂ ସଙ୍ଗୀତର ଅପୂର୍ବ ମୂର୍ଚ୍ଛନା ଯୁଗ ଯୁଗ ଧରି ତା'ର ସ୍ମୃତିରେ ଅପାଶୋରା ହୋଇ ରହିଛି ।

ସେ ଅନୁକରଣ ପ୍ରିୟ ଗାୟକ ନ ଥିଲେ—ସେ ଅନୁଭବ ସାଧକ ଶିଳ୍ପୀ ଥିଲେ । ସେ କଳା ପ୍ରେମୀ ରସ ପିପାସୁ ରସିକ ଥିଲେ—ବାକ୍ ଦେବୀଙ୍କର ବରପୁତ୍ର ସ୍ୱର-ସାଧକ ଥିଲେ । ପ୍ରଭୁ ଜଗନ୍ନାଥଙ୍କର ପରମ ଭକ୍ତ ତଥା ଓଡ଼ିଶାର ପ୍ରଖ୍ୟାତ ସଙ୍ଗୀତ ଶିଳ୍ପୀ ଥିଲେ ।

କାହାଣୀ ବା କିମ୍ବଦନ୍ତୀ ହୋଇପାରେ । ଭାରତରେ କଣ୍ଠଶିଳ୍ପୀ ତାନ୍‌ସେନ୍ ମେଘ-ମହ୍ଲାର ଗାନ କଲେ ବର୍ଷା ହେଉଥିଲା, ଦୀପକ ରାଗ ଗାନ କଲେ ପ୍ରଦୀପ ପ୍ରଜ୍ୱଳିତ ହେଉଥିଲା । ଆଜି ମୁଁ ଦେଖିଛି ବାଣୀକଣ୍ଠ ନିମାଇଁ ହରିଚନ୍ଦନ ସଙ୍ଗୀତ ଗାନ କଲେ ପରିବେଶ ଜୀବନ୍ତ ଓ ସରସ ହୋଇ ଉଠୁଥିଲା । ଶ୍ରୋତାଙ୍କ ଦେହରେ/ମନରେ ଅପାର ପୁଳକ ସୃଷ୍ଟି ହେଉଥିଲା । ତାଙ୍କ କଣ୍ଠରୁ ଜଣାଣ/ଭଜନ ଶୁଣିଲେ ଭକ୍ତି ରସରେ ମନ ଆପ୍ଳୁତ ହେଉଥିଲା । ମାନସ ସରୋବରରେ କଲ୍ଲୋଳ ସୃଷ୍ଟି ହେଉଥିଲା ।

ସମଗ୍ର ଜୀବନ ସେ ସଙ୍ଗୀତ ସାଧନାରେ ବ୍ରତୀ ଥିଲେ । ଜୀବନ ସଂଧ୍ୟାରେ ସେ ଶ୍ରୀକ୍ଷେତ୍ରରେ ଶ୍ରୀ ଜଗନ୍ନାଥଙ୍କ ପାଦ-ପଦ୍ମରେ ସମସ୍ତ କଟାଇଥିଲେ । ପୁଣି ପ୍ରତିଦିନ ମହାପ୍ରଭୁ ଜଗନ୍ନାଥଙ୍କ ଠାରେ ତାଙ୍କର ଶ୍ରେଷ୍ଠ ଅର୍ଘ୍ୟ ଥିଲା ସଙ୍ଗୀତାଞ୍ଜଳି ।

ତାଙ୍କର ସଙ୍ଗୀତ ମୁଁ ଶୁଣିଥିଲି ୧୯୫୪/୫୫ ରୁ । ହେଲେ ତାଙ୍କ ସହିତ ମୋର ବ୍ୟକ୍ତିଗତ ସଂପର୍କ ନିବିଡ଼ରୁ ନିବିଡ଼ତର ହୋଇ ଉଠିଥିଲା ୧୯୭୪ ରୁ ୧୯୮୩ ପର୍ଯ୍ୟନ୍ତ । ମହାପ୍ରଭୁଙ୍କର ବାହୁଡ଼ା ଯାତ୍ରାରେ ସେ ବାହୁଡ଼ି ଗଲେ । ସେ ଦିନ ଥିଲା ଜୁଲାଇ ୨୦/୧୯୮୩ ।

ଥରେ ଯିଏ ତାଙ୍କର ସଂଗୀତ ଶୁଣିଛି, ତାଙ୍କୁ ଭେଟିଛି, ଜୀବନରେ କେବେ ହେଲେ ସେ ତାଙ୍କୁ ଭୁଲି ପାରିବ ନାହିଁ । ସେ ଏକ ଅଭୁଲା ସ୍ମୃତି ହୋଇ ରହିଛନ୍ତି ଏବଂ ରହିବେ ଚିରଦିନ ପାଇଁ ।

●

ଭୁବନେଶ୍ୱର

# କେନ୍ଦ୍ରାପଡ଼ା ନରେନ୍ଦ୍ର ପରିବାରର ବଂଶାବଳୀ

- କୁରୁପ କାଣା
  - ଗୋଉ କାଣା
    - ଗଜ କାଣା
      - ଗୋବିନ୍ଦ କାଣା
        - ସଦାଶିବ କାଣା
          - ଦଧିଶ୍ୟାମ (କେନା) ନରେନ୍ଦ୍ର
            - ଜଗନ୍ନାଥ
              - ବଳରାମ ଭ୍ରମରବର
                - ନିତ୍ୟାନନ୍ଦ
                - ଗୌରାଙ୍ଗ
              - ଶ୍ୟାମସୁନ୍ଦର ନରେନ୍ଦ୍ର
                - କଚଟା
              - ବ୍ରଜସୁନ୍ଦର ମର୍ଦ୍ଦରାଜ
              - ବୃନ୍ଦାବନ ଚନ୍ଦ୍ର ହରିଚନ୍ଦନ
                - ମୌଳି
                  - ହରିହର
                  - ଦାମୋଦର
                  - ଚକ୍ରଧର
                - ମଦନ
              - ଗୋକୁଳ ଚନ୍ଦ୍ର ଶ୍ରୀଚନ୍ଦନ
                - ବଂଶୀଧର
                - ବଳବହାଦୁର
                - ବିନୋଦ ବହାଦୁର
                - ବସନ୍ତ ବହାଦୁର
                - ବାଙ୍କବହାଦୁର
          - କମଳା ଦେଈ
            ସ୍ୱା- ଅଭିମନ୍ୟୁ ସମନ୍ତସିଂହାର
          - ଗୌରଶ୍ୟାମ
            - ରାମଚନ୍ଦ୍ର
              - ଲକ୍ଷ୍ମୀନାରାୟଣ ଲାଢେବ
                - ସ୍ୱର୍ଣ୍ଣମାଳୀ
                - ରାଧାମାଧବ ପୋଷ୍ୟପୁତ୍ର (ମଦନ)

[ଏମାନେ ଯୋଧପୁର ରାଜବଂଶଜ ଥିଲେ । ଏମାନଙ୍କ ଠାରୁ ୧୨ ଟି ବଂଶ ଓଡ଼ିଶାକୁ ଆସିଥିଲେ । ସେମାନଙ୍କ ମଧ୍ୟରୁ ଏମାନେ ପ୍ରଥମେ ଆସି ଯାଜପୁର ଅଧୀନ ପାଣ୍ଡିକୋଇଲ ଗ୍ରାମରେ ବସବାସ କରୁଥିଲେ । କାଳକ୍ରମେ ସେମାନେ କେନ୍ଦ୍ରାପଡ଼ାରେ ଆସି ସେଠାରେ ଶ୍ରୀ ଗୋବିନ୍ଦ ଜୀଉ ମନ୍ଦିର ପ୍ରତିଷ୍ଠା କରି ବସବାସ କଲେ ।]

# ବାଣୀକଣ୍ଠ ନିମାଇଁ ଚରଣ ହରିଚନ୍ଦନଙ୍କ ବଂଶାବଳୀ

| | | | | | |
|---|---|---|---|---|---|
| ଭୂପେନ୍ଦ୍ର କିଶୋର | ସୁବର୍ଣ୍ଣମଞ୍ଜରୀ | ବିଷ୍ଣୁପ୍ରିୟା | ସୁରେନ୍ଦ୍ର କିଶୋର | ଶୈଳେନ୍ଦ୍ର କିଶୋର | ବିଜନବାଳା |
| ପୁତ୍ରବଧୂ | ଜାମାତା | ଜାମାତା | ପୁତ୍ରବଧୂ | ପୁତ୍ରବଧୂ | ଜାମାତା |
| ଜ୍ୟୋତ୍ସ୍ନାମୟୀ | ମୁରଲୀଧର ମଙ୍ଗରାଜ | ପ୍ରତାପ ସିଂହ | ପ୍ରେମଲତା | କନକମଞ୍ଜରୀ | ଅକ୍ଷୟଜୀବନ ସାମନ୍ତରାୟ |
| ୧-ଗୌର କିଶୋର | ୧-ନିରୁପମା | ଅମର | ୧-ପ୍ରଣୟ କିଶୋର | ୧-ରତ୍ନମଞ୍ଜରୀ | ଗୀତା |
| ୨-ବିଜୟ କିଶୋର | ୨-ଅନୁପମା | ପୁଷ୍ପଲତା | ୨-ମଳୟ କିଶୋର | ୨-ହେମମଞ୍ଜରୀ | ସ୍ମିତା |
| ୩-ଅଜୟ କିଶୋର | ୩-ବିଶ୍ୱଜିତ୍ | ସମର | ୩-ବସନ୍ତ କିଶୋର | ୩-ସ୍ୱର୍ଣ୍ଣମଞ୍ଜରୀ | ମମତା |
| ୪-ଜ୍ୟୋତିର୍ମୟୀ | ୪-ସୁରଜିତ | ସାଗରିକା | | ୪-ରାମକିଶୋର | ଅନୁପ |
| ୫-ବିଦ୍ୟୁତ୍‌ମୟୀ | ୫-ମନୋରମା | ଭାସ୍କର | | ୫-ଶ୍ୟାମକିଶୋର | ସରିତା |
| ୬-ସ୍ନେହମୟୀ | ୬-ରଣଜିତ୍ | | | ୬-ଶାନ୍ତି ମଞ୍ଜରୀ | ଅତୁଲ୍ୟ |

# ବିୟୋଗ ବାର୍ତ୍ତା

୨୧।୭।୮୩ ତାରିଖରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଏକ ଶୋକବାର୍ତ୍ତାରେ କହିଛନ୍ତି ଯେ—ଓଡ଼ିଶାର ବୟୋଜ୍ୟେଷ୍ଠ ସ୍ୱନାମଧନ୍ୟ ସଙ୍ଗୀତ ବିଶାରଦ ବାଣୀକଣ୍ଠ ନିମାଇଁ ଚରଣ ହରିଚନ୍ଦନଙ୍କ ବିୟୋଗ ସମ୍ବାଦରେ ମୁଁ ଗଭୀର ଭାବରେ ବ୍ୟଥିତ । ସ୍ୱର୍ଗତ ହରିଚନ୍ଦନ ଓଡ଼ିଆ ଜାତିର ନିଜସ୍ୱ ସଙ୍ଗୀତ କଳାର ଅପ୍ରତିଦ୍ୱନ୍ଦ୍ୱୀ ସାଧକ ରୂପେ ନିଜକୁ ଉତ୍ସର୍ଗ କରିଥିଲେ । ଓଡ଼ିଶୀ, ଛାନ୍ଦ, ଚମ୍ପୂ ଓ ଲୋକ-ଗୀତର ବିକାଶ ସଙ୍ଗେ ସଙ୍ଗେ ଏ ସବୁକୁ ଓଡ଼ିଶା ତଥା ଓଡ଼ିଶା ବାହାରେ ପ୍ରଭୂତ ଲୋକପ୍ରିୟ କରାଇବାରେ ସ୍ୱର୍ଗତ ହରିଚନ୍ଦନଙ୍କ ଅବଦାନ ଅବିସ୍ମରଣୀୟ । ତାଙ୍କର ଜଗନ୍ନାଥ ଜଣାଣ ଓଡ଼ିଆ ଜାତି ପକ୍ଷରେ ଏକ ଚିରନ୍ତନ ପ୍ରେରଣାର ଉତ୍ସ ରୂପେ ଉଜ୍ଜୀବିତ ରହିବ । ଶ୍ରୀ ଜଗନ୍ନାଥଙ୍କର ପବିତ୍ର ବାହୁଡ଼ା ଯାତ୍ରାର ପ୍ରାତଃକାଳରେ ସ୍ୱର୍ଗତ ହରିଚନ୍ଦନ ଦେହତ୍ୟାଗ କରିବା ଏକ ଘୋର ତାତ୍ପର୍ଯ୍ୟର ବିଷୟ ।

ଏହି କୃତି ସାଧକଙ୍କର ବିୟୋଗ ଫଳରେ ଓଡ଼ିଆ ସଂଗୀତ ଜଗତର ଏକ ଅପୂରଣୀୟ କ୍ଷତି ଘଟିଲା । ମୁଁ ନିମାଇଁ ବାବୁଙ୍କର ଶୋକସନ୍ତପ୍ତ ପରିବାରବର୍ଗଙ୍କ ପ୍ରତି ଗଭୀର ସମବେଦନା ଜଣାଇବା ସଙ୍ଗେ ସଙ୍ଗେ ସ୍ୱର୍ଗତ ଆତ୍ମାର ସଦ୍‌ଗତି କାମନା କରୁଛି ।

\+ + +

୨୧।୭।୮୩ ତାରିଖରେ ରାଜ୍ୟ ଶିକ୍ଷାମନ୍ତ୍ରୀ ଶ୍ରୀ ଗଙ୍ଗାଧର ମହାପାତ୍ର ସ୍ୱର୍ଗତ ବାଣୀକଣ୍ଠ ନିମାଇଁ ଚରଣ ହରିଚନ୍ଦନଙ୍କ ବିୟୋଗରେ ଗଭୀର ଶୋକ ପ୍ରକାଶ କରି କହିଛନ୍ତି ଯେ—"ଓଡ଼ିଶା ଆଜି ଜଣେ କୃତି କଣ୍ଠ ସାଧକଙ୍କୁ ହରାଇଲା ।"

\+ + +

୨୨।୭।୮୩ ତାରିଖରେ ଓଡ଼ିଶାର କ୍ରୀଡ଼ା ଓ ସଂସ୍କୃତି ରାଷ୍ଟ୍ରମନ୍ତ୍ରୀ ଏକ ଶୋକବାର୍ତ୍ତାରେ କହିଛନ୍ତି ଯେ—ବାଣୀକଣ୍ଠ ଶ୍ରୀ ନିମାଇଁ ଚରଣ ହରିଚନ୍ଦନଙ୍କ ବିୟୋଗ ସମ୍ବାଦ ପାଇଁ ମୁଁ ଅତ୍ୟନ୍ତ ମର୍ମାହତ । ଶ୍ରୀ ହରିଚନ୍ଦନ ପ୍ରତିବର୍ଷ ରଥଯାତ୍ରା ସମୟରେ ସିଂହଦ୍ୱାର ଠାରେ ଭକ୍ତି ସଙ୍ଗୀତ ପରିବେଷଣ କରୁଥିଲେ । ଏ ବର୍ଷ ମଧ୍ୟ ଗୁଣ୍ଡିଚା ଦିନ ତାଙ୍କ ସହିତ ମୋର ସାକ୍ଷାତ ହୋଇଥିଲା । ଶ୍ରୀ ହରିଚନ୍ଦନ ସୁବିଖ୍ୟାତ କଣ୍ଠ ଶିଳ୍ପୀ ଭାବେ ଓଡ଼ିଶାର ପୁରପଲ୍ଲୀରେ ପରିଚିତ ଥିଲେ । ଭକ୍ତି ସଙ୍ଗୀତ ବିଶେଷ କରି ଜଗନ୍ନାଥଙ୍କ ଜଣାଣ ପ୍ରଭୃତି ଗାନ କରି ସେ ଜନସାଧାରଣଙ୍କୁ ମୁଗ୍ଧ କରୁଥିଲେ । ସେ ଜଗନ୍ନାଥଙ୍କର ଜଣେ ପରମ ଭକ୍ତ ଥିଲେ ଏବଂ ଜୀବନର ଶେଷ ପର୍ଯ୍ୟନ୍ତ ସେ ଭାଗବତ ଚିନ୍ତା ତଥା ଭଜନରେ ନିଜକୁ ନିୟୋଜିତ କରି ପାରିଥିଲେ । ସେ ଜଗନ୍ନାଥଙ୍କ ନବମୀ ଦର୍ଶନ କରିଥିଲେ ଓ ରାତ୍ରିର ଶେଷ ପ୍ରହରରେ ସେ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ । ଏହିପରି ଜଣେ ସେବକ ଏବଂ

ଜନପ୍ରିୟ ଗାୟକଙ୍କୁ ଆମେ ଆଜି ହରାଇଲୁ । କିନ୍ତୁ ତାଙ୍କର ସଙ୍ଗୀତ ସବୁଦିନ ପାଇଁ ଅମର ହୋଇ ରହିବ । ମୁଁ ତାଙ୍କ ଅମର ଆତ୍ମାର ସଦ୍‌ଗତି କାମନା କରିବା ସଙ୍ଗେ ସଙ୍ଗେ ତାଙ୍କର ଶୋକ ସନ୍ତପ୍ତ ପରିବାରବର୍ଗଙ୍କ ପ୍ରତି ଗଭୀର ସମବେଦନା ଜ୍ଞାପନ କରୁଛି ।

\+ \+ \+

ଲୋକସେବକ ମଣ୍ଡଳ ସଭାପତି ତଥା 'ସମାଜ' ସଂପାଦକ ଡ଼କ୍ଟର ରାଧାନାଥ ରଥ କହିଛନ୍ତି ଯେ—ସ୍ୱର୍ଗତ ବାଣୀକଣ୍ଠ ନିମାଇଁ ଚରଣ ହରିଚନ୍ଦନଙ୍କ ଭଳି କବି, ସାହିତ୍ୟିକ, ଗାୟକ ଏବଂ ପ୍ରଭୁଭକ୍ତ ଦେଶସେବୀ ଆମ ଦେଶରେ କମ୍ ଅଛନ୍ତି । ତାଙ୍କ ଭଳି ଓଡ଼ିଶାର କଣ୍ଠଶିଳ୍ପୀ ରୂପେ ବିଶେଷରେ ଭକ୍ତପ୍ରବର ଈଶ୍ୱର ବିଶ୍ୱାସୀ, ମଧୁର ଭାଷୀ, ସ୍ନେହୀ ବନ୍ଧୁ ଆଜି ଏ ଯୁଗରେ ମିଳିବା ସହଜ ନୁହେଁ । କଥା ଅଛି—"ପ୍ରାଣୀର ଭଲ ମନ୍ଦ ବାଣୀ, ମରଣ କାଳେ ତାହା ଜାଣି ।" ବାହୁଡ଼ା ପୂର୍ବଦିନ ପ୍ରଭୁ ଜଗନ୍ନାଥଙ୍କ ପାଖରେ ଗଦ୍‌ଗଦ୍ କଣ୍ଠରେ ପ୍ରଭୁଙ୍କ ଭଜନ ବୋଲିବା ଓ ଦର୍ଶନ ପାଇବା ପରେ ପରେ ସେଦିନ ରାତିରେ କିଦ୍ରାଭିଭୂତ ଅବସ୍ଥାରେ ସେ ଯେ ଚିରନିଦ୍ରା ଭଜିଲେ ଏବଂ ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସରଳ, ସଜ୍ଞାନ, ସଦ୍‌ଭାବନା ଏବଂ ସଦ୍‌ଭକ୍ତ ରୂପେ ସଂସାରର ଆତ୍ମୀୟ ସ୍ୱଜନ ଓ ବନ୍ଧୁମାନଙ୍କ ଠାରୁ ବିଦାୟ ନେଇ ଚାଲିଗଲେ; ଏହା ତାଙ୍କ ପକ୍ଷରେ ଯେତିକି ସୁଖମୟ ଆମ ଦେଶବାସୀ ଓ ବନ୍ଧୁମାନଙ୍କ ପକ୍ଷରେ ସେତିକି ଦୁଃଖମୟ । ତାଙ୍କର ସ୍ମୃତି ଓଡ଼ିଶା ଦେଶର ଇତିହାସରେ ଚିର ଜାଗ୍ରତ ହୋଇ ରହିବ । ତାଙ୍କ ଆତ୍ମୀୟ ସ୍ୱଜନଙ୍କ ନିକଟରେ ଆମେ ସମବେଦନା ଜ୍ଞାପନ କରୁଛୁ ।

—ସମାଜ ୩୦ । ୭ । ୮୩

\+ \+ \+

୨୧ । ୭ । ୮୩ ତାରିଖରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡ଼େମୀର ଉପାଧ୍ୟକ୍ଷ ଅଧ୍ୟାପକ ରାଜକିଶୋର ରାୟ ବାଣୀକଣ୍ଠ ନିମାଇଁ ଚରଣ ହରିଚନ୍ଦନଙ୍କ ତିରୋଧାନରେ ଶୋକ ପ୍ରକାଶ କରି କହିଛନ୍ତି ଯେ—"ବାଣୀକଣ୍ଠଙ୍କର ତିରୋଧାନରେ ଜାତୀୟ ଜୀବନରେ ଏକ ଭକ୍ତ ସଙ୍ଗୀତ ସାଧକ ଶ୍ରୀ ଜଗନ୍ନାଥ ଦେବଙ୍କ ଭକ୍ତ ବାଦ୍ୟ ସଙ୍ଗୀତମୟ ଆତ୍ମା ଚିରଦିନ ପାଇଁ ମ୍ଳାନ ପଡ଼ିଗଲା । ପୁଣ୍ୟାତ୍ମା ମାନେ ମୃତ୍ୟୁ ଦିବସକୁ ଏପରି ନିର୍ବାଚିତ କରିଥାନ୍ତି ଯେ ସେ ତିଥିଗୁଡ଼ିକ ପୁଣ୍ୟାତ୍ମା ହୋଇଥାଏ । ଏକାଦଶୀ ବାହୁଡ଼ା ଯାତ୍ରା ପ୍ରାତଃକାଳରେ ପୂଜା ଉପାସନା ବେଳେ ବାଣୀକଣ୍ଠ ମରଶରୀର ତ୍ୟାଗ କଲେ । ଓଡ଼ିଶୀ ସଙ୍ଗୀତ, ଜଗନ୍ନାଥ ଜଣାଣ ଭଜନର ଅସଂଖ୍ୟ ଗ୍ରାମଫୋନ୍ ରେକର୍ଡ଼ ପଲ୍ଲୀବାସୀ ଠାରୁ ସହରବାସୀ ଯାଏ ସମସ୍ତଙ୍କର ପ୍ରିୟ ସଙ୍ଗୀତ ହୋଇ ପାରିଛି । ଜୀବଦ୍ଦଶାରେ ସେ ଅମୃତତ୍ତ୍ୱ ପାଇଥିଲେ । ମୃତ୍ୟୁ ପରେ ତାହା ଶତଗୁଣିତ ହେଲା ।

ସେ ଉପାଧି, ପୁରସ୍କାର ବା ଜନ ସ୍ୱୀକୃତି ପାଇଁ ଲାଳାୟିତ ନ ଥିଲେ । ଏହି ସବୁ ତାଙ୍କ ପଛେ ପଛେ ରହିଥିଲା । ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ତାଙ୍କୁ ତାଙ୍କ କୃତି ପାଇଁ ସମ୍ମାନିତ [illegible]ଲା । ଭାରତ ବର୍ଷର ଏକ ପ୍ରମୁଖ ସଂଗୀତଜ୍ଞ ଭାବରେ ସେ ଚିର ଜାଜ୍ଜ୍ୱଲ୍ୟମାନ ରହିବେ । ତାଙ୍କର ସ୍ମୃତି ରକ୍ଷା ପାଇଁ ଚିନ୍ତିତ ବିଚାର କରାଯାଉ ।

\+ \+ \+

ନୂଆଦିଲ୍ଲୀସ୍ଥ ସର୍ବୋଚ୍ଚ-ନ୍ୟାୟାଳୟର ବିଚାରପତି ଶ୍ରୀ ରଙ୍ଗନାଥ ମିଶ୍ର ୨୨ । ୭ । ୮୩ ତାରିଖରେ ବାଣୀକଣ୍ଠଙ୍କ ପରିବାର ପ୍ରତି ଏକ ଶୋକବାର୍ତ୍ତାରେ କହିଛନ୍ତି ଯେ—ଜନ୍ମ ପରଠାରୁ ତ ମୃତ୍ୟୁ ପାଇଁ ଦଉଡ଼ ।

ତେବେ ଏ ଦୌଡ଼ରେ କେତେ ଜିତନ୍ତି ? ସ୍ୱର୍ଗତ ବାଣୀକଣ୍ଠ ଜଗନ୍ନାଥଙ୍କ ସେବକ । ହଜାର ହଜାର ଲୋକଙ୍କ କାନରେ ଭଜନର ଝଙ୍କାର ପହଞ୍ଚାଇଛନ୍ତି । ତାଙ୍କର ସ୍ୱର ଆକାଶବାଣୀ ଓ ଗ୍ରାମ୍‌ଫୋନ୍ ରେକର୍ଡ଼ରେ ବନ୍ଧା ହୋଇ ରହିଛି । ଅନେକ ବର୍ଷ ପାଇଁ ତାଙ୍କ ସ୍ମୃତି ଏ ଜାତିର ମାନସ ପଟଳରେ ଅଲିଭା ରହିବ । ଆପଣମାନଙ୍କ ଶୋକରେ ଏ ଜାତି ଜଡ଼ିତ । ଭଗବାନ ତାଙ୍କ ଆତ୍ମାର ସଦ୍‌ଗତି କରାଇବେ, ସନ୍ଦେହ ନାହିଁ । + + +

ଶ୍ରୀ ନରସିଂହ ସ୍ୱାଇଁ ୨୮ । ୭ । ୮୩ ତାରିଖ ଦିନ ଏକ ଶୋକବାର୍ତ୍ତାରେ କହିଛନ୍ତି ଯେ— ଓଡ଼ିଶାର ଖ୍ୟାତନାମା ସଙ୍ଗୀତଜ୍ଞ ବାଣୀକଣ୍ଠ ନିମାଇଁ ଚରଣଙ୍କ ବିୟୋଗରେ ମୁଁ ଅତ୍ୟନ୍ତ ମର୍ମାହତ । ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା, ସେ ଅମର ଆତ୍ମାର ସଦ୍‌ଗତି କରିବା ସଙ୍ଗେ ସଙ୍ଗେ ତାଙ୍କ ପରିବାର ବର୍ଗଙ୍କୁ ଏ ଦାରୁଣ ଦୁଃଖ ସହ୍ୟ କରିବାକୁ ଧୈର୍ଯ୍ୟ ଓ ସାହସ ପ୍ରଦାନ କରନ୍ତୁ । + + +

ଶ୍ରୀ ଗୋବିନ୍ଦ ଚନ୍ଦ୍ର ସେନାପତି ୨୬ । ୭ । ୮୩ ତାରିଖ ଦିନ ଏକ ଶୋକବାର୍ତ୍ତାରେ କହିଛନ୍ତି ଯେ—ବାଣୀକଣ୍ଠଙ୍କ ବିୟୋଗରେ ଯେଉଁ ଅପୂରଣୀୟ କ୍ଷତି ହେଲା, ତାହା ଧୈର୍ଯ୍ୟର ସହିତ ସହ୍ୟ କରିବାକୁ ଭଗବାନ ତାଙ୍କ ପରିବାର ବର୍ଗଙ୍କୁ ଧୈର୍ଯ୍ୟ ଓ ସାହସ ପ୍ରଦାନ କରନ୍ତୁ । ତାଙ୍କର ସେହି ମହାନ୍ ବିଦାୟୀ ଆତ୍ମା ଶାନ୍ତିରେ ଅବସ୍ଥାନ କରୁ । + + +

ଶ୍ରୀ ଏଚ୍. ଏନ୍. ମିଶ୍ର ୨୮ । ୭ । ୮୩ ତାରିଖ ଦିନ ଏକ ଶୋକବାର୍ତ୍ତାରେ କହିଛନ୍ତି ଯେ— ବାଣୀକଣ୍ଠଙ୍କ ବିୟୋଗ ଫଳରେ ଓଡ଼ିଶା ଏକ ଅତୁଳନୀୟ ପ୍ରତିଭାର ସଙ୍ଗୀତଜ୍ଞଙ୍କୁ ହରାଇଲା । ଆମ୍ଭମାନଙ୍କ ମଧ୍ୟରେ ଚିରଦିନ ପାଇଁ ତାଙ୍କ ସଙ୍ଗୀତର ମଧୁର ମୂର୍ଚ୍ଛନା, ତାଙ୍କ ସ୍ମୃତିକୁ ଜାଗରିତ କରି ରଖିବ ହିଁ ରଖିବ । ତାଙ୍କର ଏ ଦାରୁଣ ବିୟୋଗ ଫଳରେ ତାଙ୍କର ପରିବାର ବର୍ଗଙ୍କୁ ମୁଁ କେଉଁ ପ୍ରକାରେ ସାନ୍ତ୍ୱନା ଦେବି ସେ ପର୍ଯ୍ୟାପ୍ତ ଭାଷା ପାଉନାହିଁ । ବାଣୀକଣ୍ଠ ତାଙ୍କର ଜୀବନର ବହୁ ସମୟ ଧରି ଯେଉଁ ପରାତ୍ପର ପରମେଶ୍ୱରଙ୍କର ଗୁଣ ଗାନ କରିଗଲେ, ସେହି ପରମେଶ୍ୱରଙ୍କ ଚରଣ ତଳେ ତାଙ୍କର ଏଇ ବିଦାୟୀ ଆତ୍ମା ଚିର ଶାନ୍ତି ଲଭ କରୁ । + + +

ସାହିତ୍ୟିକ ଓ ଗାଳ୍ପିକ ଶ୍ରୀ ଅନାଦି ସାହୁ ୨୮ । ୭ । ୮୩ ତାରିଖରେ ଏକ ଶୋକବାର୍ତ୍ତାରେ କହିଛନ୍ତି ଯେ—ବାଣୀକଣ୍ଠ ନିମାଇଁ ଚରଣ ହରିଚନ୍ଦନଙ୍କ ବିୟୋଗ ଫଳରେ ଓଡ଼ିଶା ଜଣେ ଯୋଗଜନ୍ମା ଯୋଗ୍ୟ ପୁତ୍ରଙ୍କୁ ହରାଇଲା । + + +

୨୬ । ୭ । ୮୩ ତାରିଖ ଦିନ ଏକ ଶୋକବାର୍ତ୍ତାରେ ସଙ୍ଗୀତଜ୍ଞ ଓ ସଙ୍ଗୀତ ନିର୍ଦ୍ଦେଶକ ଶ୍ରୀ ଅକ୍ଷୟ ମହାନ୍ତି ଏକ ଶୋକବାର୍ତ୍ତାରେ ଜଣାଇଛନ୍ତି ଯେ—ବାଣୀକଣ୍ଠ ନିମାଇଁ ହରିଚନ୍ଦନଙ୍କ ସ୍ୱର୍ଗାରୋହଣ ଶ୍ରୀ ଜଗନ୍ନାଥ ଭକ୍ତ ଓ ନୂତନ ପ୍ରଜନ୍ମ ଦାର୍ଢ୍ୟତା ଭକ୍ତିର ଏକ ଚମତ୍କାର ଉପାଖ୍ୟାନ । ବାଣୀକଣ୍ଠ ସାଂସାରିକ ସମସ୍ତ କଳୁଷ, ଦ୍ୱେଷ ଓ ରାଜନୀତିର ବହୁ ଊର୍ଦ୍ଧ୍ୱରେ ଥିଲେ । ପୂର୍ବରେ ଭଜନ କାର୍ଯ୍ୟକ୍ରମରେ ସେ ପ୍ରତ୍ୟେକ ଶିଳ୍ପୀଙ୍କୁ ଏପରି ସ୍ନେହ/ଶ୍ରଦ୍ଧା ଦେଖାଉଥିଲେ ଯେ, ତାହା ଭୁଲି ହେବ ନାହିଁ । ବାଣୀକଣ୍ଠ ଏଚ୍. ଏମ୍. ଭି. କମ୍ପାନୀର ଅଦ୍ୱିତୀୟ ଶିଳ୍ପୀ ଥିଲେ । ଭକ୍ତି ରସାପ୍ଳୁତ ସଙ୍ଗୀତ ପ୍ରତି ତାଙ୍କର ଯଥେଷ୍ଟ ଧ୍ୟାନ ଥିଲା । ସେ ସେପରି ଭକ୍ତ ହୋଇ ନ ଥିଲେ ବାହୁଡ଼ା ଦିନ 'ବାହୁଡ଼ାଇ ନେବୁ ମୋତେ' ସଙ୍ଗୀତ ଗାନ କରି ଜଗନ୍ନାଥଙ୍କ ଆଶୀର୍ବାଦ ଲଭ କରି ପାରି ନ ଥାନ୍ତେ । ତାଙ୍କ ଅମର ଆତ୍ମାର ସଦ୍‌ଗତି ପାଇଁ ଶ୍ରୀ ଜଗନ୍ନାଥଙ୍କ ଶ୍ରୀଚରଣରେ ପ୍ରାର୍ଥନା । + + +

ଓଡ଼ିଶାର ସଙ୍ଗୀତ କ୍ଷେତ୍ରରେ ବହୁ ଖ୍ୟାତି ଅର୍ଜନ କରିଥିବା ବାଣୀକଣ୍ଠ ନିମାଇଁ ଚରଣ ହରିଚନ୍ଦନଙ୍କ ବିୟୋଗରେ 'ଉତ୍କଳ ସାହିତ୍ୟ ସମାଜ' ପକ୍ଷରୁ ୧୪ । ୮ । ୮୩ ତାରିଖରେ ଅନୁଷ୍ଠିତ

ନବ ନିର୍ବାଚିତ କାର୍ଯ୍ୟକାରୀ ସମିତିର ପ୍ରଥମ ବୈଠକରେ ଏକ ଶୋକ ପ୍ରସ୍ତାବ ଗ୍ରହଣ କରାଯାଇ ଅମର ଆତ୍ମାର ସଦ୍‌ଗତି କାମନା କରି ଏକ ମିନିଟ୍ ନୀରବ ପ୍ରାର୍ଥନା କରାଯିବା ସଙ୍ଗେ ସଙ୍ଗେ ଶୋକ-ସନ୍ତପ୍ତ ପରିବାର ବର୍ଗଙ୍କ ପ୍ରତି ଗଭୀର ସମବେଦନା ଜ୍ଞାପନ କରାଯାଇଥିଲା । + +

୩୦ । ୭ । ୮୩ ତାରିଖରେ ଯୁବ ଲେଖକ ସମ୍ମେଳନର ସଭାପତି ଶ୍ରୀ ହୁସେନ ରବି ଗାନ୍ଧୀ ବାଣୀକଣ୍ଠ ନିମାଇଁ ଚରଣ ହରିଚନ୍ଦନଙ୍କ ବିୟୋଗରେ ଶୋକ ପ୍ରକାଶ କରି କହିଛନ୍ତି ଯେ—"ଓଡ଼ିଆ ସଙ୍ଗୀତର ଅନନ୍ୟ କର୍ଣ୍ଣଧାର ଆମ ମଧ୍ୟରୁ ଚାଲିଗଲେ । ଛାନ୍ଦ, ଭଜନ, ଜଣାଣ ଆଦିକୁ ବିଂଶ ଶତାବ୍ଦୀରେ ପୁଣି ଜନପ୍ରିୟ କରାଇବାରେ ତାଙ୍କ ଅବଦାନ ଅତୁଳନୀୟ । + +

୨୨ । ୭ । ୮୩ ତାରିଖରେ ଏକ ଶୋକବାର୍ତ୍ତାରେ ଔପନ୍ୟାସିକ ଶ୍ରୀ ଯମେଶ୍ୱର ତ୍ରିପାଠୀ କହିଛନ୍ତି ଯେ—ସଙ୍ଗୀତ ରାଜ୍ୟର ମଉଡ଼ମଣି ନିମାଇଁ ଚରଣ ଓଡ଼ିଆ ଜାତିର ଗର୍ବ ଓ ଗୌରବ । ତାଙ୍କ ବିୟୋଗରେ ଯେଉଁ ଶୂନ୍ୟସ୍ଥାନ ସୃଷ୍ଟି ହେଲା, ତାହା ଆଉ ପୂରଣ ହେବାର ନୁହେଁ । + +

୨୧ । ୬ । ୮୩ ତାରିଖରେ କଟକ ଆକାଶବାଣୀ ଓ ଦୂରଦର୍ଶନର ସଙ୍ଗୀତ ଶିଳ୍ପୀ ଅଧ୍ୟାପିକା ପଦ୍ମାଳୟା ଗିରିବର୍ତ୍ତୀ, ଅଧ୍ୟାପିକା ସୁଚରିତା ମହାପାତ୍ର ଓ ସଙ୍ଗୀତା ମହାପାତ୍ର ଶ୍ରୀ ଜଗନ୍ନାଥଙ୍କ ପରମ ଭକ୍ତ ପଦ୍ମଶ୍ରୀ ନିମାଇଁ ଚରଣ ହରିଚନ୍ଦନଙ୍କ ମୃତ୍ୟୁରେ ଶୋକ ପ୍ରକାଶ କରି କହିଛନ୍ତି ଯେ—ବାଣୀକଣ୍ଠଙ୍କ ମୃତ୍ୟୁରେ ଓଡ଼ିଶୀ ସଙ୍ଗୀତ ଆକାଶରୁ ଏକ ଉଜ୍ଜ୍ୱଳତମ ଜ୍ୟୋତିଷ୍କର ଅବସାନ ଘଟିଲା । ରାଜ୍ୟ ତଥା ଦେଶରେ ଏହା ଏକ ଅପୂରଣୀୟ କ୍ଷତି । + +

ଆଠଗଡ଼ର ଆଡ଼ଭୋକେଟ ଶ୍ରୀ ପ୍ରାଣକୃଷ୍ଣ ଦାସ ବାଣୀକଣ୍ଠଙ୍କ ପରିବାର ପ୍ରତି ଏକା ସମବେଦନା ଜ୍ଞାପନ କରି ୨୩ । ୭ । ୮୩ ତାରିଖରେ କହିଛନ୍ତି ଯେ—ପବିତ୍ର ବାହୁଡ଼ା ଦିବସରେ ବାଣୀକଣ୍ଠଙ୍କ ମହାପ୍ରୟାଣ ପ୍ରଭୁ ଶ୍ରୀ ଜଗନ୍ନାଥଙ୍କ ପ୍ରତି ଭକ୍ତର ଚରମ ନିଦର୍ଶନ । ପ୍ରଭୁ ଚକାଡ଼ୋଳାଙ୍କ ପରମ ଭକ୍ତ ସବୁଦିନ ପାଇଁ ମର ଜଗତରୁ ଚାଲିଗଲେ । ଆଉ ସେ ସୁ-କୋମଳ ସ୍ୱର ଶୁଣିବାକୁ ମିଳିବ ନାହିଁ । ପ୍ରଭୁଙ୍କ ସହ ଭକ୍ତର ମଧ୍ୟ ବାହୁଡ଼ା ଯାତ୍ରା ହୋଇଗଲା । ଠାକୁରେ ତାଙ୍କ ଅମର ଆତ୍ମାକୁ ବୈକୁଣ୍ଠ ପୁରକୁ ନେଇଗଲେ । ଏପରି ସୌଭାଗ୍ୟ କାହାର ଅଛି ? ବାଣୀକଣ୍ଠଙ୍କ ପରିବାର ଏଥିରେ ଗର୍ବିତ ହେବା ଉଚିତ୍ । ଧୈର୍ଯ୍ୟ ଓ ସାହସର ସହିତ ବାଣୀକଣ୍ଠଙ୍କ ଏ ବିୟୋଗ ସମ୍ଭାଳିବା ପାଇଁ ପ୍ରଭୁଙ୍କୁ ପ୍ରାର୍ଥନା କରୁଛି । + +

କଟକ ନ୍ୟାସନାଲ ମ୍ୟୁଜିକ୍ ଆସୋସିଏସନ୍, କେନ୍ଦ୍ରାପଡ଼ାର ଗୋକୁଳ ଚନ୍ଦ୍ର ସଙ୍ଗୀତ ଅନୁଷ୍ଠାନ, ସୁନାବେଡ଼ାର ଉତ୍କଳ ସାଂସ୍କୃତିକ ପରିଷଦ, କଟକ କଳାବିକାଶ କେନ୍ଦ୍ର, ନିଖିଳ ଉତ୍କଳ ଖଣ୍ଡାୟତ କ୍ଷତ୍ରିୟ ମହାସଭା, କେନ୍ଦ୍ରାପଡ଼ାର ଶ୍ରୀ ଶ୍ରୀ କାକଟ ମଙ୍ଗଳା କ୍ଲବ, କଟକର ଉତ୍କଳ ଶାସ୍ତ୍ରୀୟ ସଙ୍ଗୀତ ପରିଷଦ, ପୁରୀ ସଙ୍ଗୀତ କଳା ପ୍ରତିଷ୍ଠାନ, ପୁରୀ ଶ୍ରୀକ୍ଷେତ୍ର କଳା ପ୍ରକାଶିକା, ସମ୍ବଲପୁର କଳା ପରିଷଦ, ଢେଙ୍କାନାଳ କଳା ପରିଷଦ, ଉତ୍କଳ ସଙ୍ଗୀତ ସମାଜ, କଳିଙ୍ଗ ଭାରତୀ ଓ ଉତ୍କଳ ଯୁବ ସାହିତ୍ୟ ସମାଜ, କଳାବିନୋଦ, କାଳିକାଳମ, ନିଷ୍ଠିନ୍ତକୋଇଲିଷ୍ଟ ମୌସୁମୀ ସାହିତ୍ୟ ସଂସ୍ଥା, କଳିଙ୍ଗ କଳା ସଂସଦ, ବାଣୀଶ୍ରୀ ମ୍ୟୁଜିକାଲ କଲଚରାଲ ଆସୋସିଏସନ୍, କଟକ ବଙ୍ଗାଳୀ ସାହିସ୍ଥ ଶ୍ରୀକୃଷ୍ଣ ସଙ୍ଗୀତ ବିଦ୍ୟାଳୟ, ଓଡ଼ିଶା ଫିଲ୍ମ ଜର୍ଣ୍ଣାଲିଷ୍ଟ ଆସୋସିଏସନ୍ ପ୍ରଭୃତି ଅନୁଷ୍ଠାନମାନଙ୍କ ପକ୍ଷରୁ ବାଣୀକଣ୍ଠଙ୍କ ବିୟୋଗରେ ଶୋକସଭାମାନ ଅନୁଷ୍ଠିତ ହୋଇ ତାଙ୍କ ପ୍ରତି ଅନୁଷ୍ଠାନର କର୍ମକର୍ତ୍ତା ଓ ସଦସ୍ୟମାନେ ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରିଥିଲେ ।

# ସେମାନଙ୍କ ମତରେ

ବାଣୀକଣ୍ଠ ପ୍ରାୟ ସବୁ ଅଞ୍ଚଳର ଲୋକମାନଙ୍କ ଦ୍ୱାରା ପରିଚିତ । ଯେଉଁମାନେ ଏ ଗ୍ରନ୍ଥ ପ୍ରକାଶ ପାଇଁ ଉଦ୍ୟମ ଚଳାଇଛନ୍ତି, ସେମାନଙ୍କୁ ଧନ୍ୟବାଦ ଦେବା ସଙ୍ଗେ ସଙ୍ଗେ ସ୍ମାରକୀ ଗ୍ରନ୍ଥର ସର୍ବ ସଫଳତା କାମନା କରେ ।

—ଡକ୍ଟର ହରେକୃଷ୍ଣ ମହତାବ

ବାଣୀକଣ୍ଠ ନିମାଇଁ ଚରଣ ହରିଚନ୍ଦନଙ୍କ ସଙ୍ଗେ ମୋର ଅତି ଘନିଷ୍ଠ ବନ୍ଧୁତା ଓ ସଂପର୍କ ଥିଲା । ତାଙ୍କର ବ୍ୟକ୍ତିତ୍ୱ/ମଣିଷ ପଣିଆ ଓ ସର୍ବୋପରି ତାଙ୍କ ଗୀତ ଗାଇବାର ଶୈଳୀ ମୋତେ ଓ ଅନ୍ୟ ବନ୍ଧୁମାନଙ୍କୁ ଖୁବ୍ ମୁଗ୍ଧ କରିଥିଲା ।

—ଶ୍ରୀ ପ୍ରାଣନାଥ ମହାନ୍ତି

ସେ ଗୀତ ଗାଇଲେ ସମୁଦ୍ର ମାଡ଼ି ଆସିଲା ପରି ଲାଗେ ; ପ୍ରାଣ ଉଚ୍ଛୁଳି ଉଠେ । ମନ ଉଡ଼େ! କରିବାର କେତେ କିଛି କାରଣ, କେତେ କେତେ ଗୌଣ ଭାବ, ଗ୍ଲାନି ଓ କ୍ଷୋଭ କୁଆଡ଼େ ଭାସିଯାଏ । ରୌଦ୍ରକ୍ଲାନ୍ତ ଦ୍ୱିପ୍ରହରେ ହରିଚନ୍ଦନ ଛାୟାରେ ବସିବାରେ କି ଆରାମ । ଉତ୍ତପ୍ତ ପ୍ରାଣରେ ଚନ୍ଦନ ବୋଳି ହେଲା ପରି ଲାଗେ ।

—ଡକ୍ଟର କୁଞ୍ଜବିହାରୀ ଦାଶ

ଓଡ଼ିଶୀ ସଙ୍ଗୀତକୁ ଶାସ୍ତ୍ରୀୟ ସଂଗୀତ କରିବା ପାଇଁ ବାଣୀକଣ୍ଠଙ୍କ ଦ୍ୱାରା ପରିବେଷିତ ଭକ୍ତି ସଙ୍ଗୀତ ବିଶେଷ ଭାବେ ସାହାଯ୍ୟ କରିବ ।

—ଡକ୍ଟର ଶ୍ରୀରାମ ଚନ୍ଦ୍ର ଦାଶ

ବାଣୀକଣ୍ଠଙ୍କ ଜୀବନାଦର୍ଶ ମୋତେ ଗଭୀର ଭାବେ ଅନୁପ୍ରାଣିତ କରିଛି । ବିଶେଷ କରି ତାଙ୍କର ସ୍ନେହ, ଶ୍ରଦ୍ଧା, ମମତା ଓ ଉଦାରତା, ପୁଣି ସର୍ବୋପରି ବନ୍ଧୁବତ୍ସଳତା ସମସ୍ତଙ୍କର ଅନୁକରଣୀୟ ଓ ଅନୁସରଣୀୟ ।

—ଶ୍ରୀ ଅବନୀକାନ୍ତ ସିଂହଦେଓ



# ୧୯୩୩ ଠାରୁ ୧୯୭୭ ମସିହା ପର୍ଯ୍ୟନ୍ତ ବାଣୀକଣ୍ଠଙ୍କ ଦ୍ୱାରା ଗ୍ରାମୋଫୋନ କମ୍ପାନୀରେ ରେକର୍ଡିଂ ହୋଇଥିବା ସଙ୍ଗୀତ ତାଲିକା

୧। ଆଜ ମୁଁ ଦେଖିଲି ଘନ ଶ୍ୟାମକୁ ଗୋ—ରାମକୃଷ୍ଣ
୨। ବିତଳକୁ ଆଲିଙ୍ଗନ—ଉପେନ୍ଦ୍ର ଭଞ୍ଜ
୩। ଧନୁ ଧନୁ ନନ୍ଦ ତନୟ—ବନମାଳୀ
୪। ଆଉ କେ ଅଛୁ କହିବାକୁ—କୃଷ୍ଣଚନ୍ଦ୍ର ତ୍ରିପାଠୀ
୫। କଳା କାହ୍ନୁ କହୁକ ଜାଣେ—ସୂର୍ଯ୍ୟ ଜେନା
୬। ଶ୍ରୀରାଧା ବାତୁଳୀ—ଅଭିମନ୍ୟୁ ସାମନ୍ତସିଂହାର
୭। ମୀନନୟନା କ୍ଷୀଣ—ଭଗୀରଥି ରଣା
୮। ଗୁହାରେ ମିତ ନନ୍ଦ ସୁତ—ଖଣ୍ଡପଡ଼ା ରାଜା
୯। ଗରଜିଲା ମେଘ—ନିକୁଞ୍ଜ କିଶୋର ଦାସ
୧୦। ଛିନ୍ନ ଆଜ ତୋ ଗାଢ଼ରେ—ପାରଳା ରାଜା
୧୧। ଧୀରେ ରାଧା ଜର ଧର—ଅଭିମନ୍ୟୁ ସାମନ୍ତସିଂହାର
୧୨। ଖଟାଅ ମୋତେ ତୋ ବେହରଣ ଫୁଲ—କବିସୂର୍ଯ୍ୟ
୧୩। ଯୋଷା ବରରେ—କବିସୂର୍ଯ୍ୟ
୧୪। କେବେ ନ ଥିବା ତୃଷା—ଗୋପାଳକୃଷ୍ଣ
୧୫। ପତିତ ଜନଙ୍କୁ ଉଦ୍ଧାରିବା ପାଇଁ—ନିତ୍ୟାନନ୍ଦ
୧୬। ଚକା ନୟନକୁ—ଚନ୍ଦନ ହଜୁରି
୧୭। ଦୂତି କର ଧର ହର—ଅଭିମନ୍ୟୁ
୧୮। ଏତେ ବଡ଼ ପରମାଦରେ—ବୃନ୍ଦାବନ
୧୯। କାନ୍ତ ଏ ବସନ୍ତ କାଳରେ—କବିସୂର୍ଯ୍ୟ
୨୦। ପ୍ରେମର ମୂଲ୍ୟ ଜାଣେ ସିନା—ବିନାୟକ ମିଶ୍ର
୨୧। ନୂଆ ନଟ ପଟଳ ମୁକୁଟ—କବିସୂର୍ଯ୍ୟ
୨୨। ପଞ୍ଚବାଣ ବଞ୍ଚନାରେ—ବିନାୟକ ମିଶ୍ର
୨୩। ତୁମ୍ଭ ପରି ପ୍ରଭୁ—ନିତ୍ୟାନନ୍ଦ ଦାସ
୨୪। କୃପା ସିନ୍ଧୁ ବଦନ—ଦୀନକୃଷ୍ଣ
୨୫। ଧୀରେ ଯେନ କାନନରେ—ଅଭିମନ୍ୟୁ
୨୬। ଯେବେ ନବଘନ ଶ୍ୟାମ ବଂଶୀ ସ୍ୱନ—କବିସୂର୍ଯ୍ୟ
୨୭। ଶ୍ୟାମଳ ଗାତେ—ବନମାଳୀ
୨୮। ସନ୍ଧ୍ୟା କି ବ୍ରତ କରି ବର ପାଇଲୁରେ—ଗୋପାଳକୃଷ୍ଣ
୨୯। ଭଜମନ ବ୍ରଜବନ—ଗୋପାଳକୃଷ୍ଣ
୩୦। କହିଲ ମନ ଅଟରେ ମୋ ବୋଲକର—ଭକ୍ତଚରଣ ଦାସ
୩୧। ରଙ୍ଗର ଶଙ୍ଖାଳୀ—ବିନାୟକ ମିଶ୍ର
୩୨। ଦେଖ ନନ୍ଦ ନନ୍ଦନ ଗୋ—ବୃନ୍ଦାବନ
୩୩। କି ଶୁଣିଲି ଆଜି ନୂଆ କରି ରେ—ଗୋପାଳକୃଷ୍ଣ
୩୪। କି ନାମ ବୋଇଲୁ ତୁହି ଗୋ—ଗୋପାଳକୃଷ୍ଣ
୩୫। ହେ ରସ ସିନ୍ଧୁ—ନିକୁଞ୍ଜ କିଶୋର ଦାସ
୩୬। ମଧୁ ନଗର ନାଗରୀ—ନିକୁଞ୍ଜ କିଶୋର ଦାସ
୩୭। ଭଜମନ ସବୁରି ଦୁଃଖ—ବିନାୟକ ମିଶ୍ର
୩୮। ବରଜରାଜ ତନୁଜ—ବିନାୟକ ମିଶ୍ର
୩୯। କଳା କଳେବର କହ୍ନାଇ—ଭକ୍ତ ଚରଣ ଦାସ
୪୦। ଗୋପୀକା ବଚନ ଶୁଣି—ଭକ୍ତ ଚରଣ ଦାସ
୪୧। ବିଭୂଷଣ ପୁଷ୍ପେ—ଉପେନ୍ଦ୍ର ଭଞ୍ଜ
୪୨। ପ୍ରୀତି ବର୍ଣ୍ଣ ମତ—ନିକୁଞ୍ଜ କିଶୋର ଦାସ
୪୩। ନିର୍ମଳ ଚନ୍ଦ୍ର ମଣ୍ଡଳ—ଉପେନ୍ଦ୍ର ଭଞ୍ଜ
୪୪। ଅଙ୍କ କାଲି ମୁଁ—ନିକୁଞ୍ଜ କିଶୋର ଦାସ
୪୫। ମନ୍ତ୍ରୀ ମୁଖୁ ଶୁଣି—ବିଶ୍ୱନାଥ ଖୁଣ୍ଟିଆ
୪୬। ମେଘ ଖଣ୍ଡପ୍ରାୟ—ବିଶ୍ୱନାଥ ଖୁଣ୍ଟିଆ
୪୭। ନୀଳସିନ୍ଧୁ ତୀରେ—ନିକୁଞ୍ଜକିଶୋର ଦାସ
୪୮। ଚକାଡୋଳା କମା ଡକା—ବିନାୟକ ମିଶ୍ର
୪୯। ତାଙ୍କୁ କିଏ ବୋଲୁଥାଇ ଗୋ—ଗୌରହରି
୫୦। ଆସ ଆସ ଆସ ମୋର—କାଳୀଚରଣ ପଟ୍ଟନାୟକ
୫୧। ବୋଲୁ ବୁଲି ନ ଜାଣଇ—ରଘୁନାଥ ଦାସ
୫୨। ଶୁଣ ହେ ସୁଜନ ଜନେ—ରଘୁନାଥ ଦାସ
୫୩। ପଥର ହେଲ ହେ ପ୍ରଭୁ—ରାଧାମାଧବ
୫୪। ତୁମ୍ଭ ଶୁଣିବାକୁ ମୋହ କହିବାକୁ—ନିତ୍ୟାନନ୍ଦ ଦାସ
୫୫। ଥିବା ଯାଏ ଜୀବ—ନିକୁଞ୍ଜ କିଶୋର ଦାସ
୫୬। ବନମାଳୀ ମୋତେ କେବେ—ଦାମୋଦର ଶ୍ରେଷ୍ଠରାୟ

